# ହେତୁବାଦୀ ଜୀବନବୋଧ

ଧନେଶ୍ୱର ସାହୁ





ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ପୁସ୍ତକ ଭବନ, ଭୁବନେଶ୍ୱର



# ହେତୁବାଦୀ ଜୀବନବୋଧ

ଲେଖକ

**ଧନେଶ୍ୱର ସାହୁ**



ପ୍ରକାଶକ

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା**

ପୁସ୍ତକ ଭବନ, ଭୁବନେଶ୍ୱର

***Hetubadi Jeebanbodha***

Published under the scheme of Production of Books and Literature in Regional Language at the University level by the Commission for Scientific and Technical Terminology, Ministry of Human Resource Development, (Department Higher Education) Govt. of India, New Delhi.

*Written by :*
Dhaneswar Sahoo

*Reviewed by :*
Dr. Pramod Kumar Parida

***Published by :***
**Odisha State Bureau of Textbook Preparation and Production**
Pustak Bhavan, Bhubaneswar, Odisha, India

First Edition: **2017/1000** copies

*Publication No: 576*

**ISBN: 978-81-8005-381-8**



Type Setting & Printing: **M/s. Orissa Printing Works, Cuttack.**

***Price: Rs. 92/-***

# ପ୍ରସ୍ତାବନା

ବୈଜ୍ଞାନିକ ଚିନ୍ତାଚେତନା ଓ ସୈଦ୍ଧାନ୍ତିକ ନିଷ୍କର୍ଷକୁ ଆଧାର କରି ଯେଉଁ ଦାର୍ଶନିକ ମନନଶୀଳତାର ଉଦ୍ଭବ ଘଟିଛି ତାହା ହେତୁବାଦ ଭାବରେ ପରିଚିତ । ଏହା ବ୍ୟାପକ ଓ ବିସ୍ତୃତ ଆଲୋଚନାର ଅପେକ୍ଷା ରଖେ । ଯୁଗ ଯୁଗ ଧରି କେବଳ ବିଶ୍ୱାସକୁ ପୁଞ୍ଜିକରି ଗଢ଼ି ଉଠି ପରିଚାଳିତ ହେଉଥିବା ସାମାଜିକ ସ୍ଥିତି ସ୍ଥାପକତାକୁ ଅନେକାଂଶରେ କୁସଂସ୍କାରହିଁ କବଳିତ କରି ରଖିଛି । ସେଥିରୁ ମୁକ୍ତି ପାଇବା ପାଇଁ ଏବଂ ସ୍ୱାଭାବିକ ଭାବରେ ସମାଜ ଓ ଜୀବନ ଗତିଶୀଳ ହେବାପାଇଁ ଏକ ଯୁକ୍ତି ଓ ପ୍ରମାଣଭିତ୍ତିକ ଜୀବନବୋଧର ଅପେକ୍ଷା ଅଛି । ଏଇ ଅବବୋଧକୁ ବିଚାରଶୀଳତା ସାହାଯ୍ୟରେ ଏକ ପରିପୂର୍ଣ୍ଣ ରୂପ ପ୍ରଦାନ କରିବାର ପ୍ରୟାସ ଏହି ପୁସ୍ତକଟିର ପ୍ରାଣ ।

ତଥ୍ୟର ଉପସ୍ଥାପନା, ବିଚାରଶୀଳତାରୁ ପ୍ରସ୍ତାବନା, ଯୁକ୍ତିଶୀଳତାର ବିବେଚନା କ୍ଷେତ୍ରରେ ସରଳତା, ବୋଧଗମ୍ୟତା ଓ ଯଥାର୍ଥତାର ସମନ୍ୱିତ ରୂପ ଏହି ପୁସ୍ତକ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକୁ ସୁଖପାଠ୍ୟ କରାଇପାରିଛି ।

ପାଠକମାନଙ୍କ ପାଇଁ ଏହା ଉପାଦେୟ ସାବ୍ୟସ୍ତ ହେବ ବୋଲି ବିଶ୍ୱାସ କରୁଛି ।

**ଉମାକାନ୍ତ ତ୍ରିପାଠୀ**
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ପୁସ୍ତକ ଭବନ, ଭୁବନେଶ୍ୱର, ଓଡ଼ିଶା

# ମୁଖବନ୍ଧ

ଏହି ସଙ୍କଳନଟିରେ ସ୍ଥାନିତ ପ୍ରବନ୍ଧମାନ ହେତୁବାଦୀ ବିଚାରବୋଧ ସହ ସଂଶ୍ଳିଷ୍ଟ । ହେତୁବାଦ ଏକ ବ୍ୟାପକ ପ୍ରସଙ୍ଗ ଓ ଏକ ଜୀବନଦର୍ଶନ । ଏକ ଦର୍ଶନ କିଛି ବୌଦ୍ଧିକ ସିଦ୍ଧାନ୍ତର ଅବତାରଣା କରିଥାଏ । ଏହି ଦୃଷ୍ଟିରୁ ହେତୁବାଦର ଏକ ବୌଦ୍ଧିକ ଭିତ୍ତି ରହିବା ସହ ଏହାର ଏକ ସାମାଜିକ ଅଙ୍ଗୀକାରବଦ୍ଧତା ରହିବା ମନେହୁଏ । କୁସଂସ୍କାର, ଅବୈଜ୍ଞାନିକ ମନୋଭାବ, ଅହେତୁକ ଭାବନା ଇତ୍ୟାଦିକୁ ଦୂରକରି ସତ୍ୟର ଉନ୍ମୋଚନ କରିବା ସହ ସାମାଜିକ ଉତ୍କର୍ଷ ସାଧନ ଓ ଜୀବନର ଗୁଣାତ୍ମକ ମାନ ବୃଦ୍ଧିକରିବା ହେତୁବାଦର ଆଭିମୁଖ୍ୟ ଅଟେ । ଏହି ପୃଷ୍ଠଭୂମିରେ ଏହି ପ୍ରବଂଧ ସଙ୍କଳନଟିର ନାମ "ହେତୁବାଦୀ ଜୀବନବୋଧ" ରଖାଯାଇଛି ।

ହେତୁବାଦର ଭୂମିଟି ବଡ଼ ବ୍ୟାପକ ଓ ଏହା ଏକ ବିସ୍ତୃତ ଦିଗନ୍ତର ସୂଚନା ଦିଏ । ତେବେ ଏହି ଦର୍ଶନର ଏକ ବୌଦ୍ଧିକ, ସାମାଜିକ ଓ ନୈତିକ ଆଧାର ରହିଥିବା ମନେହୁଏ । ବୌଦ୍ଧିକ ସ୍ତରରେ ବିଚାରଶୀଳତାର ସାର୍ବଭୌମତ୍ୱ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏହାର ମୌଳିକ ନିଷ୍କର୍ଷ । ବିଚାରଶୀଳତା ତର୍କଶୀଳ ମନୋଭାବକୁ ପ୍ରାଧାନ୍ୟ ଦେଇଥାଏ । ଯାହା ଯୁକ୍ତିସଂଗତ ଓ ତାର୍କିକ ନିୟମ ସହ ସମତାଳ ତାହା ହିଁ ଜ୍ଞାନ କ୍ଷେତ୍ରରେ ଗ୍ରହଣଯୋଗ୍ୟ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମୁକ୍ତ ମନ, ବୈଜ୍ଞାନିକ ପ୍ରଣାଳୀର ସାର୍ବଜନୀନ ପ୍ରୟୋଗ ଓ ତଥ୍ୟଭିତ୍ତିକ ଜ୍ଞାନକୁ ଗୁରୁତ୍ୱ ଆରୋପ କରିଥାଏ । ବିଜ୍ଞାନ ଜ୍ଞାନର ଦିଗନ୍ତକୁ ଯେଉଁପରି ବିସ୍ତାର କରିପାରିଛି ତାହାର ମୂଳଭିତ୍ତି ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ସାମାଜିକ ସ୍ତରରେ ମାନବବାଦୀ ଜୀବନଦୃଷ୍ଟି, ବ୍ୟକ୍ତିମର୍ଯ୍ୟାଦାବୋଧ ଓ ଏକ ନ୍ୟାୟିକ ବ୍ୟବସ୍ଥାକୁ ହେତୁବାଦ ପ୍ରାଧାନ୍ୟ ଦେଇଥାଏ । ମାନବବାଦ ବା ମାନବବାଦୀ ଜୀବନଦୃଷ୍ଟି ମାନବକୈନ୍ଦ୍ରିକ, ଇହଲୌକିକ ଓ ମାନବିକ-ଶ୍ରେୟ ଆଧାରିତ ଜୀବନବୋଧକୁ ଏହାର ଆଦର୍ଶଭାବେ ନିଏ । ନୀତି, ନୈତିକତା ସାମାଜିକ କର୍ତ୍ତବ୍ୟ ଓ ଏକ ଅର୍ଥପୂର୍ଣ୍ଣ ଜୀବନ ପାଇଁ ଅବଶ୍ୟମ୍ଭାବୀ ବୋଲି ହେତୁବାଦ ବିଚାର ରଖିଥାଏ । ସକଳ ସାମାଜିକ ସମ୍ବନ୍ଧ ଓ ବ୍ୟବସ୍ଥାକୁ କିପରି ଅଧିକରୁ ଅଧିକ ମାନବିକ ଓ ନୀତିପୂର୍ଣ୍ଣ କରିହେବ ଏଥିରେ ହେତୁବାଦ ଗଭୀର ସଂପୃକ୍ତି ବ୍ୟକ୍ତ କରିଥାଏ । ମୋଟଉପରେ ହେତୁବାଦ ଏକ ମହତ୍ତର ଜୀବନବୋଧ ଯାହା ଏକ ନ୍ୟାୟଭିତ୍ତିକ, ମାନବିକ, ସମତାଭିତ୍ତିକ ଓ ପ୍ରୀତିପୂର୍ଣ୍ଣ ସମାଜ ପ୍ରତିଷ୍ଠାକୁ ଲକ୍ଷ୍ୟ ଭାବରେ ଗ୍ରହଣ କରେ ।

ବସ୍ତୁତଃ ହେତୁବାଦର ଦୁଇଟି ମୁଖ୍ୟ ଆଭିମୁଖ୍ୟ ରହିବା ମନେହୁଏ । ଏହାର ଏକ ସୈଦ୍ଧାନ୍ତିକ ଦିଗ ଓ ଏହାର ଏକ ପ୍ରାୟୋଗିକ ଦିଗ ବିଚାର ପରିସରକୁ ଆସିଥାଏ । ଏହାର ସୈଦ୍ଧାନ୍ତିକ ଆଧାର ତର୍କଶୀଳତା ଓ ବୈଜ୍ଞାନିକ ମନୋଭାବ ଉପରେ ପ୍ରତିଷ୍ଠିତ । ଏହାର ପ୍ରାୟୋଗିକ ବା ବ୍ୟାବହାରିକ କ୍ଷେତ୍ରଟି ସକଳ କୁସଂସ୍କାର, ଆଧାରହୀନ ବିଶ୍ୱାସ, ଅହେତୁକ ଭାବଧାରା ଓ ଅସହିଷ୍ଣୁ ମାନସିକତାକୁ ଦୂର କରିବାକୁ ପ୍ରୟାସ କରେ । କୁସଂସ୍କାର ସାମାଜିକ ଓ ସାଂସ୍କୃତିକ ଅବକ୍ଷୟ ଓ ଅଜ୍ଞତାର ମୁଖ୍ୟ ଆଧାର ଅଟେ । କୁସଂସ୍କାର ଓ ଏହାର ଆନୁଷଙ୍ଗିକ କ୍ଷେତ୍ରଗୁଡିକ ଅଯୌକ୍ତିକ, ଅବୈଜ୍ଞାନିକ ଓ ଅଜ୍ଞତାର ପରିଚାୟକ । ସେହିପରି ସାମାଜିକ ଭେଦଭାବ ଓ ଅସହିଷ୍ଣୁ ମନୋଭାବ ଆମ ସଂସାରରେ ବହୁ ଘୃଣା, ବୈଷମ୍ୟ ଓ ବିଦ୍ୱେଷକୁ ପ୍ରଶ୍ରୟ ଦେଇଥିବା ମନେହୁଏ । ଏକ ସୁସ୍ଥ, ମାନବିକ ଓ ପ୍ରଗତିଶୀଳ ସମାଜ ପ୍ରତିଷ୍ଠା ଦିଗରେ ଏ ସବୁ ଗଭୀର

ଅନ୍ତରାୟ ହୋଇଥିବାରୁ ଏହାକୁ ଦୂରକରିବା ହେତୁବାଦୀ ଜୀବନବୋଧର ଆଭିମୁଖ୍ୟ ଅଟେ । ବସ୍ତୁତଃ ମାନବିକ ଶ୍ରେୟ ଓ ଜୀବନର ଉତ୍କର୍ଷସାଧନ ହେତୁବାଦର ବ୍ୟାବହାରିକ ଲକ୍ଷ୍ୟର ସୂଚନା ଦିଏ ।

ହେତୁବାଦର ଏହି ସୈଦ୍ଧାନ୍ତିକ ଓ ବ୍ୟାବହାରିକ ପ୍ରସଙ୍ଗମାନ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଏହି ସଂକଳନରେ ଆଲୋଚନାର ପରିସରକୁ ଆସିଛି । ବିଭିନ୍ନ ପ୍ରବଂଧରେ ଏହି ସଂପର୍କୀୟ ପ୍ରଶ୍ନମାନଙ୍କର ଅବତାରଣା ହୋଇଛି । ତେବେ ବିଭିନ୍ନ ପ୍ରବନ୍ଧରେ ସମଜାତୀୟ ପ୍ରଶ୍ନର ଅବତାରଣା ହୋଇଥିବାରୁ ସ୍ଥଳ ବିଶେଷରେ ଭାବନାର କିଛି ପୁନରାବୃତ୍ତି ପାଠକଙ୍କ ଦୃଷ୍ଟିକୁ ଆସିପାରେ । ମୁଁ ସେହି ଦୁର୍ବଳତାକୁ ସ୍ୱୀକାର କରୁଛି । ଏହା ମଧ୍ୟ ସ୍ୱୀକାର କରୁଛି ଯେ ହେତୁବାଦ ଉପରେ ଏକ ସୁସଂହତ ଓ ବିସ୍ତୃତ ଚିତ୍ର ଦେବା ଏହି ସଂକଳନଟିର ଲକ୍ଷ୍ୟ ନୁହେଁ । ବରଂ ହେତୁବାଦ ଉପରେ ଏକ ସରଳ ଓ ସାଧାରଣ ଚିତ୍ର ଦେବା ସଂକଳନଟିର ଆଭିମୁଖ୍ୟ । ହେତୁବାଦ ଉପରେ ଏହି କ୍ଷୁଦ୍ର ପ୍ରୟାସ ଯଦି ଏହି ପ୍ରସଙ୍ଗ ଉପରେ ଏକ ବିସ୍ତୃତ ।ାଲୋଚନା ପାଇଁ ଭୂମିଟିଏ ସୃଷ୍ଟିକରେ ତେବେ ଏହାଦ୍ୱାରା ଏକ ବଡ଼ ଲକ୍ଷ୍ୟ ସାଧିତ ହେବ ବୋଲି ମୁଁ ଅନୁଭବ କରୁଛି ।

ଏହି ସଂକଳନରେ ସ୍ଥାନିତ ଲେଖା ଗୁଡିକ ବିଭିନ୍ନ ପତ୍ର ପତ୍ରିକାରେ ଓ ମୋର କେତେକ ପ୍ରବନ୍ଧ ସଂକଳନରେ ପ୍ରକାଶିତ ହୋଇ କିଛି ପାଠକୀୟ ସ୍ୱୀକୃତି ଲାଭକରିଛି । ସେସବୁକୁ ସଂଗ୍ରହ କରି ଏଥିରେ ସ୍ଥାନ ଦିଆଯାଇଛି ଯଦ୍ୱାରା ଜଣେ ପାଠକ ହେତୁବାଦ ଉପରେ ଏକ ସାଧାରଣ ଧାରଣା ଆଣିପାରିବ । ଯେଉଁମାନେ ହେତୁବାଦୀ ବିଚାରବୋଧକୁ ପ୍ରସାର କରିବାପାଇଁ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟ କରୁଛନ୍ତି ସେହିମାନଙ୍କୁ ଏହି ଅବସରରେ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି । ହେତୁବାଦୀ ବିଚାର ସମ୍ବଳିତ ଏହି ସଂକଳନଟିର ପ୍ରକାଶ ଦାୟିତ୍ୱ ଓଡିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ନେଇଥିବାରୁ ମୁଁ ପ୍ରକାଶନ ବ୍ୟୁରୋକୁ ମୋର କୃତଜ୍ଞତା ଜ୍ଞାପନ କରୁଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧ ପ୍ରସାର କ୍ଷେତ୍ରରେ ଯଦି ଏହି ପୁସ୍ତକଟି କିଛି ସହାୟକ ହେବ, ତେବେ ତାହା ମୋ ପାଇଁ ସବୁଠାରୁ ଆନନ୍ଦର ବିଷୟ ହେବ ।

ଏ-୧୨, ଭାଗୀରଥି ବିହାର
ଢେଙ୍କାନାଳ

**ଧନେଶ୍ୱର ସାହୁ**
୧.୭.୨୦୧୬

# ସୂଚୀପତ୍ର





# ହେତୁବାଦ : ଏକ ବୈଚାରିକ ଦୃଷ୍ଟି

ହେତୁବାଦ ଏକ ଦର୍ଶନ ଓ ମୁଖ୍ୟତଃ ଏକ ଜୀବନ-ଦର୍ଶନ । ଏହା ଏହି ଦୃଷ୍ଟିରୁ ଏକ ଦର୍ଶନ ଯେ ଏହା କେତେକ ସିଦ୍ଧାନ୍ତ ଉପରେ ଆଧାରିତ । ଏହାକୁ ଏକ ଜୀବନଦର୍ଶନ କହିବାର ତାତ୍ପର୍ଯ୍ୟ ହେଉଛି ଏହାର ସଫଳ ରୂପାୟନ ଜୀବନର ଉତ୍କୃଷ୍ଟତା ପାଇଁ ଅଭିପ୍ରେତ । ମୋଟ ଉପରେ ବିଚାରଶୀଳତା ବା ପ୍ରଜ୍ଞାର ବିକାଶ ସହିତ ଏକ ଗୁଣାତ୍ମକ ବା ଉତ୍ତମ ଜୀବନର ଅନ୍ୱେଷଣ ଏହାର ମୌଳିକ ଆଭିମୁଖ୍ୟ । ବୈଚାରିକ ସ୍ତରରେ ହେଉ ବା ବାସ୍ତବ ଜୀବନଧାରାରେ ହେଉ ହେତୁବାଦୀମାନେ ସାଧାରଣତଃ ବିଚାରଶୀଳତା ଓ ମାନବିକତାକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ବର୍ଟ୍ରାଣ୍ଡ ରସେଲଙ୍କ ମତରେ ହେତୁବାଦର ସୈଦ୍ଧାନ୍ତିକ ଉତ୍ସ ହେଉଛି ସତ୍ୟ ପ୍ରତି ଅନୁରାଗ ଓ ସମ୍ବେଦନଶୀଳ ଅନୁଭବ । (ତାଙ୍କର ପ୍ରବନ୍ଧ Faith of a Rationalist ଦ୍ରଷ୍ଟବ୍ୟ) । ବିଚାରଶୀଳତାର ପ୍ରାଧାନ୍ୟକୁ ଗ୍ରହଣ କରୁଥିବା ବ୍ୟକ୍ତି ସତ୍ୟ ପ୍ରତି ଅନୁରାଗ ରଖିବା ସ୍ୱାଭାବିକ୍ । ଏଠାରେ 'ସତ୍ୟ' କୁ ବିଭିନ୍ନ ଭାବରେ ଓ ନାନାର୍ଥରେ ବ୍ୟବହାର କରିବାର ବହୁ ଦୃଷ୍ଟାନ୍ତ ରହିଛି । ଯେଉଁ ଜ୍ଞାନ ତଥ୍ୟ-ସମର୍ଥିତ ବା ତର୍କ-ଆଧାରିତ ଓ ଯେଉଁ କ୍ଷେତ୍ରରେ ଏକ ସାର୍ବଜନୀନ ସହମତି ରହିବା ଦେଖାଯାଏ ତାହାକୁ 'ସତ୍ୟ' କୁହାଯାଏ । ବସ୍ତୁତଃ ବୌଦ୍ଧିକ ଅନୁସନ୍ଧିତ୍ସା ମଧ୍ୟ ଦେଇ ଯେଉଁ ଜ୍ଞାନ ସୁନିର୍ଦ୍ଦିଷ୍ଟ ପ୍ରଣାଳୀଦ୍ୱାରା ସ୍ଥିରୀକୃତ ହୋଇଥାଏ ତାହା ହିଁ ସତ୍ୟ ଓ ସତ୍ୟ ପ୍ରତି ଏହି ଅନୁରକ୍ତି ହେତୁବାଦର ଏକ ମୌଳିକ ଆଭିମୁଖ୍ୟ । ସେହିପରି ଏକ ଉତ୍କୃଷ୍ଟ ବା ଗୁଣାତ୍ମକ ଜୀବନ ଧାରଣ ପାଇଁ ସମ୍ବେଦନଶୀଳ ଜୀବନ-ଦୃଷ୍ଟି ଅବଶ୍ୟମ୍ଭାବୀ ବୋଲି ହେତୁବାଦୀମାନେ ବିଶ୍ୱାସ କରିଥାନ୍ତି । ଅନ୍ୟ ପ୍ରତି ଅତ୍ୟାଚାର ବା ଉତ୍ପୀଡ଼ନ କିମ୍ବା କୌଣସି ଗୋଷ୍ଠୀ ପ୍ରତି ଘୃଣା ବା ବିଦ୍ୱେଷ ହେତୁବାଦୀ ମୂଲ୍ୟଚୟର ପରିପନ୍ଥୀ । ବ୍ୟକ୍ତିଜୀବନ ହେଉ ବା ଗୋଷ୍ଠୀଜୀବନ ହେଉ, ମଣିଷକୁ କ'ଣ ଉନ୍ନତ କରାଏ- ପ୍ରଶ୍ନର ଉତ୍ତରରେ ହେତୁବାଦୀମାନେ ମାନବିକତାକୁ ହିଁ ପ୍ରାଧାନ୍ୟ ଦେଇଥାନ୍ତି । ସୁଖକର ଜୀବନ ଓ ସାମାଜିକ କଲ୍ୟାଣ କେବଳ ମାନବିକତା ଓ ତଜ୍ଜନିତ ମୂଲ୍ୟଚୟ ଉପରେ ନିର୍ଭର କରିଥାଏ ବୋଲି ହେତୁବାଦୀମାନେ ଗ୍ରହଣ କରିଥାନ୍ତି । ଏହି ପୃଷ୍ଠଭୂମିରେ ହେତୁବାଦର ଏହି ଦୁଇ ମୌଳିକ ଲକ୍ଷଣକୁ ବିଶ୍ଳେଷଣ କରିବା ସହ ଏହାର ଅନ୍ୟାନ୍ୟ କେତେକ ତାତ୍ପର୍ଯ୍ୟକୁ ସୂଚନା ଦେବା ଏହି ପ୍ରବନ୍ଧର ଆଭିମୁଖ୍ୟ ଅଟେ ।

ସବୁ ସଭ୍ୟତାରେ ଓ ସବୁ ଯୁଗରେ ହେତୁବାଦୀମାନେ ପ୍ରଜ୍ଞା-ପ୍ରେମୀ ଓ ସତ୍ୟସନ୍ଧାନୀ । ତେବେ ସଭ୍ୟତାର କ୍ରମ ବିକାଶ ଧାରାରେ ବିଚାରଶୀଳତା ଓ ତର୍କଶୀଳ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ବହୁ ପରେ ହୋଇଛି । କିଛି ବ୍ୟକ୍ତି ସବୁ ସମୟରେ କୌତୂହଳ ପ୍ରବଣତା ଓ ଅନୁସନ୍ଧିତ୍ସୁ ମାନସିକତା ବ୍ୟକ୍ତ କରିଥାନ୍ତି ।  ବିଶେଷ କରି ମଣିଷ ଯେଉଁ ପରିବେଶରେ ବଞ୍ଚେ, ସେ ପରିବେଶକୁ ସେ ନିଜ ମାନଦଣ୍ଡରେ ବୁଝିବାକୁ ପ୍ରୟାସ କରେ । ସାଧାରଣ ଜୀବନ ପ୍ରବାହରେ ଜ୍ଞାନ-ବିଜ୍ଞାନ ପ୍ରତି ଆଗ୍ରହୀ ଥିବା କିଛି ବ୍ୟକ୍ତି ଜଗତ ଓ ଜୀବନର ନାନା ରହସ୍ୟକୁ ବୁଝିବାକୁ ପ୍ରୟାସ କରିଛନ୍ତି । ଏହି ବୌଦ୍ଧିକ ପ୍ରୟାସ ମଧ୍ୟ ଦେଇ

ଦର୍ଶନ, କଳା, ସାହିତ୍ୟ, ବିଜ୍ଞାନର ବିକାଶ ହେବା ସହ ସଭ୍ୟତା ଓ ସଂସ୍କୃତିର କ୍ରମବିକାଶ ଘଟିଛି । ଆମ ଚତୁଃପାର୍ଶ୍ୱରେ ଆମେ ଦେଖୁଥିବା ମାଟି, ପାଣି, ପବନ ଇତ୍ୟାଦି କେଉଁ ବସ୍ତୁରେ ନିର୍ମିତ ହୋଇଛି ଓ ସେ ସବୁର ମୂଳ ଉତ୍ସ କ'ଣ ? ସେହିପରି ଦିନ-ରାତି, ବର୍ଷା, ଘଡ଼ଘଡ଼ି, ଋତୁ ପରିବର୍ତ୍ତନ, ସୂର୍ଯ୍ୟପରାଗ ଇତ୍ୟାଦି ପ୍ରାକୃତିକ ଘଟଣା କିପରି ସୃଷ୍ଟି ହେଉଛି ? ଜନ୍ମ, ମୃତ୍ୟୁ, ରୋଗ, ବାର୍ଦ୍ଧକ୍ୟ, ଇତ୍ୟାଦି କିପରି ସଂଘଟିତ ହେଉଛି ? ଏହିସବୁ ସମସ୍ୟା ଉପରେ ଚିନ୍ତା ପ୍ରକଟ କରିବା ଦ୍ୱାରା କିଛି ବିଚାରର ଅଭ୍ୟୁଦୟ ହୋଇଛି । ତେବେ ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ବିଭିନ୍ନ ସଭ୍ୟତାରେ କିଛି ବୁଦ୍ଧିମାନ ଲୋକ ଏହିସବୁ ସମସ୍ୟାକୁ ନିଜ ନିଜ କଳ୍ପନା ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଏହି ପ୍ରୟାସ ଭିତର ଦେଇ ପ୍ରାଚୀନ ଯୁଗରେ ନାନା ରହସ୍ୟମୟ ଓ କାଳ୍ପନିକ ସିଦ୍ଧାନ୍ତର ଅବତାରଣା ହୋଇଛି । ନାନା ଦେବ-ଦେବୀ, ଦୈବୀ ସତ୍ତା, ଶକ୍ତି ଓ ଈଶ୍ୱର ଇତ୍ୟାଦି ଭାବନା ମଧ ଦେଇ ଆଦିମ ଯୁଗର ଲୋକମାନେ ଏସବୁ ରହସ୍ୟକୁ ବୁଝିବାକୁ ପ୍ରୟାସ କରିଛନ୍ତି । ତେବେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଧର୍ମମାନଙ୍କର ଉତ୍ପତ୍ତି ସହ ଏହିସବୁ ପ୍ରଶ୍ନମାନଙ୍କର ନାନା କାଳ୍ପନିକ ଓ ତାତ୍ତ୍ୱିକ ବ୍ୟାଖ୍ୟା ଦିଆଯାଇଛି । ସେହିସବୁ ବିଚାର ଓ କଳ୍ପନା ଆଧୁନିକ ଜୀବନ ପ୍ରବାହରେ ଓ ସାଂପ୍ରତିକ ବୌଦ୍ଧିକ ମାନଦଣ୍ଡରେ ଯେତେ ଅବାନ୍ତର ହେଲେ ବି ଏସବୁ ବିଶ୍ୱାସ ନାନା ରୂପ-ରଙ୍ଗ ନେଇ ଧାର୍ମିକ ବିଶ୍ୱାସ ସ୍ତରରେ ଏବେ ବି ବେଶ୍ ପ୍ରଭାବଶାଳୀ ହୋଇ ରହିଛି । ତେବେ ଆଧୁନିକ ବିଜ୍ଞାନର ବିକାଶ ସହ ଜୀବନର ଘନଘଟା ଓ ପ୍ରାକୃତିକ ଘଟଣା ପ୍ରବାହର ଏକ ସୁନିର୍ଦ୍ଦିଷ୍ଟ ବ୍ୟାଖ୍ୟା ନିର୍ଭରଯୋଗ୍ୟ ଭାବେ ଦିଆଯାଇ ପାରୁଛି । ଏଠାରେ ହେତୁବାଦ ସର୍ବଦା ଏକ ମୁକ୍ତ-ମନ ପୋଷଣ କରି ବୈଜ୍ଞାନିକ ପନ୍ଥାରେ ସବୁକିଛି ଘଟଣା ପ୍ରବାହକୁ ବିଶ୍ଳେଷଣ କରିବାକୁ ପ୍ରୟାସ କରିଛି । କୌଣସି ଭାବନା, ବିଚାର ବା ସିଦ୍ଧାନ୍ତକୁ ଚିରନ୍ତନ ବା ଶାଶ୍ୱତ ବୋଲି ଗ୍ରହଣ ନକରି ଓ ସମସ୍ତ ପୂର୍ବଧାରଣାରୁ ମୁକ୍ତ ରହି ସବୁ କିଛିକୁ ବିଜ୍ଞାନର ମାନଦଣ୍ଡରେ ବିଶ୍ଳେଷଣ କରିବାକୁ ହେତୁବାଦ ଗ୍ରହଣ କରିଛି । ବସ୍ତୁତଃ ଏକ ମୁକ୍ତ ଓ ସ୍ୱାଧୀନ ମନୋଭାବ ପୋଷଣ କରିବାର ମାନସିକତା ହେତୁବାଦର ଅପରିହାର୍ଯ୍ୟ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବନାହିଁ ।

ହେତୁବାଦରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ସର୍ବାଧିକ ଗୁରୁତ୍ୱ ଦିଆଯାଏ, ଏପରିକି କେତେକ ହେତୁବାଦୀ ଉଭୟଙ୍କୁ ଅଭିନ୍ନ କହିଥାନ୍ତି । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ କହିଲେ ଯଥାର୍ଥରେ କ'ଣ ବୁଝାଏ ? ପ୍ରାକୃତିକ ବିଜ୍ଞାନ ହେଉ ବା ସାମାଜିକ ବିଜ୍ଞାନ ହେଉ ବିଜ୍ଞାନ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନ କରି ଏହାର ସିଦ୍ଧାନ୍ତ ସକଳକୁ ପ୍ରତିଷ୍ଠା କରିଥାଏ । ସେହି ପ୍ରଣାଳୀବଦ୍ଧ ଓ ସୁବ୍ୟବସ୍ଥିତ ଧାରାରେ ଯେଉଁ ଜ୍ଞାନ ଲାଭ କରାଯାଏ ତାହା ବିଜ୍ଞାନ । ବୈଜ୍ଞାନିକ ଜ୍ଞାନ ତଥ୍ୟ-ଆଧାରିତ, ପ୍ରଣାଳୀବଦ୍ଧ ଓ ସୁବ୍ୟବସ୍ଥିତ । ବୈଜ୍ଞାନିକ ଜ୍ଞାନ ସାଧାରଣତଃ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଉପରେ ପର୍ଯ୍ୟବସିତ । ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଦ୍ୱାରା ଘଟଣାମାନଙ୍କର ଶ୍ରେଣୀ- ବିଭାଜନ କରି ବିଜ୍ଞାନ ନାନା ଦିଗନ୍ତ ସୃଷ୍ଟି କରିଛି । ପ୍ରାକୃତିକ ଘଟଣା ଓ ବସ୍ତୁମାନଙ୍କର ଜଟିଳତା ଓ ବିଶାଳତା ପୃଷ୍ଠଭୂମିରେ ସେମାନଙ୍କୁ ନାନା ଶ୍ରେଣୀରେ ବିଭାଜନ କରାଯାଇ ସେସବୁକୁ ବ୍ୟାଖ୍ୟା କରାଯାଇଥାଏ । ସେହିପରି ସମାଜର ବିଭିନ୍ନ ବ୍ୟବସ୍ଥାର କ୍ରମବିକାଶ ଓ ଘଟଣା ପ୍ରବାହକୁ ବିଶ୍ଳେଷଣ କରିବାକୁ ସମାଜ ବିଜ୍ଞାନୀମାନେ ଘଟଣାମାନଙ୍କୁ ନାନା ଶ୍ରେଣୀରେ ବିଭାଜନ କରି ସେସବୁକୁ ବୈଜ୍ଞାନିକ ପ୍ରଣାଳୀ ଜରିଆରେ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଥାନ୍ତି । ସୁତରାଂ ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ପ୍ରାଣୀବିଜ୍ଞାନ, ଚିକିତ୍ସା ବିଜ୍ଞାନ, କୃଷି ବିଜ୍ଞାନ ଇତ୍ୟାଦି ପ୍ରାକୃତିକ ବିଜ୍ଞାନ ସକଳ ହେଉ ବା ରାଜନୀତି ବିଜ୍ଞାନ, ଅର୍ଥନୀତି, ନୃତତ୍ତ୍ୱ, ସମାଜଶାସ୍ତ୍ର ପରି ସମାଜ-

ବିଜ୍ଞାନ ମାନ ହେଉ ଏ ସମସ୍ତ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରି ସେମାନଙ୍କର ସିଦ୍ଧାନ୍ତ ସକଳକୁ ପ୍ରତିଷ୍ଠା କରିଥାନ୍ତି । ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଜନିତ ବାସ୍ତବ ଅନୁଭୂତି ଓ ପ୍ରକଳ୍ପ ପ୍ରଣୟନ (ଏକ ସିଦ୍ଧାନ୍ତ ପ୍ରତିଷ୍ଠା ପୂର୍ବରୁ ଯେଉଁ ସମ୍ଭାବ୍ୟ କାରଣର ପରିକଳ୍ପନା କରାଯାଏ) ବୈଜ୍ଞାନିକ ବ୍ୟାଖ୍ୟାର ଅଭିନ୍ନ ଅଙ୍ଗ । ତେବେ କୌଣସି ଘଟଣା ବା ବ୍ୟାପାରର ବୈଜ୍ଞାନିକ ରୀତିରେ ବ୍ୟାଖ୍ୟା ପାଇଁ କଳ୍ପିତ ପ୍ରକଳ୍ପକୁ ନାନା ଭାବରେ ଓ ନାନା କ୍ଷେତ୍ରରେ ପରୀକ୍ଷା କରାଯାଏ । ଏହି ପରୀକ୍ଷା ଦ୍ୱାରା ଏକ ପ୍ରକଳ୍ପ ବାସ୍ତବ ଅନୁଭୂତି ଓ ଘଟଣା ଦ୍ୱାରା ସମର୍ଥିତ ହେଉଥିଲେ, ସମ୍ଭାବ୍ୟ ପ୍ରକଳ୍ପକୁ ଏକ ସିଦ୍ଧାନ୍ତ ଭାବେ ଗ୍ରହଣ କରାଯାଏ ଓ ଏହାର ସାମାନ୍ୟୀକରଣ କରାଯାଏ । ପୁନଶ୍ଚ ପ୍ରକୃତିର କୌଣସି ଏକ କ୍ଷେତ୍ରରେ କୌଣସି ସିଦ୍ଧାନ୍ତ ଅନ୍ୟାନ୍ୟ ସିଦ୍ଧାନ୍ତମାନଙ୍କ ସହ ସମତାଳ ହେବା ଆବଶ୍ୟକ ଓ ବୈଜ୍ଞାନିକ ସିଦ୍ଧାନ୍ତମାନଙ୍କ ମଧ୍ୟରେ ଏକ ସୁବ୍ୟବସ୍ଥିତ ଶୃଙ୍ଖଳା ଓ କ୍ରମ (order) ରହିବା ଦେଖାଯାଏ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ ଇତ୍ୟାଦି ପ୍ରାକୃତିକ ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ରହିଥିବା ସିଦ୍ଧାନ୍ତ ବା ସାମାନ୍ୟୀକରଣ ଜନିତ ବୈଧ ପ୍ରକଳ୍ପ (hypothesis) ଗୁଡିକ ମଧ୍ୟରେ ସଂଯୋଗ ଓ ସମତାଳ ରହିବା ଦେଖାଯାଏ । ତେବେ ବୈଜ୍ଞାନିକ ସାମାନ୍ୟୀକରଣ ଆରୋହାନୁମାନ (inductive) ପଦ୍ଧତିରେ ହୋଇଥାଏ । ଏହି ଜ୍ଞାନ ପ୍ରଣାଳୀବଦ୍ଧ ଓ ସୁବ୍ୟବସ୍ଥିତ ହେଲେ ମଧ୍ୟ ଏହା ଚିରନ୍ତନ ବା ଧ୍ରୁବ ବୋଲି ଗ୍ରହଣ କରାଯାଏ ନାହିଁ । ବରଂ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ପରିବର୍ତ୍ତନ ସାପେକ୍ଷ । ଘଟଣା ସକଳର ଜଟିଳତା ଓ ପ୍ରକୃତିର ବିଶାଳତା ପୃଷ୍ଠଭୂମିରେ ଆମର ଅନୁଭୂତିର ପରିସର ଯେତିକି ବ୍ୟାପକ ହୁଏ ତାହାରି ଆଧାରରେ ବୈଜ୍ଞାନିକ ସିଦ୍ଧାନ୍ତମାନଙ୍କର ପରିବର୍ତ୍ତନ ହେଉଥାଏ । ଗୋଟିଏ ସମୟର ଅନୁଭୂତି ଓ ପର୍ଯ୍ୟବେକ୍ଷଣ ଆଧାରରେ ଯେଉଁ ପ୍ରକଳ୍ପର ନିର୍ମାଣ କରାଯାଏ ତାହା ଭବିଷ୍ୟତରେ ଅନୁଭୂତିର ବ୍ୟାପକତା ଆଧାରରେ ବି ପରିବର୍ତ୍ତିତ ହୋଇଥାଏ । ତେବେ ବିଜ୍ଞାନର କୌଣସି ସାମାନ୍ୟୀକରଣ ବା ସିଦ୍ଧାନ୍ତ ସର୍ବଦା ମୁକ୍ତ, ବସ୍ତୁନିଷ୍ଠ, ନିରପେକ୍ଷ, ସାର୍ବଜନୀନ ଓ ଅନ୍ୟାନ୍ୟ କ୍ଷେତ୍ରର ସିଦ୍ଧାନ୍ତମାନଙ୍କ ସହ ସମତାଳଯୁକ୍ତ । ମନୁଷ୍ୟର ଅନୁସନ୍ଧିତ୍ସୁ ପ୍ରବୃତ୍ତି ଅପରିସୀମ ହୋଇଥିବାରୁ ବିଜ୍ଞାନର ଦିଗନ୍ତ ଅଧିକରୁ ଅଧିକ ପ୍ରସାରିତ ହେବା ସହ ପ୍ରକୃତିର ବହୁ ଜଟିଳ ଘଟଣା ଓ ବ୍ୟାପାରକୁ ବ୍ୟାଖ୍ୟା କରିବା ସମ୍ଭବ ହେଉଛି । ବସ୍ତୁତଃ ବୈଜ୍ଞାନିକ ପ୍ରଣାଳୀ ବୈଜ୍ଞାନିକ ଜ୍ଞାନର ଆଧାର । ତେବେ ବୈଜ୍ଞାନିକ ପ୍ରଣାଳୀ ମାଧ୍ୟମରେ ହିଁ ବିଜ୍ଞାନ ସମସ୍ତ ଘଟଣା, ବସ୍ତୁ ଓ ବ୍ୟାପାରକୁ ବ୍ୟାଖ୍ୟା କରିଥାଏ । ଏହି ବ୍ୟାଖ୍ୟା ପୃଷ୍ଠଭୂମିରେ ବିଜ୍ଞାନରେ ଏହା ସ୍ୱତଃସିଦ୍ଧ ଯେ ବିଶ୍ୱ ବ୍ୟାପାରରେ କୌଣସି ଘଟଣା ଅତିପ୍ରାକୃତିକ ନୁହେଁ । ପ୍ରକୃତିର ବା ଜୀବନ ପ୍ରବାହର ପ୍ରତ୍ୟେକ ଘଟଣା ପଶ୍ଚାତରେ ନିୟମ ବା ଶୃଙ୍ଖଳା ଜନିତ କାରଣ ରହିଛି ଯାହା କେବଳ ପ୍ରାକୃତିକ । ପ୍ରାକୃତିକ ଶୃଙ୍ଖଳା, ନିୟମ ବା ଏକରୂପତା କ୍ଷେତ୍ରରେ କୌଣସି ଦିବ୍ୟ ବା ଅତିପ୍ରାକୃତିକ କାରଣ ନାହିଁ; ସବୁ କିଛି ପ୍ରାକୃତିକ ବ୍ୟବସ୍ଥା ଭିତରେ ବୋଧଗମ୍ୟ ଓ ପ୍ରାସଙ୍ଗିକ । ପ୍ରକୃତିରେ ଅସଂଖ୍ୟ ରହସ୍ୟ ରହିଛି ଯାହାର ବ୍ୟାଖ୍ୟା ସମ୍ଭବ ହୋଇନାହିଁ ବା ଯାହାର କାରଣ ମଣିଷ ଜାଣିବାକୁ ସମର୍ଥ ହୋଇନାହିଁ, କିନ୍ତୁ କୌଣସି ଘଟଣା ପଶ୍ଚାତରେ ଦୈବୀ ବା ଅତିପ୍ରାକୃତିକ (supernatural) କାରଣ ନାହିଁ । ବସ୍ତୁତଃ ବୈଜ୍ଞାନିକ ଜ୍ଞାନ ଯେଉଁ ପଦ୍ଧତି ଓ ମୌଳିକ ନିୟମ ଉପରେ ଆଧାରିତ ତାହାକୁ ଜ୍ଞାନଲାଭର ଭିତ୍ତି ଭାବେ ନେବା ହେଉଛି 'ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ' । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମୁକ୍ତମନ, ବସ୍ତୁନିଷ୍ଠ ପଦ୍ଧତି ଓ ଏକ ସାର୍ବଜନୀନ ପ୍ରଣାଳୀର ସମନ୍ୱିତ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ରହସ୍ୟମୟ ବା ଅଲୌକିକ ବ୍ୟାଖ୍ୟା, ଅତିପ୍ରାକୃତିକ କଳ୍ପନା ଓ ଗୁପ୍ତ ବା ବ୍ୟକ୍ତିନିଷ୍ଠ ଭାବନା ବୈଜ୍ଞାନିକ ଦୃଷ୍ଟିର ପରିପନ୍ଥୀ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ କେବଳ ଯେ ବୈଜ୍ଞାନିକ ଜ୍ଞାନ ପାଇଁ ଅଭିପ୍ରେତ ତାହା ନୁହେଁ, ଏହା ଏକ ଉନ୍ନତ ଓ ସତ୍ୟାନ୍ୱେଷୀ ଜୀବନଧାରାର ମଧ୍ୟ ମାନଦଣ୍ଡ । ଜୀବନର ବିଭିନ୍ନ କ୍ଷେତ୍ରରେ ଏହାର ପ୍ରୟୋଗ ବ୍ୟକ୍ତିର ଦୃଷ୍ଟିଭଙ୍ଗୀକୁ ଉନ୍ନତ କରିବା ସହ ସତ୍ୟର ନିକଟତର କରିଥାଏ । ବିଭିନ୍ନ କ୍ଷେତ୍ରରୁ ଆସୁଥିବା ନାନା ଅନ୍ଧ-ସଂସ୍କାରରୁ ମୁକ୍ତ ହେବା ସମାଜରେ ଅନେକଙ୍କ ପାଖରେ ସମ୍ଭବ ହୋଇନଥାଏ । ପରଂପରା, ଧର୍ମ, ସାମାଜିକ ଚଳଣି, ପାରିବାରିକ ସଂସ୍କାର ଓ ବୃହତ୍ତର ସାମାଜିକ ପରିବେଶରୁ ବ୍ୟକ୍ତି ଏପରି କେତେକ ବିଶ୍ୱାସ ଲାଭ କରେ ଯାହାକୁ ସେ ଅନାୟାସରେ ଗ୍ରହଣ କରି ନେଇଥାଏ । ନାନା ମନସ୍ତାତ୍ତ୍ୱିକ ଓ ସାମାଜିକ କାରଣରୁ ଗୁଡିଏ ଅନ୍ଧ ସଂସ୍କାର ବ୍ୟକ୍ତିର ମନକୁ ଆଚ୍ଛନ୍ନ କରି ରଖିଥାଏ । କେବଳ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ସକଳ କୁସଂସ୍କାର ଓ ଅପସିଦ୍ଧାନ୍ତ ଠାରୁ ନିଜକୁ ମୁକ୍ତ ରଖିବାକୁ ସମର୍ଥ ହୋଇଥାଏ । ଏପରିକି କେତେକ ବୈଜ୍ଞାନିକ ନିଜ ଅଧ୍ୟୟନ କ୍ଷେତ୍ରଟିରେ ଯେଉଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି, ତାହା ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ କରନ୍ତି ନାହିଁ । ବସ୍ତୁତଃ ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦେଇ ଜୀବନଧାରାର ସକଳ ସ୍ତରରେ ଏହାର ପ୍ରୟୋଗକୁ ଗୁରୁତ୍ୱ ଦେଇଥାଏ ।

ବିଚାରଶୀଳତାକୁ ପ୍ରାଧାନ୍ୟ ଦେବା ସହ ଉତ୍କୃଷ୍ଟ ଜୀବନର ଆଧାର ଉପରେ ହେତୁବାଦ ଗୁରୁତ୍ୱ ଦେଇଥାଏ । ଜ୍ଞାନାନୁରାଗ, ସତ୍ୟନିଷ୍ଠା ବା ବୁଦ୍ଧିର ପ୍ରୟୋଗ ଜୀବନ ପାଇଁ ଯେପରି ଆବଶ୍ୟକ, ଜୀବନକୁ ଉନ୍ନତତର ସୋପାନକୁ ନେବା ପାଇଁ ସେହିପରି କେତେକ ନୈତିକ ଆଦର୍ଶ ମଧ୍ୟ ଆବଶ୍ୟକ । ନୈତିକ ଆଦର୍ଶର ନାନା ଉତ୍ସ ବା ତାହାର ଉପଯୋଗିତା ନେଇ ବିଭିନ୍ନ ବିଚାର ରହିବା ଦେଖାଯାଏ । ହେତୁବାଦ ଐହିକ ଜୀବନ ଉପରେ ଗୁରୁତ୍ୱ ଦେଇ (ଯେହେତୁ ଏକ ପାରଲୌକିକ ଜଗତର କଳ୍ପନାର କୌଣସି ଭିତ୍ତି ନାହିଁ) ସକଳ ନୈତିକ ମୂଲ୍ୟଚୟକୁ ସେହି ମାନଦଣ୍ଡରେ ବ୍ୟାଖ୍ୟା କରିଥାଏ ।

ବିଶେଷକରି ହେତୁବାଦ ଏକ ମାନବକୈନ୍ଦ୍ରିକ ନୈତିକ ଆଦର୍ଶକୁ ପ୍ରାଧାନ୍ୟ ଦେଇଥାଏ । ସୁତରାଂ ମାନବବାଦ ଏହି ମୂଲ୍ୟଚୟର ଏକ ମୌଳିକ ନିଷ୍କର୍ଷ ଅଟେ । ମଣିଷ ମଣିଷ ମଧ୍ୟରେ ଏହା କୌଣସି ତାରତମ୍ୟ ବା ବିଭେଦକୁ ସ୍ୱୀକୃତି ଦିଏ ନାହିଁ । ଯେକୌଣସି ବିଭାଜନକାରୀ ଭାବନା ମାନବବାଦର ପରିପନ୍ଥୀ । ଲିଙ୍ଗଭେଦ, ଜାତିଭେଦ, ବର୍ଣ୍ଣଭେଦ ଇତ୍ୟାଦି ସକଳ ବିଭାଜନମୂଳକ ମାନସିକତାର ଊର୍ଦ୍ଧ୍ୱକୁ ଯାଇ ବ୍ୟକ୍ତିର ମର୍ଯ୍ୟାଦାକୁ ସ୍ୱୀକାର କରିବା ହେତୁବାଦୀ ମାନବବାଦର ଆଦର୍ଶ । ଧର୍ମ, ଭାଷା, ଜାତୀୟତା ଜନିତ ବିଭାଜନ ଓ ବିଦ୍ୱେଷ ମଧ୍ୟ ଏହି ଆଦର୍ଶର ପ୍ରତିକୂଳ । ସାଧୁତା, କର୍ତ୍ତବ୍ୟନିଷ୍ଠା, ସତ୍ୟବାଦିତା, ଅନ୍ୟ ପ୍ରତି ସମ୍ମାନବୋଧ ଇତ୍ୟାଦି ମୂଲ୍ୟଚୟ ଗୁଡିକ ନୈତିକ ଉତ୍କର୍ଷର ସ୍ୱାକ୍ଷର ବହନ କରିଥାଏ । ତେବେ ହେତୁବାଦ ଏହିସବୁ ନୈତିକ ମୂଲ୍ୟଚୟର ଭିତ୍ତି କୌଣସି ଈଶ୍ୱରୀୟ ବା ଧର୍ମୀୟ ନିର୍ଦ୍ଦେଶ ବୋଲି ଗ୍ରହଣ ନକରି ଏସବୁକୁ ସାମାଜିକ ଜୀବନର ଗୁଣାତ୍ମକ ବିକାଶ ପାଇଁ ଆବଶ୍ୟକ ବୋଲି ନେଇଥାଏ । ସାମାଜିକ ଶ୍ରେୟ ଓ ସଂପ୍ରୀତି ପାଇଁ ନୈତିକ ମୂଲ୍ୟଚୟ ଯେ ଅବଶ୍ୟମ୍ଭାବୀ ଏହାକୁ ହେତୁବାଦ ପ୍ରାଧାନ୍ୟ ଦେଇଥାଏ ।

ମଣିଷ ସ୍ୱଭାବରେ ବିଚାରଶୀଳତା, ଅନୁସନ୍ଧିତ୍ସୁ ମନୋଭାବ ଯେପରି ରହିଛି ସେହିପରି କେତେକଙ୍କ ପାଖରେ ଅନ୍ଧସଂସ୍କାର ଓ ଅହେତୁକ ବିଶ୍ୱାସ ପ୍ରତି ମଧ୍ୟ ଆଗ୍ରହ ରହିଛି । ହେତୁବାଦ ଅହେତୁକ ଭାବନା ଓ କୁସଂସ୍କାରକୁ ଦୂର କରିବାକୁ ବିଚାରଶୀଳତା ଓ ତର୍କଶୀଳତାକୁ ଗୁରୁତ୍ୱ ଦେଇଥାଏ । ସେହିପରି ମଣିଷର ଆବେଗିକ ସ୍ତରରେ ମହତ୍ତର

ଆକାଂକ୍ଷା, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ଉନ୍ନତ ରୁଚି ଯେପରି ରହିଛି, ସେହିପରି ସ୍ୱାର୍ଥପରତା, ଅହେତୁକ କାମନା, ଜାନ୍ତବ ପ୍ରବୃତ୍ତି ମଧ୍ୟ ରହିଛି । ଆମର ଆବେଗିକ ସ୍ତରକୁ ମହତ୍ତର ଆକାଂକ୍ଷା ଓ ମାନବିକ ଗୁଣାବଳୀ ଦ୍ୱାରା ପ୍ରଭାବିତ କରିପାରିଲେ ଜୀବନର ନୈତିକ ଉତ୍ତରଣ ସମ୍ଭବପର ହୋଇପାରିବ । ବୁଦ୍ଧିମାନ ଲୋକମାନେ ଅସାମାଜିକ କାର୍ଯ୍ୟରେ ଲିପ୍ତ ହେବା ବା ସ୍ୱାର୍ଥପର ହେବାର ଦୃଷ୍ଟାନ୍ତ ସମାଜରେ ବିରଳ ନୁହେଁ । ଶୃଙ୍ଖଳାବୋଧ, ମାର୍ଜିତ ରୁଚି, ନ୍ୟାୟ ପ୍ରତି ଅନୁରକ୍ତି ଓ ବିଶେଷ କରି ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ପ୍ରସାର ଦ୍ୱାରା ସାମାଜିକ ଜୀବନଧାରାର ଗୁଣାତ୍ମକ ଅଭିବୃଦ୍ଧି ସମ୍ଭବପର ହୋଇଥାଏ । ସମାଜରେ ଏହି ନୈତିକ ଓ ସୃଜନାତ୍ମକ ପ୍ରବୃତ୍ତିର ପ୍ରସାର ହେତୁବାଦର ଏକ ବିଶିଷ୍ଟ ଆଭିମୁଖ୍ୟ ଅଟେ । ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଇତ୍ୟାଦିର ବିଚାରଶୀଳ ପ୍ରୟୋଗ ଦ୍ୱାରା ସମାଜର ମଙ୍ଗଳ ସାଧନ କରାଯିବ-ତାହାକୁ ହେତୁବାଦ ସ୍ୱୀକାର କରିଥାଏ ।

ମୋଟ ଉପରେ ନୈତିକ ଓ ମାନବିକ ମୂଲ୍ୟଚୟର ବିକାଶ ଦ୍ୱାରା ସାମାଜିକ କଲ୍ୟାଣ ସାଧିତ ହୋଇଥାଏ । ଅପର ପକ୍ଷରେ ଅନୈତିକତା, ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷ ସମାଜରେ ଦୁଃଖ ଦୁର୍ଦ୍ଦଶା ବୃଦ୍ଧି ଦିଗରେ ସହାୟକ ହୋଇଥାଏ । ଆମ ସଂସାରରେ ନାନା ଯୁଦ୍ଧ, ବିଭୀଷିକା, ଶୋଷଣ, ସନ୍ତ୍ରାସବାଦ ଇତ୍ୟାଦି ଅହେତୁକ ଓ ଅମାନବିକ କାର୍ଯ୍ୟ ସମାଜରେ ଦୁଃଖ ଓ ଯନ୍ତ୍ରଣାକୁ ଗୁଣିତ କରିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ଅଭୂତପୂର୍ବ ବିକାଶ ହୋଇଥିଲେ ମଧ୍ୟ, ଆମ ସଂସାରରେ ନାନା ଶୋଷଣ, କ୍ରୂରତା, ବିଦ୍ୱେଷ ଯେପରି ରହିଛି ସେହିପରି ନାନା ଦାରିଦ୍ର୍ୟ ଭିତରେ ଅଗଣିତ ମଣିଷ ଜୀବନର ସର୍ବନିମ୍ନ ଆବଶ୍ୟକତା ଠାରୁ ମଧ୍ୟ ବଞ୍ଚିତ ହୋଇ ରହିଛନ୍ତି । ସର୍ବଜନହିତୈଷୀ ଜୀବନଦର୍ଶନର କେତେକେତେ ତାତ୍ତ୍ୱିକ ବ୍ୟାଖ୍ୟା ଶାସ୍ତ୍ରର ପୃଷ୍ଠା ମଣ୍ଡନ କରୁଥିଲେ ମଧ୍ୟ ତାହା ବାସ୍ତବପକ୍ଷେ ଆମ ଦୁନିଆଁର ବାସ୍ତବ ଦୃଶ୍ୟପଟରେ ରୂପରେଖ ନେଇ ନାହିଁ । ହେତୁବାଦୀ ଜୀବନ ଦର୍ଶନ ଏହି ପରିପ୍ରେକ୍ଷୀରେ ମାନବ-କୈନ୍ଦ୍ରିକ ଓ ଐହିକ-ଜୀବନ ଆଧାରିତ ନୈତିକ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦେଇଆସିଛି । ମାନବିକ-ଦୃଷ୍ଟି ଜନିତ ମହନୀୟତାକୁ ଜୀବନର ଶ୍ରେୟ ଭାବେ ଗ୍ରହଣ କରିବାକୁ ହେତୁବାଦ ସର୍ବଦା ପ୍ରେରଣା ଯୋଗାଇଛି । ସମ୍ବେଦନଶୀଳ ମନୋଭାବ ଓ ମୈତ୍ରୀପୂର୍ଣ୍ଣ ଭାବନା ଦ୍ୱାରା ଯେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇପାରିବ ଓ ସମାଜର ନୈତିକ ଉତ୍ତରଣ ସମ୍ଭବ ହେବ ଏହା ହେତୁବାଦର ସ୍ୱୀକୃତ ଆଭିମୁଖ୍ୟ ହୋଇରହିଛି ।

ମାନବବାଦକୁ ହେତୁବାଦରେ ପ୍ରାଧାନ୍ୟ ଦିଆଯିବାର ଏକ ବ୍ୟାବହାରିକ ଲକ୍ଷ୍ୟ ମଧ୍ୟ ରହିଛି । ସାଂପ୍ରତିକ ବିଶ୍ୱରେ ବୈଜ୍ଞାନିକ ସାମର୍ଥ୍ୟ ସମଗ୍ର ଜୀବ ଜଗତକୁ ଧ୍ୱଂସ କରିବାର ଶକ୍ତି ମଣିଷକୁ ଦେଇପାରିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଜୀବନ ଧାରଣର ମାନକୁ ଉନ୍ନତ କରିବା ସହ ସମଗ୍ର ବିଶ୍ୱର ହିତ ପାଇଁ କେତେ କେତେ ସମ୍ଭାବନା ସୃଷ୍ଟି କରିଛି । ତେବେ ବିଜ୍ଞାନ ଓ ପ୍ରଯୁକ୍ତିର ଅପପ୍ରୟୋଗ ବୈଷମ୍ୟ ଓ ଶୋଷଣକୁ ବୃଦ୍ଧି କରିବା ସହ ସମଗ୍ର ମାନବ-ସତ୍ତାକୁ ଧ୍ୱଂସ କରିବାର ସମ୍ଭାବନା ମଧ୍ୟ ଆଣିଛି । ଏହି ପୃଷ୍ଠଭୂମିରେ ମାନବତାବାଦ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ବିକାଶ ହିଁ ସଭ୍ୟତାର ଅଗ୍ରଗତି ପାଇଁ ଅବଶ୍ୟମ୍ଭାବୀ ମନେ ହେଉଛି । ସେହିପରି ଭ୍ରାତୃତ୍ୱ, ପ୍ରେମଭାବ, ସେବା ପରି କେତେକ ମହନୀୟ ଆଦର୍ଶ ଧର୍ମ ସହ ସଂଶ୍ଳିଷ୍ଟ ଥିଲେ ବି ଧର୍ମ ବହୁ ସମୟରେ ସାଂପ୍ରଦାୟିକ ମାନସିକତାରେ ରୂପାନ୍ତରିତ ହୋଇ ସମାଜରେ ନାନା ବିଦ୍ୱେଷ ଓ ଉତ୍ପୀଡ଼ନର ପରିବେଶ ସୃଷ୍ଟି କରିପାରୁଛି । ଧାର୍ମିକ ପୃଷ୍ଠପୋଷକତାରୁ ଅଭିନିବେଶ ନେଇ ଧର୍ମର ପ୍ରଭାବ ଥିବା ସମାଜରେ ହିଂସା ଓ ସନ୍ତ୍ରାସବାଦ ବିଶ୍ୱର ଶାନ୍ତି ଓ ପ୍ରୀତିପୂର୍ଣ୍ଣ ସହାବସ୍ଥାନ ପ୍ରତି ଆହ୍ୱାନ ସୃଷ୍ଟି କରୁଛି ।

ଅତୀତରେ ଧର୍ମ ବିଜ୍ଞାନର ବିକାଶ ପ୍ରତି ପ୍ରତିବନ୍ଧକ ଆଣିଥିବା ବେଳେ ଆଧୁନିକ କାଳରେ ଧର୍ମ (ସାଂପ୍ରଦାୟିକତାରେ ରୂପାନ୍ତରିତ ହୋଇ) ବିଭେଦ ଓ ବିଦ୍ୱେଷର ମନୋଭାବ ସୃଷ୍ଟି କରୁଛି । ସୁତରାଂ ହେତୁବାଦ ଯୁକ୍ତି ସମର୍ଥିତ ନୈତିକ ମୂଲ୍ୟଚୟର ବିକାଶକୁ ପ୍ରାଧାନ୍ୟ ଦେଇ ଆସିଛି । ନୈତିକତା ଈଶ୍ୱର-ପ୍ରେରିତ ଅନୁଜ୍ଞା ନୁହେଁ, ଏହା ଆମର ଅନୁଭୂତି ଆଧାରିତ । ନୈତିକ ଶୃଙ୍ଖଳା ଥିବା ଏକ ସମାଜର ଜୀବନଧାରା ଉନ୍ନତ ହେବା ବେଳେ ଅନୈତିକତାର ପ୍ରଭାବ ସାମାଜିକ ଜୀବନକୁ କଳୁଷିତ କରିଥାଏ । ଏହା ଅନୁଭୂତିରୁ ସ୍ପଷ୍ଟ ।

ମୋଟ ଉପରେ କହିଲେ ବିଚାରଶୀଳତା ଓ ମାନବିକତା ହେତୁବାଦର ଦୁଇ ପ୍ରଧାନ ଆଭିମୁଖ୍ୟ ବା ଲକ୍ଷଣ । ପୁନଶ୍ଚ ଏ ପ୍ରତ୍ୟେକର ନାନା ଦିଗନ୍ତ ରହିବା ଦେଖାଯାଏ । ବିଚାରଶୀଳତା ସହ ଜ୍ଞାନାନ୍ୱେଷଣ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, କୌତୂହଳ ପ୍ରବଣତା, ତର୍କଶୀଳ ମନୋଭାବ ଇତ୍ୟାଦି ସମ୍ବନ୍ଧିତ ହେବାବେଳେ ମାନବିକତା ସହ ସମ୍ବେଦନଶୀଳ ମନୋଭାବ, ଭ୍ରାତୃତ୍ୱବୋଧ, ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ଇତ୍ୟାଦି ଭାବନା ସଂଶ୍ଳିଷ୍ଟ । ମଣିଷ ନିଜର ଅନୁଭୂତି, ଆବେଗ, ଭାଷା, ବିଚାର ଇତ୍ୟାଦି ମଧ୍ୟ ଦେଇ ତାର ସମାଜ ଓ ପରିବେଶ ସହ ସମ୍ବନ୍ଧିତ ହୋଇଥାଏ । ସେହିପରି ଏକ ବୃହତ୍ତର ଗୋଷ୍ଠୀଜୀବନ ଭିତରେ ମଣିଷ ସାମାଜିକ, ରାଜନୈତିକ, ସାଂସ୍କୃତିକ, ଭାବଗତ ସ୍ତରରେ ବୃହତ୍ତର ପରିବେଶ ସହ ସମ୍ବନ୍ଧ ଯୋଡ଼ିଥାଏ । ଏହି ସବୁ ପୃଷ୍ଠଭୂମିରେ ବିଚାରଶୀଳତା ଓ ମାନବିକତା ଯଦି ପ୍ରତ୍ୟେକ ସମ୍ବନ୍ଧ କ୍ଷେତ୍ରରେ ପ୍ରତିଫଳିତ ହୁଏ ତେବେ ସାମାଜିକ ଉତ୍କର୍ଷ ସାଧିତ ହୋଇଥାଏ । ବ୍ୟକ୍ତି ସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ ସମାଜରେ ରହିଥିବା ନାନା ଅହେତୁକ ଓ ଅମାନବିକ ବ୍ୟବସ୍ଥା, ପରମ୍ପରା, ଚଳଣି, ବିଶ୍ୱାସ ଇତ୍ୟାଦିକୁ ଦୂର କରିବା ସହ ସକଳ କ୍ଷୟଶୀଳତା ଓ ମାନବିକ ଦୁଃଖ ଦୁର୍ଦ୍ଦଶାକୁ ପ୍ରତିହତ କରିବାରେ ହେତୁବାଦ ଏକ ବଳିଷ୍ଠ ଭିତ୍ତି ଯୋଗାଇ ପାରିବ । ସାମାଜିକ ଶ୍ରେୟ ହାସଲ ପାଇଁ ହେଉ ବା ଏକ ଗୁଣାତ୍ମକ ଜୀବନର ବିକାଶ ପାଇଁ ହେଉ ହେତୁବାଦ ଏକ ଜୀବନ ଦର୍ଶନର ମାନଦଣ୍ଡ ହୋଇପାରିବ ।

ସତ୍ୟ ପ୍ରତି ଅନୁରାଗ ( ଯାହା ବିଚାରଶୀଳତାର ମୌଳିକ ନିଷ୍କର୍ଷ) ଓ ସମ୍ବେଦନଶୀଳ ମନୋଭାବ (ଯାହା ମାନବିକତାବାଦର ଆଦର୍ଶ) ହେତୁବାଦର ଦୁଇ ପ୍ରଧାନ ଆଧାର ହୋଇଥିବାରୁ ସବୁ ଯୁଗରେ ହେତୁବାଦୀମାନେ ସମାଜ ସଂସ୍କାର ସ୍ତରରେ ପଥ-ପ୍ରଦର୍ଶକ ହୋଇଛନ୍ତି । ନିଜର ସମାଜକୁ ଉନ୍ନତ ଓ ସାମାଜିକ ସଂପର୍କକୁ ଅଧିକ ମାନବିକ କରିବାକୁ ହେତୁବାଦୀମାନେ ଗଂଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ସମାଜରେ ଯାହା ସବୁ ଦୁଃଖ-ଦୁର୍ଦ୍ଦଶା, ଅନ୍ୟାୟ ବା ବର୍ବରତା ରହିଛି ସେସବୁ ମଣିଷକୃତ ବା ପରମ୍ପରା ଦ୍ୱାରା ଚଳିଆସିଛି-ତାହା ହିଁ ସେମାନେ ଗଭୀର ଭାବେ ଅନୁମାନ କରିଛନ୍ତି । ଧାର୍ମିକ ଭାବପ୍ରବଣତା ଜନିତ ରୁଦ୍ଧ ମାନସିକତାରୁ ନାନା କ୍ରୂରତା ଓ ନିଷ୍ଠୁରତା ଶହ ଶହ ବର୍ଷ ଧରି ସମାଜରେ ଚଳିଆସିଛି ଓ ସେ ସବୁ ଏକ ଜନଗୋଷ୍ଠୀର ପରମ୍ପରା ହୋଇଯାଇଛି । ସେହିପରି ନାନା ଅଜ୍ଞତା ଜନିତ ବିଶ୍ୱାସରୁ ସମାଜରେ କୁସଂସ୍କାର ବିଭିନ୍ନ ଗୋଷ୍ଠୀମାନଙ୍କ ଚେତନାର ସ୍ତରକୁ କବଳିତ କରି ରଖିଛି । ମଣିଷ ନିଜର ପ୍ରବୃତ୍ତି ଓ ଆବେଗକୁ ସୁହାଇଲା ପରି ନାନା ବିଶ୍ୱାସ ବିଭିନ୍ନ ସମୟରେ ସୃଷ୍ଟି କରିଛି ଓ ପିଢ଼ି ପରେ ପିଢ଼ି ଦେଇ ସେହି ବିଶ୍ୱାସ ସକଳ ବିଶାଳ ଦ୍ରୁମରେ ପରିଣତ ହୋଇଛି । କୌଣସି ଅନ୍ୟାୟ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ନ ଉଠିବା ପାଇଁ ସେ ସବୁକୁ ଧର୍ମଗ୍ରନ୍ଥ ବା ଈଶ୍ୱରୀୟ ଅନୁଜ୍ଞା କହିବାର ପ୍ରୟାସ ହୋଇଛି । ତେବେ ହେତୁବାଦୀ ମାନେ ସମାଜର ପ୍ରଚଳିତ ବିଶ୍ୱାସ, ପରମ୍ପରା ଓ ନୀତିବୋଧକୁ

ବିଶ୍ଳେଷଣ କରି ସେ ସବୁର ଭଲ-ମନ୍ଦ ଦିଗ ନେଇ ଭାବନା ବ୍ୟକ୍ତି କରିଆସିଛନ୍ତି । ଏହି ପରିପ୍ରେକ୍ଷୀରେ ବୌଦ୍ଧିକ ଓ ସାମାଜିକ ସ୍ତରରେ କ୍ରାନ୍ତି ଆଣିବା ପାଇଁ ପ୍ରୟାସ କରିଥିବା ବହୁ ସଂସ୍କାର ପ୍ରୟାସୀ ହେତୁବାଦୀ କିପରି ନାନା ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି ତାହା ବିଭିନ୍ନ ଦେଶର ଇତିହାସରୁ ଜଣାପଡ଼େ ।

ସଂସ୍କାରକ ମାନେ ବିଭିନ୍ନ ଯୁଗରେ ସମାଜର ପ୍ରଚଳିତ ବିଶ୍ୱାସ ଓ ପରମ୍ପରା କେତେଦୂର ଯୁକ୍ତିସଂଗତ ଓ ସାମାଜିକ ଶ୍ରେୟ ଆଧାରିତ ଏହାର ଅନୁଶୀଳନ କରିଆସିଛନ୍ତି । ସମାଜରେ ରହିଥିବା ରାଶି ରାଶି କୁସଂସ୍କାର ଓ ଅପସଂସ୍କୃତିକୁ ସେହିମାନେ ନିଜର ଶାଣିତ ବୁଦ୍ଧିରେ ବିଶ୍ଳେଷଣ କରିଥାନ୍ତି । ସେହି ସଂସ୍କାରବାଦୀମାନେ ମାନବିକ ଦୁଃଖ, ଦୁର୍ଦ୍ଦଶା, ଶୋଷଣ ଓ ଅନ୍ୟାୟ ପ୍ରତି ସ୍ପର୍ଶକାତରହୀନ ନହେବା ଯୋଗୁଁ ସେମାନେ ସେସବୁକୁ ପରିବର୍ତ୍ତନ କରିବାକୁ ପ୍ରୟାସ କରିଥାନ୍ତି । କେତେକ ବିଶ୍ୱାସ ବା ବିଧି ଯଦି ସାମାଜିକ ସ୍ତରରେ ଅନ୍ୟମାନଙ୍କର ଦୁଃଖ ଦୁର୍ଦ୍ଦଶାର କାରଣ ହୁଏ କିମ୍ବା ଏକ ଅନ୍ୟାୟ ଓ ଅମାନବିକ ପ୍ରଥାର ପ୍ରଶ୍ରୟ ଦିଏ ତେବେ ସେ ସବୁକୁ ପରିବର୍ତ୍ତନ କରିବାକୁ ସଂସ୍କାରବାଦୀ ବ୍ୟକ୍ତିମାନେ ପ୍ରୟାସ କରିଥାନ୍ତି । ସେହିପରି କେତେକ ବିଶ୍ୱାସ ଜନଗଣଙ୍କର ଅଜ୍ଞତା ମଧ୍ୟ ଦେଇ ସମାଜରେ ମଧ୍ୟ ରହିଥାଏ । ସମାଜରେ ରାଶି ରାଶି କୁସଂସ୍କାର ରହିବା ଏକ ସାଧାରଣ ଘଟଣା ଅଟେ । ତେବେ ଆଧୁନିକ ଜୀବନ ପ୍ରବାହ ଓ ବୈଜ୍ଞାନିକ ସଚେତନତା ନେଇ କେତେକ କୁସଂସ୍କାର ପରିବର୍ତ୍ତିତ ହେଉଥିଲେ ବି ପୁନଶ୍ଚ ନୂଆ ନୂଆ କୁସଂସ୍କାର ସମାଜରେ ମୁଣ୍ଡ ଟେକୁଥାଏ । ଫଳିତ ଜ୍ୟୋତିଷ, ବାସ୍ତୁବିଦ୍ୟା ଇତ୍ୟାଦି ଭାବନାର ବୈଜ୍ଞାନିକ ଭିତ୍ତି ନଥିଲେ ମଧ୍ୟ ସେସବୁ କେତେକ ସମାଜରେ ତିଷ୍ଠି ରହିଆସିଛି । ଜାତିପ୍ରଥା, ଅସ୍ପୃଶ୍ୟତା ପରି ଅମାନବିକ ପ୍ରଥାଗୁଡ଼ିକ ଭାରତୀୟ ସମାଜରେ ଯୁଗ ଯୁଗ ଧରି ରହିଆସିଛି । ନାରୀମାନଙ୍କ ପ୍ରତି ଦୃଷ୍ଟିଭଙ୍ଗୀ ଧର୍ମର ବଳିଷ୍ଠ ପ୍ରଭାବର ଥିବା ସମାଜମାନଙ୍କରେ ଏପରି ରହିଛି ଯଦ୍ୱାରା ସେମାନେ ନାନା ମାନବିକ ଅଧିକାରରୁ ବଞ୍ଚିତ ହୋଇରହିଛନ୍ତି । ରୋଗ ଥିବା ପ୍ରାକୃତିକ ଦୁର୍ବିପାକରୁ ନିଜକୁ ରକ୍ଷା କରିବା ପାଇଁ ଯଜ୍ଞ, ଗ୍ରହ-ଶାନ୍ତି, ପଶୁବଳି ଇତ୍ୟାଦି ଏବେ ବି ବିଭିନ୍ନ ସ୍ଥାନରେ ଦିଆଯାଉଛି । ନିଜର ପ୍ରତିକୂଳ ସ୍ଥିତିରେ ପରିବର୍ତ୍ତନ ପାଇଁ ବା ପୁଣ୍ୟ ଅର୍ଜନ ପାଇଁ ବିଭିନ୍ନ ମୁଦି ପିନ୍ଧିବା, ଦିଅଁ ଦେବତା ପାଖରେ ମାନସିକ କରିବା, କେଉଁଠି ଯାଇ ବୁଡ଼ ପକାଇବା ପରି ଘଟଣାମାନ ଆମ ସମାଜରେ ଏବେ ବି ବ୍ୟାପକ ଭାବେ ରହିଛି । ସେହିପରି ନାନା କୁସଂସ୍କାର ଆଞ୍ଚଳିକ ସ୍ତରରେ ମଧ୍ୟ ଦେଖିବାକୁ ମିଳିଥାଏ । ସମାଜର ସଂସ୍କାରପ୍ରୟାସୀ ବ୍ୟକ୍ତିମାନେ ଜନଗଣଙ୍କର ଏହିସବୁ ବିଶ୍ୱାସ, ରୂଢ଼ିବାଦୀ ମାନସିକତା, ଅମାନବିକ ପରମ୍ପରା ଇତ୍ୟାଦି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥାନ୍ତି ।

ପ୍ରତ୍ୟେକ ଯୁଗରେ ଓ ବିଭିନ୍ନ ସଭ୍ୟତାରେ ହେତୁବାଦୀମାନେ ସଂସ୍କାରବାଦୀ ଚେତନାର ପଥ ପ୍ରଦର୍ଶକ ହୋଇଥିଲେ ବି ପ୍ରତ୍ୟେକ ସଂସ୍କାରକ ହେତୁବାଦୀ ନହୋଇପାରନ୍ତି । କେତେକ ସମୟରେ କେତେକ ସଂସ୍କାରକ ଜନଗଣଙ୍କର କୌଣସି ରୁଦ୍ଧ ବ୍ୟବସ୍ଥା ବା କୁସଂସ୍କାରକୁ ପରିବର୍ତ୍ତନ ପାଇଁ ପ୍ରୟାସ କରିଛନ୍ତି, ତେବେ ସେ ଯେ ହେତୁବାଦୀ ଜୀବନଦର୍ଶନର ପୃଷ୍ଠପୋଷକ ହୋଇ ଏହା କରିଛନ୍ତି ତାହା କୁହାଯାଇପାରିବ ନାହିଁ । କେତେକ ସ୍ତରରେ କୁସଂସ୍କାରକୁ ବିରୋଧ କରୁଥିବା କୌଣସି ସଂସ୍କାରକ ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ କେତେକ ଅଯୌକ୍ତିକ ଭାବନାକୁ ଧରି ରଖିଥାନ୍ତି । ଆମ ସମାଜ ପୃଷ୍ଠଭୂମିରେ କେତେକ ଅସ୍ପୃଶ୍ୟତା, ବାଲ୍ୟବିବାହ ବା ସତୀପ୍ରଥାକୁ ବିରୋଧ କରିଛନ୍ତି ଅଥଚ ଜାତିପ୍ରଥା ବା ଫଳିତ ଜ୍ୟୋତିଷରେ ଆସ୍ଥା ସ୍ଥାପନ କରିଛନ୍ତି । ଜାତିପ୍ରଥା, ଫଳିତ ଜ୍ୟୋତିଷ ଓ ପ୍ରତିମା ପୂଜାକୁ ବିରୋଧ କରିଥିବା କେତେକ

ସଂସ୍କାରକ ନିଜ ଧର୍ମଗ୍ରନ୍ଥର ବାଣୀକୁ ଅପୌରୁଷେୟ ବା ସନାତନ ବୋଲି ବିଶ୍ୱାସ କରିଛନ୍ତି । ଧର୍ମନିରପେକ୍ଷତାର ବିଶିଷ୍ଟ ପ୍ରବକ୍ତା ହୋଇଥିବା କେତେକ ବ୍ୟକ୍ତି କେଉଁ ବାବାଙ୍କର ଚମତ୍କାରିତାରେ ବିଶ୍ୱାସ କରିବାର ଦୃଷ୍ଟାନ୍ତ ଆମ ସମାଜରେ ସାଧାରଣ ଘଟଣା ଅଟେ । ସୁତରାଂ ପ୍ରତ୍ୟେକ ଯୁଗରେ ହେତୁବାଦୀମାନେ ସମାଜ ସଂସ୍କାର ଦିଗରେ ଅଗ୍ରଣୀ ଭୂମିକା ନେଇଥିଲେ ମଧ୍ୟ ସମସ୍ତ ସମାଜ-ସଂସ୍କାରକ ଯେ ହେତୁବାଦୀ ଏହା କୁହାଯାଇପାରିବ ନାହିଁ ।

ହେତୁବାଦ ବିଚାରଶୀଳତା, ମାନବିକତା ଓ ଏକ ସଂସ୍କାରବାଦୀ ଚେତନାକୁ ଗୁରୁତ୍ୱ ଦେବା ସହ ଏକ ମାନବକୈନ୍ଦ୍ରିକ ଜୀବନ-ଦର୍ଶନକୁ ସର୍ବଦା ପ୍ରାଧାନ୍ୟ ଦେଇଆସିଛି । ଏହି ଜୀବନ-ଦର୍ଶନର ମୌଳିକ ଆଭିମୁଖ୍ୟ ହେଉଛି ଯେ ମଣିଷ ହିଁ ତାର ସଂଘବଦ୍ଧ ପ୍ରଚେଷ୍ଟା ଦ୍ୱାରା ତାର ସଂସାରକୁ ସୁନ୍ଦର କରିବା ସହ ଉନ୍ନତ ଜୀବନଶୈଳୀର ବିକାଶ ସାଧନ କରିପାରିବ । ସଂସାରରେ ଯାହା କିଛି ସୁନ୍ଦର ଓ ମଙ୍ଗଳକର ଜିନିଷ ଜୀବନ ଧାରଣକୁ ଉନ୍ନତ କରିଛି ତାହା ପଛରେ ରହିଛି ମଣିଷର ପ୍ରୟାସ । ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଜୀବନଧାରଣର ଆବଶ୍ୟକତାକୁ ପୂରଣ କରିବାରେ ସହାୟକ ହୋଇଛି । ସେହିପରି ମାନବିକତା ଉତ୍କୃଷ୍ଟ ଜୀବନ-ଶୈଳୀ ଓ ନ୍ୟାୟପୂର୍ଣ୍ଣ ସାମାଜିକ ସମ୍ବନ୍ଧ ପାଇଁ ପ୍ରେରଣା ଯୋଗାଇଛି । ଏ ସବୁ ସମ୍ଭବ ହୋଇଛି ମଣିଷର ପ୍ରୟାସ ଓ ନିଷ୍ଠା ଯୋଗୁଁ । ଗୋଟିଏ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ମଧ୍ୟ ଦେଇ ଆଜି ମଣିଷ ଯେଉଁ ସ୍ତରରେ ପହଞ୍ଚିଛି ତାହା ପଛରେ ରହିଛି ଯୁଗ ଯୁଗର ନିରନ୍ତର ପ୍ରୟାସ ଓ ମାନବିକ ପ୍ରଚେଷ୍ଟା । ନିଜର ସ୍ଥିତିକୁ ଅଧିକ ସୁନ୍ଦର, ମଙ୍ଗଳକର ଓ ମାନବିକ କରିବା ମଣିଷର ଚେଷ୍ଟା ଉପରେ ନିର୍ଭର କରେ । ଅଥଚ ମଣିଷର ଅପଚେଷ୍ଟା ଓ ଅହେତୁକ ଦୃଷ୍ଟିଭଙ୍ଗୀ ଜୀବନଧାରାରେ ଦୁଃଖ, ଦୁର୍ଦ୍ଦଶା ଆଣିପାରେ । ହେତୁବାଦୀମାନେ ସବୁ ଯୁଗରେ ମଣିଷର ପ୍ରୟାସ ଉପରେ ଗୁରୁତ୍ୱ ଦେଇ ଆସିଛନ୍ତି ଓ ଉନ୍ନତ ଓ ଉତ୍କୃଷ୍ଟ ଜୀବନ ପାଇଁ ସ୍ୱପ୍ନ ଦେଖିଛନ୍ତି । ବୌଦ୍ଧିକ ରାଜ୍ୟର ସୂର୍ଯ୍ୟ ସଦୃଶ ସେମାନେ ମଣିଷ ଜାତିର କଲ୍ୟାଣ ପାଇଁ ସ୍ୱପ୍ନ ଦେଖିଛନ୍ତି ଓ ପଥ ପ୍ରଦର୍ଶକ ହୋଇଛନ୍ତି । ଜ୍ଞାନ ଓ ନୈତିକତା ମଧ୍ୟରେ ସମନ୍ୱୟ ଆଣି ସେମାନେ ଐକ୍ୟବଦ୍ଧ ଜୀବନଦର୍ଶନର ପ୍ରବକ୍ତା ହୋଇଛନ୍ତି ।

ସକ୍ରେଟିସ୍‌ଙ୍କ ଭାଷାରେ ହେତୁବାଦୀମାନେ ଡାଆଁସ ପରି ଶୋଇଥିବା ମଣିଷମାନଙ୍କର ନିଦ୍ରାଭଙ୍ଗ କରିବାକୁ ପ୍ରୟାସ କରିଆସିଛନ୍ତି । ଅଜ୍ଞତାର ନିଦ୍ରାରେ ଶୋଇ ରହିଥିବା ମଣିଷମାନଙ୍କୁ ବିଚାର ଓ ବିବେକର ଦଂଶନ ଦେଇ ସେମାନଙ୍କ ଜଡତାକୁ ଦୂର କରିବାକୁ ହେତୁବାଦୀମାନେ ପ୍ରୟାସ କରିଛନ୍ତି । କାରଣ ସେମାନଙ୍କର ଉଦ୍ଦେଶ୍ୟ ହେଉଛି ବିଚାର ଓ ତର୍କଶୀଳ ବିବେଚନା ଦ୍ୱାରା ସତ୍ୟକୁ ଉନ୍ମୋଚିତ କରିବା । ସତ୍ୟକୁ ଉନ୍ମୋଚିତ କରିବାର ଏହି ପ୍ରୟାସ ତଥା ସମାଜ ସଂସ୍କାର ପାଇଁ ପ୍ରଚେଷ୍ଟା ସେମାନଙ୍କୁ ସମସାମୟିକ ସମାଜରେ ନାନା ବିରୋଧର ସମ୍ମୁଖୀନ କରାଇଛି । ଏପରିକି ହେତୁବାଦୀମାନଙ୍କୁ ଜୀବଦ୍ଦଶାରେ ଖଣ୍ଡାଧାରରେ ଚାଲିବାକୁ ହୋଇଛି ବା ଶହୀଦ୍ ହେବାକୁ ପଡ଼ିଛି । ତେବେ ସେହିମାନଙ୍କର ଅବଦାନ ଯୋଗୁଁ ସମାଜ ବଦଳିଛି, ଜ୍ଞାନର ବିକାଶ ହୋଇଛି ଓ ମାନବିକତାର ମୂର୍ଚ୍ଛନା ଝଙ୍କୃତ ହୋଇଛି । ଏହା ହିଁ ସଭ୍ୟତାର ବିଡ଼ମ୍ବନା !



# ନିରୀଶ୍ୱରବାଦ : ଏକ ଦୃଷ୍ଟିପାତ

ସାଧାରଣ ପରିଭାଷାରେ ନାସ୍ତିକ ଓ ନିରୀଶ୍ୱରବାଦ ସମାର୍ଥବୋଧକ ଭାବେ ବ୍ୟବହୃତ ହେଉଥିଲେ ମଧ୍ୟ ଭାରତୀୟ ଦର୍ଶନ ପରିପ୍ରେକ୍ଷୀରେ ନାସ୍ତିକ ଶବ୍ଦର ଏକ ବୈଷୟିକ ଅର୍ଥ ରହିଥିବାରୁ ଶଂସିତ ପ୍ରବନ୍ଧରେ 'ନିରୀଶ୍ୱରବାଦ' ଶବ୍ଦକୁ ପ୍ରୟୋଗ କରାଯାଇଛି । ନିରୀଶ୍ୱରବାଦ ପ୍ରତ୍ୟୟଟିର ବିଶ୍ଳେଷଣ ଓ ତାତ୍ପର୍ଯ୍ୟ ବିଷୟରେ ସଂକ୍ଷିପ୍ତ ଆଲୋଚନା ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ତେବେ ନିରୀଶ୍ୱରବାଦ ଶବ୍ଦଟି ବିଭିନ୍ନ ସଭ୍ୟତାରେ ଓ ବିଭିନ୍ନ ସମୟରେ ନାନା ଅର୍ଥରେ ବ୍ୟବହୃତ ହେବା ଦେଖାଯାଏ । ସେହି ଦୃଷ୍ଟିରୁ ଏହାର ଯଥାର୍ଥ ତାତ୍ପର୍ଯ୍ୟ ନେଇ କିଛି ଅସ୍ପଷ୍ଟତା ରହିବା ମନେହୁଏ । ସାଧାରଣତଃ ନିରୀଶ୍ୱରବାଦର ତାତ୍ପର୍ଯ୍ୟ ହେଉଛି ଯେଉଁ ଭାବନା କୌଣସି ଐଶ୍ୱରିକ, ଅତିପ୍ରାକୃତିକ, ଅଲୌକିକ ବା ଦୈବୀ ଶକ୍ତିର ଅସ୍ତିତ୍ୱ ନେଇ ସନ୍ଦେହ ପ୍ରକାଶ କରିଥାଏ । ତେବେ ନିରୀଶ୍ୱରବାଦର ଏହା ଏକ ମୌଳିକ ତାତ୍ପର୍ଯ୍ୟ ହେଲେ ମଧ୍ୟ ଅନେକ ସମୟରେ କୌଣସି ପ୍ରଚଳିତ ବିଶ୍ୱାସ, ପରମ୍ପରା, ସାମାଜିକ ପ୍ରଥା ବା ଭାବନାକୁ ବିରୋଧ କରୁଥିବା ବ୍ୟକ୍ତିଙ୍କୁ ନିରୀଶ୍ୱରବାଦୀ କୁହାଯିବାର ବହୁ ଦୃଷ୍ଟାନ୍ତ ବିଭିନ୍ନ ସଭ୍ୟତାରେ ଦେଖିବାକୁ ମିଳେ । ପ୍ରଗତିଶୀଳ ବୁଦ୍ଧିଜୀବୀ, ସଂସ୍କାରକ, ହେତୁବାଦୀ ଓ ଏପରିକି କେତେକ ମହାନ୍ ଦାର୍ଶନିକ ଓ ପ୍ରବୀଣ ବୈଜ୍ଞାନିକ ମାନଙ୍କୁ ସେମାନଙ୍କ ସମସାମୟିକ ସମାଜରେ ନିରୀଶ୍ୱରବାଦୀ ବୋଲି ଚିତ୍ରଣ କରିବାର ବହୁ ଦୃଷ୍ଟାନ୍ତ ମିଳିଥାଏ । ଯେଉଁମାନେ ନିଜ ସମସାମୟିକ ସମାଜର ପ୍ରଚଳିତ ଧାରଣା, ମୂଲ୍ୟବୋଧ, ବ୍ୟବସ୍ଥାକୁ (ତାହା ଯେତେ ଅସତ୍ୟ, ଅନୈତିକ ଓ ଅହେତୁକ ହେଲେ ମଧ୍ୟ) ଅସ୍ୱୀକାର କରନ୍ତି ସେମାନଙ୍କୁ ଧର୍ମଛଡ଼ା, ନାସ୍ତିକ, ନିରୀଶ୍ୱରବାଦୀ ପରି ଅସମ୍ମାନ ଜନକ ଭାଷାରେ ଚିତ୍ରଣ କରାଯିବାର ବହୁ ଉଦାହରଣ ଇତିହାସରେ ଦେଖିବାକୁ ମିଳେ । ପ୍ରାଚୀନ ଗ୍ରୀକ୍ ଦର୍ଶନର ବିଶିଷ୍ଟ ଦାର୍ଶନିକ ପ୍ରୋଟାଗୋରାସ୍ (ଖ୍ରୀ.ପୂ.୪୮୫-୪୧୦) ଈଶ୍ୱରଙ୍କୁ ବିଶ୍ୱାସ କରୁଥିଲେ ବି - 'ମଣିଷ ହିଁ ସବୁର ପରିମାପକ' (Man is the measure of all things) ପରି ବିଚାର ଯୋଗୁଁ ନିରୀଶ୍ୱରବାଦୀ ବୋଲି ଅସମ୍ମାନ ପାଇଥିଲେ ଓ ଏଥେନ୍ସରୁ ବିତାଡ଼ିତ ହୋଇଥିଲେ । ମହାନ ସତ୍ୟସନ୍ଧାନୀ ଦାର୍ଶନିକ ସକ୍ରେଟିସଙ୍କୁ (ଖ୍ରୀ.ପୂ.୪୭୦-୩୯୯) ସେହିପରି ଜଣେ ଧର୍ମ ବିରୋଧୀ ବ୍ୟକ୍ତି ବୋଲି ଅଭିଯୁକ୍ତ କରାଯାଇ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିବାର କାହାଣୀ ସୁବିଦିତ । ଭୂମାବାଦୀ, ନିଷ୍ପାପ ଜୀବନର ଅଧିକାରୀ ଓ ଋଷିପ୍ରତିମ ଜିଉ ଦାର୍ଶନିକ ବେନେଡ଼ିକ୍ଟ ସ୍ପିନୋଜା (୧୬୩୨-୧୬୭୭) କେତେକ କ୍ରାନ୍ତିକାରୀ ବିଚାର ପାଇଁ ସାମାଜିକ ବାସନ୍ଦର ଓ ନାନା ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି । ବିଜ୍ଞାନ ଜଗତରେ ଏହି କାହାଣୀ ଅଧିକ ଦୀର୍ଘ ଓ ମର୍ମାନ୍ତିକ । ଚିକିତ୍ସା ବିଜ୍ଞାନର ଦୁଇ ଜନକ- ଶରୀର ବିଜ୍ଞାନ ବା ଆନାଟୋମିର ଉଦ୍ଭାବକ ଆଣ୍ଡ୍ରିଆସ ଭେସାଲିଅସ୍ (୧୫୧୪-୧୫୬୪, ଫିନ୍‌ଲ୍ୟାଣ୍ଡ) ଓ ଶରୀରରେ ରକ୍ତ ସଞ୍ଚାଳନ ବ୍ୟବସ୍ଥାକୁ ବୁଝାଇଥିବା ଚିକିତ୍ସାବିଜ୍ଞାନୀ ମାଇକେଲ ସର୍ଭେଟସ (୧୫୧୧-୧୫୫୩, ଜେନେଭା)ଙ୍କୁ ଧର୍ମ ଓ ଈଶ୍ୱର ବିରୋଧୀ କହି ଜୀବନରେ ବହୁ ଯନ୍ତ୍ରଣା ଦିଆଯାଇଛି, କାରଣ ସେତେବେଳର ବିଚାରରେ ଶରୀର ଏକ ପବିତ୍ର ବସ୍ତୁ ଓ

ଏହାର ବ୍ୟବଚ୍ଛେଦ ଏକ ଈଶ୍ୱର-ବିରୋଧୀ କାର୍ଯ୍ୟ । ଜ୍ଞାନ ଅସୀମ, ଅନ୍ତିମ ସତ୍ୟ କିଛି ନାହିଁ, ଧର୍ମଶାସ୍ତ୍ରର ଜ୍ଞାନ ଅସତ୍ୟ ହେବା ସମ୍ଭବ ଭାବନା ଦେଇଥିବାରୁ ଜର୍ଜ ବ୍ରୁନୋଙ୍କୁ (୧୫୪୮-୧୬୦୦, ଇଟାଲି) ସର୍ବସାଧାରଣରେ ଖୁଣ୍ଟରେ ବାନ୍ଧି ପୋଡ଼ି ମରାଯାଇଛି । ଭୂତତ୍ତ୍ୱ ବିଜ୍ଞାନର ଜନକ ଜର୍ଜ ବ୍ରୁଫୋନ (୧୭୦୭-୧୭୭୩, ଫ୍ରାନ୍ସ) ପୃଥିବୀ ପରିବର୍ତ୍ତନଶୀଳ, ପୃଥିବୀ ଉପରିର ବହୁପରେ ପାହାଡ଼, ପର୍ବତ, ନଦୀ ଇତ୍ୟାଦିର ସୃଷ୍ଟି ବୋଲି କହିଥିବାରୁ ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ଗାଲିଲିଓ (୧୫୬୪-୧୬୪୨, ଇଟାଲି) ପୃଥିବୀ ଘୂର୍ଣ୍ଣାୟମାନ ଓ ସୂର୍ଯ୍ୟ ସ୍ଥିର ପରି ସିଦ୍ଧାନ୍ତ ଦେଇଥିବାରୁ ବନ୍ଦୀ ଜୀବନ ବିତାଇଛନ୍ତି । ଇତିହାସରେ ଏପରି ଅସଂଖ୍ୟ ଦୃଷ୍ଟାନ୍ତ ରହିଛି । ଯେଉଁମାନେ ସଭ୍ୟତାର ପଥପ୍ରଦର୍ଶକ ହୋଇଛନ୍ତି ଓ ଯେଉଁମାନଙ୍କର ଅବଦାନ ଯୋଗୁଁ ଜ୍ଞାନ, ବିଜ୍ଞାନ ଓ ଗୁଣାତ୍ମକ ଜୀବନର ଅଭିବୃଦ୍ଧି ଘଟିଛି ସେହିମାନେ ନିଜର ସମସାମୟିକ ସମାଜରେ ନାସ୍ତିକ ଓ ନିରୀଶ୍ୱରବାଦୀ ବୋଲି ଚିତ୍ରିତ ହେବା ବିଡ଼ମ୍ବନା କହିଲେ ଅତ୍ୟୁକ୍ତି ହେବନାହିଁ । ପାଶ୍ଚାତ୍ୟ ଭୂଖଣ୍ଡରେ ୟୁରୋପୀୟ ନବଜାଗରଣ ଯୁଗ ପୂର୍ବରୁ ବା ବିଜ୍ଞାନର ଆଦିକାଳରେ ଧର୍ମ ଓ ଈଶ୍ୱର ଭାବନା ଆଧାରରେ ଏହିପରି ଯେଉଁ ବୌଦ୍ଧିକ ଅସହିଷ୍ଣୁତାର ପରିବେଶ ରହିଥିଲା, ଭାରତ ଭୂଖଣ୍ଡର କାହାଣୀ ମଧ୍ୟ ତା ଠାରୁ କିଛି କମ୍ ନୁହେଁ । ବ୍ରାହ୍ମଣବାଦ, ଜାତିବାଦ ଓ ବର୍ଣ୍ଣବାଦର ଅସ୍ୱୀକାର କରି ସମାଜରେ ଏକ ସାଂସ୍କୃତିକ ଆଲୋଡ଼ନ ଆଣିଥିବା ବୌଦ୍ଧଧର୍ମ ପରି ଏକ ଗଣଧର୍ମକୁ ଭାରତରୁ ଲୋପ ହେବାକୁ ପଡ଼ିଲା । ବିଶ୍ୱ ଚିନ୍ତାରାଜ୍ୟରେ ବସ୍ତୁବାଦର କ୍ରାନ୍ତିକାରୀ ବିଚାର ଦେଇଥିବା ଓ ଏକ ଇହଜୀବନ-କୈନ୍ଦ୍ରିକ ଜୀବନ ଦର୍ଶନର ପଥ ପ୍ରଦର୍ଶକ ହୋଇଥିବା ଚାର୍ବାକ ଓ ଲୋକାୟତ ଦର୍ଶନର ସମସ୍ତ କୃତିକୁ ଧ୍ୱଂସ କରାଯିବାର ଘଟଣା ଇତିହାସରେ ଘଟିଯାଇଛି । ଆଧୁନିକ ଗବେଷଣାରୁ ଯାହା ଜଣାପଡ଼େ ମାନବବାଦୀ ଓ ହେତୁବାଦୀ ଚିନ୍ତାନାୟକ ଚାର୍ବାକଙ୍କର କୃତି ସକଳକୁ ଧ୍ୱଂସ କରିବା ପାଇଁ ତାଙ୍କ ନାମରେ ନାନା ଅଶୋଭନୀୟ, ଅନୈତିକ ଓ ମିଥ୍ୟାର ଆରୋପ ଲଗାଯାଇଛି । ନିକଟ ଅତୀତରେ ମାତ୍ର ଦେଢ଼ ଶହ ବର୍ଷ ତଳେ ବ୍ରିଟିଶ ଶାସନ କାଳରେ ଜ୍ୟୋତିରାଓ ଫୁଲେଙ୍କ (୧୮୨୭-୧୮୯୦) ପରି ସଂସ୍କାରକ ଶୂଦ୍ର ଓ ମହିଳାଙ୍କର ଶିକ୍ଷା ପାଇଁ ଉଦ୍ୟମ କରିଥିବାରୁ ହିନ୍ଦୁ ସମାଜରେ ବହୁ ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି । ଭୀମରାଓ ଆମ୍ବେଦକରଙ୍କ ପରି ବିଶିଷ୍ଟ ବୁଦ୍ଧିଜୀବୀ ଓ ସଂସ୍କାରକ ଜାତିପ୍ରଥା ଓ ସାମାଜିକ ଦାସତ୍ୱ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି କେତେକ କଟାକ୍ଷର ସମ୍ମୁଖୀନ ହୋଇ ହିନ୍ଦୁଧର୍ମ ପରିବର୍ତ୍ତନ କରିବାର କାହାଣୀ ସୁବିଦିତ । ଏପରିକି ମହାତ୍ମା ଗାନ୍ଧୀଙ୍କ ପରି ବିଶ୍ୱବନ୍ଦ୍ୟ ବ୍ୟକ୍ତି ଅସ୍ପୃଶ୍ୟତା ଦୂର କରିବା ପାଇଁ ଯେତେବେଳେ ଉଦ୍ୟମ କରିଛନ୍ତି ସେତେବେଳେ ତାଙ୍କୁ ମଧ୍ୟ ଧର୍ମ ଧ୍ୱଜାଧାରୀ ମଠାଧୀଶ ମାନେ ହିନ୍ଦୁ ଧର୍ମ ବିରୋଧୀ ଓ ସଂସ୍କୃତି ବିରୋଧୀ ବୋଲି ଚିତ୍ରଣ କରିଛନ୍ତି । ଇତିହାସରୁ ଖୋଜିଲେ ଏହିପରି ଅସୁମାରୀ ଘଟଣା ଦୃଶ୍ୟପଟକୁ ଆସିଥାଏ । ଯେଉଁମାନେ ଚିନ୍ତା ଜଗତର ବିପ୍ଳବୀ, ସାମାଜିକ କ୍ରାନ୍ତିର ବାର୍ତ୍ତାବହ ବା ବିଶ୍ୱମାନବିକତାର ପ୍ରତିଭୂ ସେମାନେ ନିଜର ସମସାମୟିକ ସମାଜରେ ନାନା ନିର୍ଯ୍ୟାତନା ଓ ପ୍ରତିକୂଳ ପରିବେଶର ସମ୍ମୁଖୀନ ହେବାର ନାନା ଲୋମହର୍ଷଣକାରୀ କାହାଣୀ ରହିଛି ଓ ସେମାନଙ୍କୁ ଧର୍ମ ବିରୋଧୀ, ଈଶ୍ୱରବିରୋଧୀ, ସଂସ୍କୃତିବିରୋଧୀ ଓ ନିରୀଶ୍ୱରବାଦୀ କହି ଚିତ୍ରଣ କରାଯାଇଛି ।

ତେବେ ପ୍ରଶ୍ନ ହେଉଛି; ନିରୀଶ୍ୱରବାଦର ପ୍ରକୃତ ତାତ୍ପର୍ଯ୍ୟ କ'ଣ ? ଐତିହାସିକ ଘଟଣା ଗୁଡ଼ିକର ଆବେଗାତ୍ମକ ଆକ୍ଷେପକୁ ପରିହାର କରି ଏହି ପ୍ରତ୍ୟୟଟିର ବସ୍ତୁନିଷ୍ଠ ବିଶ୍ଳେଷଣ ଭିତରେ ଏହା ଏକ 'ଆପେକ୍ଷିକ' ଶବ୍ଦ ଭାବେ ପରିଭାଷାରେ ବ୍ୟବହୃତ ହୋଇଥାଏ । ପ୍ରତ୍ୟୟଟି ଆପେକ୍ଷିକ ଏ ଦୃଷ୍ଟିରୁ ଯେ ଏହାର ଅର୍ଥ ଦୈବୀ (Divine), ଅତିପ୍ରାକୃତିକ

(Supernatural) ଓ ଈଶ୍ୱରୀୟ ଭାବନା ପୃଷ୍ଠଭୂମିରେ ହିଁ ବିଚାର୍ଯ୍ୟ ହୋଇଥାଏ । ଯେଉଁମାନେ ଈଶ୍ୱରୀୟ ସତ୍ତା ଓ ଦୈବୀବିଧାନ ଉପରେ ବିଶ୍ୱାସ ସ୍ଥାପନ କରନ୍ତି ସେମାନେ ଆସ୍ତିକ ବା ଈଶ୍ୱରବାଦୀ । ଆସ୍ତିକତାବାଦର ପ୍ରଧାନ ଭାବନା ହେଉଛି ଈଶ୍ୱର ଓ ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ । ଈଶ୍ୱର-କୈନ୍ଦ୍ରିକ ଜଗଦ୍‌ଦୃଷ୍ଟି ଓ ଜୀବନଦୃଷ୍ଟି ହେଉଛି ଆସ୍ତିକତାବାଦୀ ଦର୍ଶନର ମୂଳ ଆଧାର । ଅପର ପକ୍ଷରେ ଯେଉଁ ବିଚାର ଓ ଜୀବନଦର୍ଶନ ଏହାର ପରିପନ୍ଥୀ ତାହା ହେଉଛି ନିରୀଶ୍ୱରବାଦ । ବସ୍ତୁତଃ ନିରୀଶ୍ୱରବାଦର ଏହି ତାତ୍ପର୍ଯ୍ୟ ନକାରାତ୍ମକ ଏ ଦୃଷ୍ଟିରୁ ଯେ ଏହା ଏକ ତାତ୍ତ୍ୱିକ ଅବବୋଧ, ଓ ଏହା ଆସ୍ତିକ ଦର୍ଶନକୁ ଅସ୍ୱୀକାର କରିଥାଏ ।

ଈଶ୍ୱର ପ୍ରତ୍ୟୟର ତାତ୍ପର୍ଯ୍ୟ ଓ କ୍ରମବିକାଶକୁ ଏକ ଐତିହାସିକ ଓ ବୌଦ୍ଧିକ ପୃଷ୍ଠଭୂମିରେ ବିଚାର କରିବାର ପରିଣାମରୁ ନିରୀଶ୍ୱରବାଦର ଉତ୍ପତ୍ତି ହୋଇଥିବା ଜଣାପଡ଼େ । ନୃତାତ୍ତ୍ୱିକ ଅଧ୍ୟୟନରୁ ଏହା ଜଣାପଡ଼େ ଯେ ବିଭିନ୍ନ ସଭ୍ୟତାରେ ଈଶ୍ୱର ଭାବନାର ଅଭ୍ୟୁଦୟ କ୍ରମବିକାଶଧାରାରେ ବିକଶିତ ହୋଇଛି । ବହୁ ଅତୀତରେ ବା ସଭ୍ୟତାର ଆଦିକାଳରେ ବିଭିନ୍ନ ଭୂଖଣ୍ଡରେ ଲୋକମାନେ ବିଭିନ୍ନ ଜଡ଼ବସ୍ତୁରେ ପ୍ରାଣସତ୍ତାର ଆରୋପ କରି ସେସବୁକୁ ଆରାଧନା କରୁଥିଲେ । ନିରାପଦବିହୀନ ଜୀବନ, ଭୟ ଓ ଅଜ୍ଞତା ଇତ୍ୟାଦି ନାନା ମନସ୍ତାତ୍ତ୍ୱିକ କାରଣରୁ ସଭ୍ୟତାର ପହିଲି ପର୍ବରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଜଡ଼ସତ୍ତାବାଦ (animism) ଜନିତ ବିଶ୍ୱାସ ଓ ପୂଜାର ପରମ୍ପରା ରହିଥିଲା । ଏହିପରି କ୍ରମବିବର୍ତ୍ତନ ଧାରାରେ ପ୍ରତ୍ୟେକ ଆଦିମ ଗୋଷ୍ଠୀ ନିଜ ଗୋଷ୍ଠୀର ଏକ ଆଦିଦେବର ପରିକଳ୍ପନା କରି ନିଜକୁ ଗୋଟିଏ ଗୋତ୍ରରେ ପରିଣତ କଲେ । ନିଜ ଗୋତ୍ରର ଏକ କାଳ୍ପନିକ ଆଦି-ସତ୍ତାକୁ ଅନୁମାନ କରି ତାହାଙ୍କୁ ପୂଜା କଲେ, ଏହି ବିଶ୍ୱାସରେ ଯେ ନିଜ ଗୋଷ୍ଠୀର ଦେବତା ହିଁ ସେମାନଙ୍କର ପ୍ରାର୍ଥନା ଶୁଣିବେ ଓ ସେମାନଙ୍କୁ ସହାୟକ ହେବେ । ଏହି ଭାବଧାରାକୁ ଏକାଧି-ଦେବବାଦ (henotheism) କୁହାଯାଇଥାଏ । ଏହାପରେ ଚିନ୍ତାଧାରାରେ ଅଗ୍ରଗତି ସହ ଭାବନା ସୃଷ୍ଟି ହେଲା ଯେ ଜୀବନର ଓ ପ୍ରକୃତିର ପ୍ରତ୍ୟେକ ବିଭାଗ ଜଣେ ଦେବ ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ ଓ ତାଙ୍କର ଆରାଧନା ଦ୍ୱାରା ଆବଶ୍ୟକୀୟ କ୍ଷେତ୍ରରେ ସଫଳତା ମିଳିପାରିବ । ସମାଜରେ ପୁରୁଷ ପ୍ରାଧାନ୍ୟ ବ୍ୟବସ୍ଥା ଥିବା ବେଳେ ଦେବତାମାନଙ୍କୁ ପୁରୁଷ ବୋଲି କଳ୍ପନା କରିବା ଓ ସମାଜରେ ନାରୀମାନଙ୍କର ପ୍ରାଧାନ୍ୟ ଥିବାବେଳେ ଐଶ୍ୱରିକ ଶକ୍ତିମାନଙ୍କୁ ଦେବୀ ଭାବରେ ଆରାଧନା କରିବାର କଳ୍ପନା ହୋଇଥିଲା । ଏହି ଧାରାରେ ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନ ଦେବଦେବୀଙ୍କର କଳ୍ପନା ସୃଷ୍ଟି ହେବାକୁ ଲାଗିଲା । ଜ୍ଞାନ, ସଂପତ୍ତି, ବିବାହ, ମୃତ୍ୟୁ, ନିର୍ମାଣ କଳା ଇତ୍ୟାଦି ଜୀବନଧାରାର ଘଟଣା ପାଇଁ ଦେବ-ଦେବୀଙ୍କର ପରିକଳ୍ପନା ଯେପରି କରାଗଲା ସେହିପରି ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବର୍ଷା, ପବନ ଇତ୍ୟାଦି ପ୍ରାକୃତିକ ଶକ୍ତିକୁ ମଧ୍ୟ ଦେବତାର କଳ୍ପନା କରି ପୂଜା ଆରାଧନା କରାଗଲା । ପ୍ରାକୃତିକ ବିପର୍ଯ୍ୟୟରୁ ଉଦ୍ଧାର ପାଇଁ କିମ୍ବା ସୁଖମୟ ଜୀବନ ପାଇଁ ବିଭିନ୍ନ ଦେବାଦେବୀଙ୍କର ଆଶୀର୍ବାଦ ଲାଭ କରିବାକୁ ମାନସିକତା ସୃଷ୍ଟି ହେଲା ଯାହାକୁ ବହୁ ଦେବବାଦ (polytheism) କୁହାଯାଏ । ତେବେ ସଭ୍ୟତାର କ୍ରମବିକାଶ ଧାରାରେ ସମାଜ ଯେତେବେଳେ ସୁଦୃଢ଼ ହେବାକୁ ଲାଗିଲା, ଧର୍ମମାନଙ୍କର ଉତ୍ପତ୍ତି ହେଲା । ପ୍ରତ୍ୟେକ ଧର୍ମ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ଏକ ସାଂସ୍କୃତିକ ଆଲୋଡ଼ନ ଭାବେ ସୃଷ୍ଟି ହୋଇ ସେ ଯୁଗରେ କେତେକ କ୍ରାନ୍ତିକାରୀ ଭାବନାକୁ ସୃଷ୍ଟି କରିଥିଲା । କାଳକ୍ରମେ ପ୍ରତ୍ୟେକ ଧର୍ମ ଶହ ଶହ ବର୍ଷର ଅଭିବୃଦ୍ଧି ଓ ବ୍ୟବଧାନ ଭିତରେ ବୃହତ୍ତର ଭୂଖଣ୍ଡକୁ ପ୍ରସାରିତ ହୋଇ ଏକ ବୃହତ୍ତର ଜନଗୋଷ୍ଠୀ ଭିତରେ ସାଂସ୍କୃତିକ ସଂହତି ସୃଷ୍ଟି

କଲା । ଧାର୍ମିକ ବିଶ୍ୱାସ ମଧ ଦେଇ ଏକେଶ୍ୱରବାଦର ଭାବନା (monotheism) ସମାଜରେ ବିସ୍ତାର ଲାଭ କଲା । ବିଭିନ୍ନ ଧର୍ମମାନଙ୍କରେ ଏକେଶ୍ୱରବାଦ ଜନିତ ଏକ ମାନବତ୍ୱାରୋପୀ ଈଶ୍ୱର (anthropomorphic) ଭାବନାର ଉଦ୍ରେକ ହେଲା । ଏହାନୁଯାୟୀ ଈଶ୍ୱର ଏକ ବ୍ୟକ୍ତି, ତାଙ୍କର ବ୍ୟକ୍ତି ସତ୍ତା ରହିଛି । ତେବେ ଈଶ୍ୱର ଏକ ଅସୀମ-ଶକ୍ତି, ଅସୀମ-ଜ୍ଞାନ ଓ ଅସୀମ-କରୁଣାର ବ୍ୟକ୍ତି । ଧାର୍ମିକ ବିଚାର କ୍ଷେତ୍ରରେ ଏ ଭାବନା ସୃଷ୍ଟି ହେବାକୁ ଲାଗିଲା ଯେ ଈଶ୍ୱର ତାଙ୍କର ନିଜର ପ୍ରତିକୃତି ଓ ପ୍ରତିବିମ୍ବ ଆଧାରରେ ହିଁ ମଣିଷକୁ ସୃଷ୍ଟି କରିଛନ୍ତି । କାଳକ୍ରମେ ଧାର୍ମିକ ପରିଭାଷାରେ ଈଶ୍ୱରଙ୍କ ସଂପର୍କରେ ଭାବନା ସୃଷ୍ଟି ହେଲା ଯେ ସେ ଏକ ପରମ-ସତ୍ତା ଓ ସ୍ୱସ୍ଥିତ (Self-existent) । ସବୁ ତାଙ୍କ ଦ୍ୱାରା ସୃଷ୍ଟ ଓ ସେ ସବୁର ଆଦିକାରଣ । ସବୁକିଛି ତାଙ୍କ ଉପରେ ନିର୍ଭରଶୀଳ, ସେ କିନ୍ତୁ କାହା ଉପରେ ନିର୍ଭରଶୀଳ ନୁହଁନ୍ତି । ସେ ଅନନ୍ତ ଓ ଶାଶ୍ୱତ । ତାଙ୍କ ଦ୍ୱାରା ସବୁକିଛି ପରିଚାଳିତ । ସେ କରୁଣାମୟ ଓ ପୂଜାଯୋଗ୍ୟ ।

ଧାର୍ମିକ ଭାବନା କ୍ଷେତ୍ରରେ ଈଶ୍ୱରଙ୍କୁ ନେଇ ନାନା ପ୍ରକାର କଳ୍ପନା କରାଗଲା ଓ ଈଶ୍ୱରଙ୍କୁ ଆଧାର କରି ଅସୁମାରି ସାହିତ୍ୟ, ଧର୍ମଗ୍ରନ୍ଥ, କିମ୍ବଦନ୍ତୀ ଓ କାହାଣୀମାନ ସୃଷ୍ଟି କରାଗଲା । ଜୀବନର ସମସ୍ତ ଘନଘଟା ସହ ଈଶ୍ୱରଙ୍କୁ ସଂପର୍କିତ କରାଗଲା ଓ ସମାଜର ଓ ପ୍ରକୃତିର ସମସ୍ତ ଘଟଣା ପ୍ରବାହକୁ ଈଶ୍ୱରୀୟ ଅବଧାରଣାରେ ବ୍ୟାଖ୍ୟା କରାଗଲା । କାଳକ୍ରମେ ବୌଦ୍ଧିକ ବିକାଶଧାରାରେ ଦାର୍ଶନିକ ଚିନ୍ତନର ସୂତ୍ରପାତ ହେଲା ଓ ଦର୍ଶନ କ୍ଷେତ୍ରରେ ଜ୍ଞାନ, ସତ୍ତା, ବୈଧତା, ନୈତିକତା, ନ୍ୟାୟ, ସୌନ୍ଦର୍ଯ୍ୟ ଇତ୍ୟାଦି ମୌଳିକ ପ୍ରତ୍ୟୟ ଗୁଡ଼ିକର ବ୍ୟାଖ୍ୟା କରାଗଲା । ଦର୍ଶନରେ ତର୍କଶୀଳତାର ପ୍ରାଧାନ୍ୟ ରହିଲା ଓ ଯେଉଁ ଯୁଗରେ ଯେଉଁ ପ୍ରକାରର ବୌଦ୍ଧିକ ଆଲୋଡ଼ନ ସୃଷ୍ଟି ହେଲା, ସେହି ମାନଦଣ୍ଡରେ ଜୀବନ ଓ ଜଗତକୁ ଅବବୋଧ କରାଗଲା । ତେବେ ଈଶ୍ୱର ଭାବନା ଧର୍ମ ଧାରାରେ ଓ ସାଧାରଣ ଜୀବନ ପ୍ରବାହରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ୟୟ ହୋଇଥିବାରୁ ଦର୍ଶନର ପରିସରରେ ଈଶ୍ୱରଙ୍କର ବିଭିନ୍ନ ବ୍ୟାଖ୍ୟା କରାଗଲା । ବିଶେଷ କରି ଜଗତ ଓ ଈଶ୍ୱରଙ୍କର ସଂପର୍କ କ'ଣ ହୋଇପାରେ ଏହି ପ୍ରସଙ୍ଗ ଉପରେ କେତେ କେତେ ତତ୍ତ୍ୱର ଉଦ୍‌ଭବ ହେଲା । କେତେକ ବିଶ୍ୱାସ କଲେ ଯେ ଈଶ୍ୱର ଜଗତର ସ୍ରଷ୍ଟା, କିନ୍ତୁ ଈଶ୍ୱର ଜଗତକୁ ଏପରି ଜ୍ଞାନରେ ସୃଷ୍ଟି କରିଛନ୍ତି ଯେ ଏହା ଅନନ୍ତ କାଳ ପାଇଁ ସୁବ୍ୟବସ୍ଥିତ ହୋଇଚାଲିବ । ସୁତରାଂ ଈଶ୍ୱର ହେଉଛନ୍ତି ଜଗତାତୀତ ଓ ସକଳ ଅନୁଭୂତିର ଊର୍ଦ୍ଧ୍ୱରେ । ଅନ୍ୟ ଏକ ମତରେ ଈଶ୍ୱର ହେଉଛନ୍ତି ଜଗତ ସହ ସର୍ବସମ, ଅର୍ଥାତ୍ ପ୍ରତ୍ୟେକ ବସ୍ତୁ ହିଁ ଈଶ୍ୱରଙ୍କର ପରିପ୍ରକାଶ । ଈଶ୍ୱର ପ୍ରାଣୀ, ଜୀବ, ବସ୍ତୁ ପ୍ରତ୍ୟେକଥିରେ ଅନ୍ତର୍ବର୍ତ୍ତୀ । ଅନ୍ୟ ଏକ ମତରେ ଈଶ୍ୱର ଉଭୟ ଅନ୍ତର୍ବର୍ତ୍ତୀ ଓ ବହିର୍ବର୍ତ୍ତୀ (immanent and transcendent) ବୋଲି କଳ୍ପନା କରାଯାଇଛି । ପୁନଶ୍ଚ କେତେକ ବିଶ୍ୱାସ ବ୍ୟକ୍ତ କଲେ ଯେ ଈଶ୍ୱର ଜଗତର ମାତ୍ର ନିମିତ୍ତ କାରଣ ଅର୍ଥାତ୍ ସେ ଅଣୁ ରୂପକ ଉପାଦାନରୁ ଜଗତର ସର୍ଜନା କରିଛନ୍ତି । କୁମ୍ଭାର ଯେପରି ମାଟିରୁ ଘଟ ପ୍ରସ୍ତୁତ କରେ ବା ସ୍ୱର୍ଣ୍ଣକାର ଯେପରି ସୁନାରୁ ହାର ନିର୍ମାଣ କରେ ଈଶ୍ୱର ସେହିପରି ଅଣୁରୁ ଜଗତକୁ ସର୍ଜନା କରିଛନ୍ତି । ସୁତରାଂ ଈଶ୍ୱର ଓ ଭୌତିକ ଅଣୁ ଉଭୟ ଶାଶ୍ୱତ ଓ ସହ-ସନାତନ । ଅନ୍ୟ ଏକ ସିଦ୍ଧାନ୍ତରେ ଈଶ୍ୱର ଶୂନ୍ୟରୁ ସବୁକିଛି କରିଛନ୍ତି ଓ ସେ ଯାହା ଚାହିଁଛନ୍ତି ତାହା ଶୂନ୍ୟରୁ ଆପେ ଆପେ ପ୍ରସ୍ତୁତ ହୋଇଯାଇଛି । ସୁତରାଂ ଈଶ୍ୱର ହିଁ ସନାତନ ଓ ଅନ୍ୟ ଯାହା ସବୁ ରହିଛି ସେ ସବୁ ଈଶ୍ୱର - ସୃଷ୍ଟ ହୋଇଥିବାରୁ ଅ-ସନାତନ । ପୁନଶ୍ଚ ଅନ୍ୟ କେତେକ ବିଚାର କଲେ ଯେ ଈଶ୍ୱର ହିଁ ହେଉଛନ୍ତି ଏକମାତ୍ର ସତ୍ତା, ଅନ୍ୟ ସବୁକିଛି - ଏପରିକି ପୃଥିବୀ-ମାୟା । କେବଳ ଅବିଦ୍ୟା ଯୋଗୁଁ ଆମେ ଈଶ୍ୱର ବା

ବ୍ରହ୍ମଙ୍କୁ ଜଗତ ବୋଲି ବିଚାର କରୁଛୁ । ସୁତରାଂ ଈଶ୍ୱର ଅନିର୍ବଚନୀୟ ଓ ତାଙ୍କର କୌଣସି ବର୍ଣ୍ଣନା କରାଯାଇ ପାରିବ ନାହିଁ । ଏହିପରି ନାନା ପ୍ରକାର ଦାର୍ଶନିକ ସିଦ୍ଧାନ୍ତମାନ ଈଶ୍ୱର ଓ ଜଗତର ସମ୍ବନ୍ଧ ନେଇ ବୌଦ୍ଧିକ ବିକାଶଧାରାରେ ଆସିଥିବା ଦେଖାଯାଏ । ମୋଟ ଉପରେ ଜଗତ ବା ପ୍ରାକୃତିକ ଘଟଣାବଳୀର କୌଣସି ବୈଜ୍ଞାନିକ ବ୍ୟାଖ୍ୟାର ବିକାଶ ପୂର୍ବରୁ ଈଶ୍ୱର ଓ ବିଶ୍ୱର ସମ୍ବନ୍ଧ ନେଇ ନାନା ବିଶ୍ୱାସ ଓ କାଳ୍ପନିକ ସିଦ୍ଧାନ୍ତ ଧର୍ମ, ଦର୍ଶନ କ୍ଷେତ୍ରରେ ସୃଷ୍ଟି ହୋଇଥିଲା ।

ପୁନଶ୍ଚ ଧାର୍ମିକ ବିଶ୍ୱାସ ସକଳର ପୃଷ୍ଠଭୂମିରେ ଦାର୍ଶନିକ ଅନୁଶୀଳନ ଦ୍ୱାରା ନାନା ଯୁକ୍ତିର ଅବତାରଣା କରାଗଲା । ବିଶେଷ କରି ମଧ୍ୟଯୁଗରେ କେତେକ ଦାର୍ଶନିକ ଈଶ୍ୱରଙ୍କର ଅସ୍ତିତ୍ୱକୁ ଯୁକ୍ତି ମାଧ୍ୟମରେ ପ୍ରତିଷ୍ଠା କରିବା ପାଇଁ ପ୍ରୟାସ କଲେ । ଏହି ପୃଷ୍ଠଭୂମିରେ ସେ ଯୁଗର ମାନସିକତାରେ ପ୍ରତ୍ୟୟ ସତ୍ତାବାଦ, କାର୍ଯ୍ୟକାରଣବାଦ ଓ ଉଦ୍ଦେଶ୍ୟବାଦ ଯୁକ୍ତିଗୁଡ଼ିକ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ନାନା ତର୍କର ଅବତାରଣା କଲେ । ପ୍ରତ୍ୟୟସତ୍ତାବାଦ ଯୁକ୍ତିରେ କୁହାଗଲା ଯେ ଈଶ୍ୱର-ଭାବନାରୁ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣିତ । ଈଶ୍ୱର ଭାବନା ହେଉଛି ଯାହା ସ୍ୱୟଂ ସଂପୂର୍ଣ୍ଣ । ଯଦି ଏକ ସ୍ୱୟଂସଂପୂର୍ଣ୍ଣ ସତ୍ତାର ସ୍ଥିତି ନାହିଁ ତେବେ ସେ କିପରି ସ୍ୱୟଂସଂପୂର୍ଣ୍ଣ ହେବେ ? ସୁତରାଂ ଈଶ୍ୱର ଭାବନାରୁ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣିତ । କାର୍ଯ୍ୟକାରଣବାଦ ଯୁକ୍ତିରେ ବିଚାର କରାଗଲା ଯେ ଜଗତରେ ପ୍ରତ୍ୟେକ କାର୍ଯ୍ୟ ବା ଘଟଣାର କାରଣ ରହିଛି । ଜଗତ ଯେହେତୁ ଏକ କାର୍ଯ୍ୟ ତାହାର ମଧ୍ୟ ଏକ କାରଣ ରହିଛି ଓ ସେହି ଆଦି କାରଣ ହେଉଛନ୍ତି ଈଶ୍ୱର । ଉଦ୍ଦେଶ୍ୟବାଦ ଯୁକ୍ତିରେ ଏହା କୁହାଗଲା ଯେ ବିଶ୍ୱ ପ୍ରକୃତିରେ ଆମେ ଶୃଙ୍ଖଳା, ଏକରୂପତା (uniformity) ଓ ଗୋଟିଏ ପ୍ରାକୃତିକ କ୍ରମ (order) ଅବଲୋକନ କରୁ । ତେବେ ଏହି କ୍ରମ ଓ ଶୃଙ୍ଖଳା ନିଶ୍ଚୟ କୌଣସି ଈଶ୍ୱରଙ୍କ ଦ୍ୱାରା ସଂସ୍ଥାପିତ ହୋଇଛି । ଏହିପରି ବିଚାରର କ୍ରମ ବିକାଶ ସହ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରାମାଣିକ ଭିତ୍ତି ଦେବାକୁ ଦର୍ଶନ ପରିସରରେ ଉଦ୍ୟମ ହେଲା । ଗୋଟିଏ ଯୁଗରେ ଏହି ଯୁକ୍ତି ଗୁଡ଼ିକ ବେଶ୍ ଆକର୍ଷଣୀୟ ମନେ ହେଉଥିଲା ଓ ଈଶ୍ୱରଙ୍କ ଅସ୍ତିତ୍ୱ ଯେ ଏକ ଯୁକ୍ତସିଦ୍ଧ ଓ ସ୍ୱତଃସିଦ୍ଧ ଭାବନା ଏହି ଧାରଣା ସୃଷ୍ଟି ହୋଇଥିଲା ।

ଦାର୍ଶନିକ ଚିନ୍ତନର କ୍ରମବିକାଶ ଧାରାରେ ଏହି ଯୁକ୍ତି ଗୁଡିକର ଗଭୀର ବିଶ୍ଳେଷଣ କରାଗଲା ଓ ଏହି ସବୁ ଯୁକ୍ତି ଗୁଡ଼ିକ କିପରି ଅବୈଧ ଓ ଦୋଷଯୁକ୍ତ ତାହା କାଳକ୍ରମେ ପ୍ରତିପାଦିତ ହେବାକୁ ଲାଗିଲା । ଗଭୀର ଦାର୍ଶନିକ ଜିଜ୍ଞାସା ଓ ତାର୍କିକ ଅନୁଶୀଳନ ମଧ୍ୟ ଦେଇ ଯୁକ୍ତି ଗୁଡ଼ିକର ଅସାରତା ଓ ଅବୈଧତା ଜଣାପଡ଼ିବା ପରେ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ଯୁକ୍ତିର ଆବଶ୍ୟକତା ନାହିଁ ବୋଲି ମତ ପ୍ରକାଶ ପାଇଲା । ଈଶ୍ୱର କେବଳ ଅନୁଭବର କଥା, ସେ ବ୍ୟକ୍ତିର ଅନ୍ତଃପ୍ରଜ୍ଞାରେ ଅନୁଭୂତ ହୁଅନ୍ତି, ସେ ଯୁକ୍ତିରେ ମିଳନ୍ତି ନାହିଁ ବୋଲି ଭାବନାର ପ୍ରସାର କରାଗଲା । ତେବେ କୌଣସି ବ୍ୟକ୍ତିନିଷ୍ଠ ଅନୁଭୂତି ଏକ ମନସ୍ତାତ୍ତ୍ୱିକ ପ୍ରକ୍ରିୟା । ବ୍ୟକ୍ତି ତାର ବୃହତ୍ତର ସାମାଜିକ ପରିବେଶରୁ ଯେଉଁ ସବୁ ବିଶ୍ୱାସ ଲାଭ କରିଥାଏ ଓ ତାର ମନ ଯେଉଁ ସବୁ ଭାବାବେଗ ଦ୍ୱାରା ସର୍ତ୍ତବଦ୍ଧ ହୋଇଥାଏ ତାହାର ଅନୁଭୂତି ସେହିଭଳି ରୂପ ନେଇଥାଏ । ସୁତରାଂ ବ୍ୟକ୍ତିନିଷ୍ଠ ଅନୁଭୂତିକୁ ଆଧାର କରି କୌଣସି ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିବା ସମ୍ଭବ ନୁହେଁ ବୋଲି ମତ ପ୍ରକାଶ ପାଇଲା । ବିଭିନ୍ନ ବ୍ୟକ୍ତିଙ୍କର ଅନୁଭୂତି ଭିନ୍ନ ଭିନ୍ନ ଓ ସ୍ଥଳ ବିଶେଷରେ ପରସ୍ପର ବିରୋଧୀ । ସୁତରାଂ ବ୍ୟକ୍ତିନିଷ୍ଠ ଓ ଆବେଗଜନିତ ଅନୁଭୂତି କୌଣସି ସତ୍ତା ବା ଅସ୍ତିତ୍ୱର ପ୍ରମାଣ ପାଇଁ ଭିତ୍ତି ହୋଇନପାରେ ବୋଲି ମନୋବିଜ୍ଞାନ କାଳକ୍ରମେ ପ୍ରତିଷ୍ଠା କଲା । ସେହିପରି ଆଧୁନିକ ବିଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ବିକାଶ ଧାରାରେ ପ୍ରକୃତିର ବହୁ ରହସ୍ୟ ଓ ଜୀବନର ଘନଘଟାକୁ ମଣିଷ

ଜାଣିବାରେ ସମର୍ଥ ହେଲା । ପରିଣାମତଃ ଈଶ୍ୱର ବିଶ୍ୱାସ ନେଇ ଯେଉଁ ସବୁ ଭାବନା, ଜୀବନ-ଦୃଷ୍ଟି ଓ ଜଗଦ୍‌ଦୃଷ୍ଟିର ବହୁ ପ୍ରଭାବ ଜନଜୀବନରେ ବିସ୍ତାର ଲାଭ କରିଥିଲା ସେ ନେଇ ବୌଦ୍ଧିକ ସ୍ତରରେ ସନ୍ଦେହର ଅବକାଶ ସୃଷ୍ଟି ହେଲା ।

ଶହ ଶହ ବର୍ଷ ଧରି ସାମାଜିକ ସଂଗଠନ, ସଂସ୍କୃତି ଓ ବିଚାରବୋଧ ସ୍ତରରେ ଧାର୍ମିକ ମାନସିକତା ପ୍ରଭାବ ବିସ୍ତାର କରି ରହିଥିବା ଯୋଗୁଁ ଓ ଧାର୍ମିକ ଭାବନାରେ ଈଶ୍ୱର ଏକ ଅପରିହାର୍ଯ୍ୟ ଭାବନା ହୋଇଥିବା ହେତୁ ନୈତିକତା ମଧ୍ୟ ଈଶ୍ୱର-କୈନ୍ଦ୍ରିକ ହୋଇ ରହିଥିଲା । ବିଭିନ୍ନ ସମାଜରେ ଏହି ଭାବନା ଦୃଢ଼ ଥିଲା ଯେ ଈଶ୍ୱର ହିଁ ନୈତିକ ମୂଲ୍ୟବୋଧର ସଂସ୍ଥାପକ । ଈଶ୍ୱର ବିଶ୍ୱାସରୁ ନୈତିକ ଜୀବନ ପାଇଁ ପ୍ରେରଣା ଆସିଥାଏ ଓ ଈଶ୍ୱର ବିଶ୍ୱାସ ବ୍ୟତୀତ ବ୍ୟକ୍ତିର ନୈତିକ ଚରିତ୍ର କଳ୍ପନା କରାଯାଇନପାରେ । ନୈତିକତା, ମୂଲ୍ୟବୋଧ ଓ ମାନବିକ ଆଦର୍ଶଚୟ ଈଶ୍ୱର-ସ୍ୱୀକୃତ ଓ ଈଶ୍ୱର-ଆଧାରିତ । ତେବେ ସମାଜରେ କେତେକ ନୈତିକ ଅସଂହତିର ଚିତ୍ରରୁ (ଯଥା କେତେକ ଭଲ ଓ ସାଧୁ ପ୍ରକୃତିର ଲୋକମାନେ ନାନା ଦୁଃଖ ଓ ଯନ୍ତ୍ରଣା ଜର୍ଜରିତ ଜୀବନ ବଞ୍ଚନ୍ତି ଅଥଚ ଅନ୍ୟାୟୀ, ଅସାଧୁ ଓ ଦୁଷ୍ଟ ଲୋକମାନେ ଆନନ୍ଦ ଓ ପ୍ରାଚୁର୍ଯ୍ୟ ଭିତରେ ଜୀବନକୁ ଉପଭୋଗ କରନ୍ତି) ମଣିଷ ଈଶ୍ୱରୀୟ ବ୍ୟବସ୍ଥା ଭିତରେ ଏହାର ନାନା ଚମତ୍କାର ବ୍ୟାଖ୍ୟା କଲା । ସେ କଳ୍ପନା କଲା ଯେ ଏବେ ଯେଉଁମାନେ ଦୁଃଖ କଷ୍ଟରେ କାଳାତିପାତ କରୁଛନ୍ତି ତାହା ସେମାନଙ୍କ ପୂର୍ବଜନ୍ମର ଅର୍ଜିତ ପାପ କର୍ମର ପରିଣାମ ଓ ସେହିପରି ଯେଉଁମାନେ ଭଲ କାର୍ଯ୍ୟ କରି ମଧ୍ୟ ଦୁଃଖ କଷ୍ଟ ରୋଗ ଭୋଗ କରୁଛନ୍ତି ସେମାନେ ପରବର୍ତ୍ତୀ ଜୀବନରେ ନିଶ୍ଚୟ ସୁଫଳ ଲାଭ କରିବେ । ଆତ୍ମାର ଅମରତ୍ୱ, ଜନ୍ମାନ୍ତରବାଦ, କର୍ମବାଦ ଇତ୍ୟାଦି ଧାରଣାକୁ କେତେ କେତେ କାଳ୍ପନିକ ପୁଟ ଓ ଯୌକ୍ତିକ ଆଧାର ଦେଇ ସମାଜର ନୈତିକ ଅସଂହତିକୁ ବ୍ୟାଖ୍ୟା କରାଗଲା । ତେବେ ଯେଉଁ ଧର୍ମମାନଙ୍କରେ ଜନ୍ମାନ୍ତରବାଦ ଅର୍ଥାତ୍ ପୂର୍ବ ଜନ୍ମ ପରଜନ୍ମ ଇତ୍ୟାଦିର ଭାବନା ନାହିଁ ସେମାନେ ସ୍ୱର୍ଗ, ନରକ, ବିଚାର ଦିବସ ପରି ସୁନ୍ଦର କାହାଣୀମାନ ସୃଷ୍ଟି କଲେ । କେତେକ ଧର୍ମଧାରାରେ ବିଶ୍ୱାସ କରାଗଲା ଯେ ପ୍ରତ୍ୟେକ ବ୍ୟକ୍ତିର ମୃତ୍ୟୁ ପରେ ତାର ଏକ ଆତ୍ମା ଏକ ଭିନ୍ନ ଜଗତରେ ଅବସ୍ଥାନ କରିବ, ସୃଷ୍ଟିର ଅନ୍ତିମ ଦିବସରେ ଈଶ୍ୱର ସବୁ ବ୍ୟକ୍ତିଙ୍କର କର୍ମର ମୂଲ୍ୟାୟନ କରିବେ । ଯେ ଭଲ କାର୍ଯ୍ୟ କରିଛନ୍ତି ତାହାଙ୍କୁ ଚିରଦିନ ପାଇଁ ସ୍ୱର୍ଗକୁ ଓ ଯେ ମନ୍ଦ କାର୍ଯ୍ୟ କରିଛନ୍ତି ତାହାଙ୍କ ଆତ୍ମାକୁ ଚିରଦିନ ପାଇଁ ନରକକୁ ପଠାଇବେ । ଏହା ଫଳରେ ଈଶ୍ୱରଙ୍କ ଦ୍ୱାରା ଧର୍ମ ସଂସ୍ଥାପନ ହୋଇପାରିବ । ପୁନଶ୍ଚ ପ୍ରକୃତିରେ ସୃଷ୍ଟି ହେଉଥିବା ପ୍ରାକୃତିକ ବିପର୍ଯ୍ୟୟ ଯଥା ବନ୍ୟା, ବାତ୍ୟା, ଭୂକମ୍ପ ବା କୌଣସି ମହାମାରୀ (ହଇଜା, ବସନ୍ତ, ପ୍ଲେଗ ଇତ୍ୟାଦି ମହାମାରୀରେ ଅତୀତରେ ଅଗଣିତ ଲୋକ ମୃତ୍ୟୁ ମୁଖରେ ପଡୁଥିଲେ) ଇତ୍ୟାଦିକୁ ମଣିଷର କୃତପାପର ଦୈବୀଦଣ୍ଡ ବୋଲି ଧାରଣା ବିଭିନ୍ନ ସମାଜରେ ନାନା ଭାବରେ ବଳବତ୍ତର ରହିଥିଲା । ପୁନଶ୍ଚ ଧର୍ମମାନଙ୍କରେ ଏହା ମଧ୍ୟ ବିଶ୍ୱାସ କରାଗଲା ଯେ ମଣିଷର ଜୀବନ ସ୍ୱରୂପରେ ଦୁଃଖପୂର୍ଣ୍ଣ, ଦୁଃଖ ହିଁ ଜୀବନର ଅବଶ୍ୟମ୍ଭାବୀ ପରିଣାମ ଓ ଦୁଃଖରୁ ତ୍ରାଣ କେବଳ ମୁକ୍ତି, ମୋକ୍ଷ ବା ନିର୍ବାଣ ଦ୍ୱାରା ସମ୍ଭବ । ଇହ ଜୀବନ ଅପେକ୍ଷା ଏକ ଭିନ୍ନ ଜୀବନ ଓ ଜଗତର କେତେ କେତେ ଚମତ୍କାର କଳ୍ପନା ମଣିଷକୁ ମାନସିକ ସ୍ତରରେ ସୁନ୍ଦର ସ୍ୱପ୍ନ ଯୋଗାଇଥିଲା । ଆତ୍ମାର ସଦ୍‌ଗତି ପାଇଁ ଧର୍ମଗୋଷ୍ଠୀ ଭିତରେ ନାନା ଔପଚାରିକ କର୍ମକାଣ୍ଡମାନ ପୂଜକଗୋଷ୍ଠୀଙ୍କର ନିର୍ଦ୍ଦେଶରେ ମୃତ ବ୍ୟକ୍ତିଙ୍କ ପରିବାରରେ ସଂପୃକ୍ତ କରାଗଲା ।

ତେବେ ନୈତିକତା ଓ ଈଶ୍ୱର ପ୍ରତୀତି ଭିତରେ ସମ୍ବନ୍ଧ ନେଇ ଦର୍ଶନ ସ୍ତରରେ ବହୁ ଗମ୍ଭୀର ଚର୍ଚ୍ଚା ଦେଖିବାକୁ ମିଳେ । ଈଶ୍ୱର ବିଶ୍ୱାସରୁ ବ୍ୟକ୍ତି ନୈତିକ ଜୀବନ ପାଇଁ ଅଭିନିବେଶ ଲାଭ କରିବା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହେଲେ ବି

ଏହା କେବଳ ଏକ ମନସ୍ତାତ୍ତ୍ୱିକ ଆବେଗ କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ ନୈତିକ ଜୀବନ ପାଇଁ ବ୍ୟକ୍ତି ବହୁ କ୍ଷେତ୍ରରୁ ପ୍ରେରଣା ପାଇପାରେ ଓ ନୈତିକ ପ୍ରେରଣାର ବହୁ ଉତ୍ସ ରହିପାରେ । ତେବେ ନୈତିକ ମୂଲ୍ୟଚୟ କୌଣସି ଈଶ୍ୱର (ଯଦିବି ଈଶ୍ୱରଙ୍କୁ ବିଶ୍ୱାସ କରାଯାଏ) ସମାଜ ବା ବ୍ୟକ୍ତିଙ୍କୁ ଦେଇ ନାହାଁନ୍ତି, ବରଂ ସାମାଜିକ କ୍ରମବିକାଶ ଧାରାରେ ଏକ ସୁଖପ୍ରଦ ଓ ଉନ୍ନତ ଜୀବନ ପାଇଁ ସେଗୁଡ଼ିକର ବିକାଶ ହୋଇଛି । ପୁନଶ୍ଚ ନୈତିକତା, ଶିଷ୍ଟାଚାର, ସୌଜନ୍ୟ ଇତ୍ୟାଦି ବିଭିନ୍ନ ସମୟରେ ବଦଳିଛି ଓ ସେଗୁଡ଼ିକ ବିଭିନ୍ନ ସଂସ୍କୃତିରେ ମଧ୍ୟ ଭିନ୍ନ ଭିନ୍ନ । ସୁତରାଂ ସେଗୁଡ଼ିକର କୌଣସି ଈଶ୍ୱରୀୟ ଭିତ୍ତି ନାହିଁ । ଜୀବନର ଅନୁଭୂତି, ଅନୁଭବ ଓ ବିଚାର ମଧ୍ୟ ଦେଇ ଭଲ-ମନ୍ଦ, ଉଚିତ-ଅନୁଚିତ, ନ୍ୟାୟ-ଅନ୍ୟାୟ, ମାନବିକ-ଅମାନବିକ ଭାବନାର ଅଭ୍ୟୁଦୟ ହୋଇଛି । ସାଧୁତା, ସତ୍ୟବାଦିତା, ଭାତୃତ୍ୱ, ଅହିଂସା, ପରୋପକାର, ମାନବିକ ମର୍ଯ୍ୟାଦା ଇତ୍ୟାଦି ମୂଲ୍ୟଚୟ ଗୁଡିକ କୌଣସି ଈଶ୍ୱରୀୟ ନିର୍ଦ୍ଦେଶ ବୋଲି ଆମେ ସେଗୁଡ଼ିକୁ ଆଦର୍ଶ ଭାବେ ନେଉ ନାହୁଁ, ବରଂ ସେସବୁ ଏକ ସଭ୍ୟ ଓ ଗୁଣାତ୍ମକ ଜୀବନର ଆଧାର ବୋଲି ସେସବୁକୁ ଗୁରୁତ୍ୱ ଦେଉ । ସମାଜରେ ଶାନ୍ତିପୂର୍ଣ୍ଣ ଓ ଅର୍ଥପୂର୍ଣ୍ଣ ଜୀବନଧାରଣ ପାଇଁ ସେଗୁଡ଼ିକ ଅପରିହାର୍ଯ୍ୟ ବୋଲି ବିଚାରରୁ ସେଗୁଡ଼ିକୁ ସାମାଜିକ ସ୍ୱୀକୃତି ଦିଆଯାଏ । ତେବେ ନୈତିକ ଆଦର୍ଶ ସକଳକୁ ଈଶ୍ୱର ବିଶ୍ୱାସ ଓ ଅବିଶ୍ୱାସ ନିର୍ବିଶେଷରେ ଗ୍ରହଣ କରାଯାଏ । ଧର୍ମ ନିରପେକ୍ଷ ମାନବବାଦୀଗଣ ଏହି ମୂଲ୍ୟଚୟକୁ ଯେପରି ଗୁରୁତ୍ୱ ଦିଅନ୍ତି ହୁଏତ କେତେକ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ମଧ୍ୟ ଏସବୁକୁ ସେପରି ମୂଲ୍ୟ ଦିଅନ୍ତି । ତେବେ ଈଶ୍ୱରଙ୍କୁ ବିଶ୍ୱାସ କରି ଅନୈତିକ ହେବା ଓ ଈଶ୍ୱର ବିଶ୍ୱାସ ପ୍ରତି ସଂପୂର୍ଣ୍ଣ ଉଦାସୀନ ରହି ଅତ୍ୟନ୍ତ ନୀତିବାଦୀ ହେବାର ଦୃଷ୍ଟାନ୍ତ ପୃଷ୍ଠଭୂମିରେ ଈଶ୍ୱର ଓ ନୈତିକତା ଯେ ସଂପୂର୍ଣ୍ଣ ପୃଥକ୍ ଭାବନା ଏହା ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଏକ ପ୍ରତିପାଦ୍ୟ ସିଦ୍ଧାନ୍ତ ଅଟେ ।

ସାମାଜିକ ବିକାଶ ପ୍ରକ୍ରିୟାରେ ଧାର୍ମିକ ବ୍ୟବସ୍ଥା ଜନିତ ଈଶ୍ୱରୀୟ ମାନସିକତାରୁ ମୁକ୍ତ ହେବା ଦ୍ୱାରା ରାଜନୈତିକ ସ୍ତରରେ କିପରି ଏକ ଗଣତାନ୍ତ୍ରିକ ଚେତନାର ବିକାଶ ହୋଇଛି ତାହା ମଧ୍ୟ ଏକ ସାଂସ୍କୃତିକ ଉତ୍ତରଣର ଚିତ୍ର ଦେଇଥାଏ । ସମାଜରେ ଈଶ୍ୱର ଭାବନା ଜନିତ ଧର୍ମତନ୍ତ୍ରୀୟ ବ୍ୟବସ୍ଥା ରହିଥିବା ବେଳେ ରାଜତନ୍ତ୍ର ଓ ସାମନ୍ତବାଦର ଯୁଗ ରହିଥିଲା । ରାଜତନ୍ତ୍ରରେ ରାଜା ହିଁ ଥିଲେ ଈଶ୍ୱରଙ୍କ ପ୍ରତିନିଧି ଓ ତାଙ୍କ ବିରୁଦ୍ଧରେ ଅଙ୍ଗୁଳି ନିର୍ଦ୍ଦେଶ ଈଶ୍ୱରୀୟ ନିୟମର ଅବମାନନା ବୋଲି ଗ୍ରହଣ କରାଯାଉଥିଲା । ସେହି ଯୁଗରେ ସମସ୍ତ ଗଣତନ୍ତ୍ରପ୍ରେମୀ ଓ ବ୍ୟକ୍ତିମର୍ଯ୍ୟାଦାର ବାର୍ତ୍ତା ଦେଉଥିବା ବ୍ୟକ୍ତିମାନଙ୍କୁ ନାନା ନିର୍ଯାତନା ସହିବାକୁ ପଡ଼ିଛି । ଯେଉଁଠି ଏବେ ବି ଧର୍ମତନ୍ତ୍ର ଜନିତ ଶାସନ ବ୍ୟବସ୍ଥା ରହିଛି ବା ଧାର୍ମିକ ମାନସିକତାର ପ୍ରାବଲ୍ୟ ରହିଛି ସେଠାରେ ମାନବିକ ମର୍ଯ୍ୟାଦା ଓ ନାଗରିକ ଅଧିକାର ନିମ୍ନ ସ୍ତରର ହୋଇରହିଛି । ଅର୍ଥାତ୍ ଗଣତାନ୍ତ୍ରିକ ଚେତନାର ବିକାଶ ଦ୍ୱାରା ନାଗରିକ ଅଧିକାର, ମୁକ୍ତ ଚିନ୍ତାର ପରିବେଶ ଓ ମତବ୍ୟକ୍ତ କରିବାର ଅଧିକାର ଭଳି ଉନ୍ନତ ମୂଲ୍ୟଚୟର ବିକାଶ ହୋଇଛି । ଗଣତନ୍ତ୍ର କେବଳ ଏକ ଶାସନତାନ୍ତ୍ରିକ ବ୍ୟବସ୍ଥା ନହୋଇ ଯେଉଁଠି ଏକ ଜୀବନ ଧାରାରେ ରୂପାନ୍ତରିତ ହୋଇଛି, ସେଠାରେ ମାନବିକ ମୂଲ୍ୟଚୟ ସୁଦୃଢ଼ ଭିତ୍ତି ନେଇପାରିଛି ।

ଏହି ସବୁ ବୌଦ୍ଧିକ, ନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ପୃଷ୍ଠଭୂମିରେ ନିରୀଶ୍ୱରବାଦ ଏକ ବିପ୍ଳବ ଭାବେ ଚିନ୍ତା ସ୍ତରକୁ ଆସିଲା । ଈଶ୍ୱରବାଦ ସପକ୍ଷରେ ପ୍ରଦତ୍ତ ଯୁକ୍ତି ଗୁଡ଼ିକର ଅବୈଧତା ଓ ଅସାରତା କାଳକ୍ରମେ ଦୃଢ଼ୀଭୂତ ହେଲା ।

ଧର୍ମତନ୍ତ୍ରୀୟ ବ୍ୟବସ୍ଥା ଏବଂ ତଜ୍ଜନିତ ଈଶ୍ୱରବାଦୀ ମାନସିକତାର କୁପ୍ରଭାବ ନେଇ ଯେଉଁ ସାମାଜିକ ଚେତନାର ବିକାଶ ହେଲା ତାର ପରିଣାମ ସ୍ୱରୂପ ନିରୀଶ୍ୱରବାଦ ଚିନ୍ତା ଜଗତରେ ଦୃଢ଼ ଭିତ୍ତିନେବାକୁ ଲାଗିଲା ।

ତେବେ ଅତୀତରେ ସ୍ୱାଧୀନ ଚିନ୍ତାନାୟକ, ବୁଦ୍ଧିଜୀବୀ ଓ ପ୍ରଗତିଶୀଳ ବିଚାରକମାନଙ୍କୁ ଯେଉଁପରି ନିରୀଶ୍ୱରବାଦୀ କହି ଅସମ୍ମାନିତ କରାଯାଉଥିଲା ସଂପ୍ରତି ସେହି ସ୍ଥିତିରେ ଅନେକ ପରିବର୍ତ୍ତନ ହୋଇଥିଲେ ମଧ୍ୟ ନିରୀଶ୍ୱରବାଦ ଏବେ ବି ଏକ ବିଚାରଶୀଳ ଭାବଧାରା ଭାବେ ସାଧାରଣରେ ଗୃହୀତ ହୋଇନାହିଁ । ବିଶେଷ କରି ଧାର୍ମିକ ମାନସିକତାର ପ୍ରାବଲ୍ୟ ଥିବା ସମାଜ ମାନଙ୍କରେ ହେତୁବାଦୀ ଓ ନିରୀଶ୍ୱରବାଦୀମାନଙ୍କୁ ଧର୍ମର ତଥାକଥିତ ପ୍ରବକ୍ତାମାନେ ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି । ଜଣେ ନିରୀଶ୍ୱରବାଦୀର ଜୀବନଦର୍ଶନ ନକାରାତ୍ମକ, ନିରୀଶ୍ୱରବାଦୀମାନେ ନୈରାଶ୍ୟବାଦୀ, ସାମାଜିକ ସ୍ତରରେ ବୃଦ୍ଧି ପାଉଥିବା ଅପରାଧମୂଳକ ଘଟଣା ନିରୀଶ୍ୱରବାଦ ବିକାଶର କାରଣ ଇତ୍ୟାଦି ନାନା ଅଭିଯୋଗ ଏବେ ବି ରକ୍ଷଣଶୀଳ ଓ ରୂଢ଼ିବାଦୀ ବ୍ୟକ୍ତିମାନେ କରିଥାନ୍ତି । ରକ୍ଷଣଶୀଳ ବ୍ୟକ୍ତିମାନେ ବା ଧାର୍ମିକ କଟ୍ଟରପନ୍ଥୀମାନେ ଗୋଟିଏ ସ୍ତରରେ ପରାଭବ ଅନୁଭବ କଲେ ଅନ୍ୟ ସ୍ତରକୁ ତାଙ୍କର ଯୁକ୍ତିକୁ ବଦଳାଇବା ଏକ ସାଧାରଣ ଘଟଣା ଅଟେ । "ସବୁକିଛି ଈଶ୍ୱରକୃତ ବା ଈଶ୍ୱରୀୟ ବ୍ୟବସ୍ଥାର ପରିଣାମ, ଜୀବନର ଘଟଣା ପ୍ରବାହ ପୂର୍ବ ନିର୍ଦ୍ଦିଷ୍ଟ, ଈଶ୍ୱର ବିଶ୍ୱାସ ଦ୍ୱାରା ହିଁ ବ୍ୟକ୍ତି ସବୁ ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିପାରିବ, ଈଶ୍ୱର ବିଶ୍ୱାସରେ ମିଳିବେ ତର୍କରେ ନୁହେଁ"- ବିଶ୍ୱାସ ଗୁଡ଼ିକ ସମାଜରେ କାଳକ୍ରମେ ପରାଭବ ପାଇବା ପରେ ବା ମଣିଷର ଜ୍ଞାନ ଓ ଅନୁଭୂତି ଦ୍ୱାରା ମିଥ୍ୟା ପ୍ରମାଣିତ ହେବା ପରେ ନିରୀଶ୍ୱରବାଦ ବିରୁଦ୍ଧରେ ନୂତନ ଅଭିଯୋଗର ସ୍ୱର ମଧ୍ୟ ଉଠାଯାଏ । ସାମାଜରେ ବିଶୃଙ୍ଖଳିତ ସ୍ଥିତି ବା ଅପରାଧ ପ୍ରବଣତା ଏକ ଗମ୍ଭୀର ପ୍ରଶ୍ନ । ଏକ ଆଧୁନିକ ସମାଜରେ ସାମାଜିକ ସମ୍ବନ୍ଧ ନାନା ଜଟିଳ ସ୍ଥିତିର ସମ୍ମୁଖୀନ ହେବାରେ ଲାଗିଛି । ଆର୍ଥିକ ବୈଷମ୍ୟ, ଦାରିଦ୍ର୍ୟ, ଭୟଙ୍କର ପ୍ରତିଯୋଗିତା, ଏକାକୀତ୍ୱବୋଧ, ପରିବର୍ତ୍ତିତ ବ୍ୟସ୍ତବହୁଳ ଜୀବନଶୈଳୀ, ବିଳାସପୂର୍ଣ୍ଣ ଜୀବନ ପାଇଁ ଅହେତୁକ ଆଗ୍ରହ ଇତ୍ୟାଦି ନାନା କାରଣରୁ ସମାଜରେ ଅପରାଧ ପ୍ରବଣତା ବୃଦ୍ଧି ପାଉଛି । ସୁତରାଂ ନିରୀଶ୍ୱରବାଦୀ ଜୀବନ ଧାରାର ପରିଣାମରୁ ଯେ ସାମାଜିକ ବିଶୃଙ୍ଖଳା ଉଦ୍ଭବ ହେଉଛି ତାହା ଯଥାର୍ଥ ମନେ ହୁଏ ନାହିଁ । ବରଂ ସାଂପ୍ରତିକ ଦୃଶ୍ୟପଟରେ ଯେଉଁ ସନ୍ତ୍ରାସବାଦ ଓ ସାଂପ୍ରଦାୟିକତାବାଦର ବିକାଶ ହୋଇଛି ତାହାର ମୂଳ ପ୍ରେରଣା ଧାର୍ମିକ ମାନସିକତାରୁ ହିଁ ସୃଷ୍ଟି ହୋଇ ପଲ୍ଲବିତ ହୋଇଛି । ଧାର୍ମିକ ଉଗ୍ରବାଦ ଓ ମତାନ୍ଧତା ପାଇଁ ସମାଜ ବିଭାଜିତ ହେବାରେ ଲାଗିଛି, ସକଳ ମାନବିକ ସମ୍ବେଦନଶୀଳତାର କ୍ଷୟ ହେଉଛି ଓ ଅସହିଷ୍ଣୁତାର ବାତାବରଣ ସୃଷ୍ଟି ହେଉଛି । ଧାର୍ମିକ ଉଗ୍ରବାଦ ଓ ସାଂପ୍ରଦାୟିକ ମାନସିକତା କିପରି ଅମାନବିକ ପଶୁତ୍ୱରେ ରୂପାନ୍ତରିତ ହେଉଛି ତାର ବହୁ ବାସ୍ତବ ପ୍ରତିଫଳନ ସାଂପ୍ରତିକ ସମାଜରେ ଦେଖିବାକୁ ମିଳୁଛି । ଧର୍ମ ପରିବର୍ତ୍ତେ ଧର୍ମନିରପେକ୍ଷତା ଯେ ସଭ୍ୟ ଜୀବନର ମାନଦଣ୍ଡ ଏହା ହିଁ ସଭ୍ୟତାର ମୂଲ୍ୟବୋଧ ଭାବେ ଅନ୍ତତଃ ଚିନ୍ତାସ୍ତରରେ ସ୍ୱୀକୃତ ହେବାରେ ଲାଗିଛି । ଧର୍ମ ନିରପେକ୍ଷ ମାନବବାଦୀମାନେ ଯେଉଁମାନେ ପ୍ରାୟତଃ ନିରୀଶ୍ୱରବାଦୀ ବା ଅଜ୍ଞେୟତାବାଦୀ (agnostic) ସେମାନେ ହିଁ ସଭ୍ୟତାର ପଥପ୍ରଦର୍ଶକ ଓ ଗୁଣାତ୍ମକ ଜୀବନ ଦର୍ଶନର ପ୍ରବକ୍ତା । ବୁଦ୍ଧ, କନ୍‌ଫୁସିଅସ୍, କାର୍ଲମାର୍କସ୍, ସିଗମଣ୍ଡ ଫ୍ରଏଡ଼, ବର୍ଟ୍ରାଣ୍ଡ ରସେଲ ଇତ୍ୟାଦି ଚିନ୍ତାନାୟକମାନଙ୍କର ସଭ୍ୟତା ପ୍ରତି ଅବଦାନ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଈଶ୍ୱର-କୈନ୍ଦ୍ରିକ ଜଗଦ୍‌ଦୃଷ୍ଟି ସାଂପ୍ରତିକ ବୌଦ୍ଧିକ ମାନଦଣ୍ଡରେ ଅପାଂକ୍ତେୟ । ଜଗତ୍‌ର ବ୍ୟାଖ୍ୟା କ୍ଷେତ୍ରରେ ଧାର୍ମିକ ବ୍ୟାଖ୍ୟା ଓ ସୃଷ୍ଟି ତତ୍ତ୍ୱ ଗୁଡ଼ିକ କେବଳ ପ୍ରାଚୀନ ଲୋକମାନଙ୍କର 'ଆଈ ମା କାହାଣୀ' ଜନିତ ବିଶ୍ୱାସ । ବୈଜ୍ଞାନିକ ଅନୁଶୀଳନ ଓ ଦାର୍ଶନିକ ଜିଜ୍ଞାସା ଜଗତ ସଂପର୍କରେ ଯେଉଁ ବସ୍ତୁନିଷ୍ଠ ଓ ବୌଦ୍ଧିକ ଚିତ୍ର ପ୍ରଦାନ କରୁଛି ତାହା ସହିତ ଈଶ୍ୱରୀୟ ଭାବନାର କୌଣସି ସମ୍ବନ୍ଧ ହିଁ ନାହିଁ । ବିଜ୍ଞାନ କ୍ଷେତ୍ରରେ ପ୍ରକୃତିବାଦ, ଦ୍ରବ୍ୟ-ଶକ୍ତି-ସଂରକ୍ଷଣ-ନିୟମ ଜନିତ ଭୌତିକବାଦ ପରି ସିଦ୍ଧାନ୍ତମାନ ସକଳ ପ୍ରାକୃତିକ ଘଟଣା, ବସ୍ତୁ ଓ ଜୀବନର ଉତ୍ପତ୍ତି ନେଇ ଏକ ବସ୍ତୁନିଷ୍ଠ ଓ ତଥ୍ୟାଧାରିତ ପ୍ରକଳ୍ପ ଦେଇପାରୁଛନ୍ତି । ଜଗତରେ ଅନେକ ରହସ୍ୟ ରହିଥିଲେ ବି ମଣିଷ ତାର ଅନୁସନ୍ଧିତ୍ସା ଓ ବୈଜ୍ଞାନିକ ପ୍ରଣାଳୀ ଜନିତ ସୁବ୍ୟବସ୍ଥିତ ପଦ୍ଧତି ପ୍ରୟୋଗ ଦ୍ୱାରା ବହୁ ଘଟଣାକୁ ବ୍ୟାଖ୍ୟା କରିପାରୁଛି । ପ୍ରକୃତିର ବିଶାଳତା ଓ ଜଟିଳତା ସତ୍ତ୍ୱେ ପ୍ରକୃତି ମଣିଷ ପ୍ରଜ୍ଞାର ବହିର୍ଭୂତ ହୋଇ ରହିନାହିଁ । ବୈଜ୍ଞାନିକ ଚିନ୍ତନର ବିକାଶ ସହିତ ଦର୍ଶନ ସମତାଳ ରକ୍ଷା କରି ଏହା ପ୍ରତ୍ୟୟ ଅନୁଶୀଳନ ଜନିତ ତାର୍କିକ ନିୟମ ଓ ବୌଦ୍ଧିକ ସ୍ପଷ୍ଟତାକୁ ଗୁରୁତ୍ୱ ଦେବାରେ ଲାଗିଛି । ଜଗତ ସଂପର୍କରେ କାଳ୍ପନିକ ତାତ୍ତ୍ୱିକ ସିଦ୍ଧାନ୍ତ ବା ଈଶ୍ୱରୀୟ ବିଶ୍ୱାସ ସୃଷ୍ଟି କରିବା ଆଭିମୁଖ୍ୟରୁ ଦର୍ଶନ ଅପସରି ଯିବାକୁ ଲାଗିଛି । ସେହିପରି ଜୀବନର ଘନଘଟା, ଦୁଃଖ ଓ ମନ୍ଦକୁ ଦୈବୀ ଅଭିଶାପ ବୋଲି ମଣିଷ ଗ୍ରହଣ କରୁନାହିଁ ବରଂ ନିଜର ଜ୍ଞାନ, ଅନ୍ୱେଷଣ ଓ ଅନୁସନ୍ଧିତ୍ସା ଆଧାରରେ ପ୍ରତିକୂଳ ସ୍ଥିତିକୁ ଦୂର କରିବାକୁ ପ୍ରୟାସ କରୁଛି । ତା'ର ପରିଣାମ ସ୍ୱରୂପ ବହୁ ଦୁରାରୋଗ୍ୟ ବ୍ୟାଧିର ଚିକିତ୍ସା ବାହାର କରିପାରିଛି । ଅନେକ ପ୍ରାକୃତିକ ବିପଦରୁ ନିଜକୁ ରକ୍ଷା କରି ପାରୁଛି ଓ ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତି ସମଗ୍ର ବିଶ୍ୱକୁ ଏକ କ୍ଷୁଦ୍ର ଗ୍ରାମରେ ପରିବର୍ତ୍ତନ କରିବାରେ ଲାଗିଛି ।

ଆସ୍ତିକତାବାଦୀ ମାନସିକତାର ଏକ ବଦ୍ଧମୂଳ ଧାରଣା ରହିଛି ଯେ ଜୀବନର ଗୁଣାତ୍ମକ ମାନ ଈଶ୍ୱର ବିଶ୍ୱାସ ଦ୍ୱାରା ପ୍ରଭାବିତ ଓ ଈଶ୍ୱର ଅବିଶ୍ୱାସ ଦ୍ୱାରା ଏକ ମହତ୍ତର ଜୀବନ ସମ୍ଭବ ନୁହେଁ । ଶହ ଶହ ବର୍ଷ ଧରି ଧର୍ମକୈନ୍ଦ୍ରିକ ସାଂସ୍କୃତିକ ପରିବେଶରୁ ଏହି ପ୍ରକାର ଏକ ମନସ୍ତତ୍ତ୍ୱ ସୃଷ୍ଟି ହୋଇଛି । ଏହା ସହିତ ସମାଜର ପ୍ରଭାବଶାଳୀ ଓ ପ୍ରତିଭାବାନ ବ୍ୟକ୍ତି ବିଶେଷଙ୍କର ବିଶ୍ୱାସ ଓ ଜୀବନଶୈଳୀ ମଧ୍ୟ ଦୃଷ୍ଟାନ୍ତମୂଳକ ହୋଇଯାଉଛି । ତେବେ ଜୀବନର ଗୁଣାତ୍ମକ ମାନ କେତେକ ବ୍ୟକ୍ତିଗତ ବିଶ୍ୱାସ ଦ୍ୱାରା ନିୟନ୍ତ୍ରିତ ହୁଏନାହିଁ । ବରଂ ଏକ ବୃହତ୍ତର ସମାଜ ପ୍ରତି ବ୍ୟକ୍ତିର କର୍ତ୍ତବ୍ୟ ଓ ଉତ୍ତରଦାୟିତ୍ୱବୋଧ, ସମ୍ବେଦନଶୀଳତା, ସତ୍ୟ-ନ୍ୟାୟ-ନୈତିକତା ପ୍ରତି ଅଙ୍ଗୀକାରବଦ୍ଧତା ଓ ବିଚାରଶୀଳ ଦୃଷ୍ଟିଭଙ୍ଗୀ ଆଧାରରେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇଥାଏ । ଏସବୁ ସହିତ ବ୍ୟକ୍ତିର ଧର୍ମ ବା ଈଶ୍ୱର ବିଶ୍ୱାସର ସମ୍ବନ୍ଧ ହିଁ ନାହିଁ । ତେବେ ଧର୍ମ ବା ଈଶ୍ୱର ବିଶ୍ୱାସରୁ ଏହି ପ୍ରେରଣା ମିଳୁ ବା ଅନ୍ୟ ସ୍ତରରୁ ଏହି ଅଭିନିବେଶ ମିଳୁ ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ, ବରଂ ଗୁରୁତ୍ୱପୂର୍ଣ୍ଣ ହେଉଛି ବ୍ୟକ୍ତିର ସାମାଜିକ ସମ୍ବନ୍ଧ, ଆଚରଣ ଓ ଦାୟିତ୍ୱବୋଧ । ଯେଉଁଠି ଧର୍ମ ବ୍ୟକ୍ତିକୁ ମହତ୍ତର ଜୀବନ ପାଇଁ ପ୍ରେରଣା ଦିଏ ସେଠାରେ ଧର୍ମ ମାନବିକତାରେ ରୂପାନ୍ତରିତ ହୁଏ । ଅଥଚ ଯେଉଁଠି ଧର୍ମ ଏକ ରୁଦ୍ଧ ମାନସିକତା ଓ ମୌଳବାଦର ଭାବନା ଆଣେ ସେଠାରେ ତାହା ସାଂପ୍ରଦାୟିକ ବିଦ୍ୱେଷର ରୂପ ନିଏ । ବିଡ଼ମ୍ବନାର ବିଷୟ ଆମ ସଂସାରରେ ଅତୀତରେ ଓ କେତେକ ସମାଜରେ ଏବେ ମଧ୍ୟ ଧର୍ମ ଶେଷୋକ୍ତ ଦିଗ ସହ ଅଧିକ ଜଡ଼ିତ ହୋଇରହିଛି ।

ଉପସଂହାରରେ ଏହା କହିବା ଉଚିତ୍ ମନେ କରୁଛି ଯେ ଆସ୍ତିକତାବାଦୀ ଦର୍ଶନର ଅହେତୁକତା ଓ ସେହି ସାଂସ୍କୃତିକ ଜୀବନଧାରାର ନାନା ଅନିଷ୍ଟକର ପରିଣାମରୁ ନିରୀଶ୍ୱରବାଦୀ ଦର୍ଶନ ଓ ଜୀବନଧାରାର ଅଭ୍ୟୁଦୟ ହୋଇଛି ।

ନିରୀଶ୍ୱରବାଦୀ ମାନସିକତାର ଆଧାର ହେଉଛି ମୁକ୍ତମନ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଓ ହେତୁବାଦ ଜନିତ ବିଚାରଶୀଳତା । ପରିଣାମତଃ ଏହା ହିଁ ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଆଧାର । କହିବା ନିଷ୍ପ୍ରୟୋଜନ ଯେ ଏହି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୋଗୁଁ ସଭ୍ୟତାର କ୍ରମ ବିକାଶ ସମ୍ଭବ ହୋଇଛି ଓ ମଣିଷ ଏକ ଆଦିମ ଅବସ୍ଥାରୁ ନାନା ସୋପାନ ଦେଇ ଏକ ଉନ୍ନତ ସାମାଜିକ ସ୍ଥିତିକୁ ଆସିପାରିଛି । ନିରୀଶ୍ୱରବାଦ ଏକ ମାନବକୈନ୍ଦ୍ରିକ ଜୀବନ ଦର୍ଶନକୁ ସର୍ବଦା ପ୍ରାଧାନ୍ୟ ଦେଇଆସିଛି ଓ ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାକୁ ପ୍ରୟାସ କରିଛି । ଏହା କୌଣସି ଭିନ୍ନ ଜଗତର କାଳ୍ପନିକ ଚିତ୍ର ବା ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତିର କଥା କହି ନାହିଁ ବରଂ ଏହି ଜୀବନକୁ ଓ ସାମାଜିକ ସମ୍ବନ୍ଧକୁ ମହତ୍ତର ଓ ପ୍ରୀତିପୂର୍ଣ୍ଣ କରିବାକୁ ପ୍ରେରଣା ଦେଇଛି । ପରିଣାମତଃ ଏକ ଧର୍ମନିରପେକ୍ଷ ମାନବବାଦୀ ଜୀବନଧାରା ଏହାର ଅନ୍ତଃସ୍ୱର ହୋଇରହିଛି । ଧର୍ମ, ଈଶ୍ୱର ବ୍ୟକ୍ତିର ବ୍ୟକ୍ତିଗତ ବିଶ୍ୱାସ ଓ ଅବିଶ୍ୱାସର କଥା, ଏହା ସାମାଜିକ ସମ୍ବନ୍ଧ ଓ ବୃହତ୍ତର ବିଶ୍ୱଦୃଷ୍ଟି ପାଖରେ ଅପାଂକ୍ତେୟ ଓ ଅର୍ଥଶୂନ୍ୟ । ଯେହେତୁ ନିରୀଶ୍ୱରବାଦ ଏକ ମାନବକୈନ୍ଦ୍ରିକ ମୂଲ୍ୟବୋଧକୁ ସର୍ବଦା ପ୍ରାଧାନ୍ୟ ଦେଇଆସିଛି ଏହା ପ୍ରତ୍ୟେକ ବ୍ୟକ୍ତିର ଅଧିକାର, ମର୍ଯ୍ୟାଦା ଓ ସମ୍ମାନଜନକ ଜୀବନଧାରାକୁ ଗୁରୁତ୍ୱ ଦେଇଛି । ପ୍ରତ୍ୟେକ ବ୍ୟକ୍ତି ତା'ର ବୃତ୍ତି, ଜାତି, ଧର୍ମ, ଭାଷା, ଜାତୀୟତା ନିର୍ବିଶେଷରେ ସମ୍ମାନର ଅଧିକାରୀ ଓ ସମ୍ମାନର ସହ ବଞ୍ଚିବା ତାର ଏକ ମୌଳିକ ଅଧିକାର । ପରିଣାମତଃ ଏହା ଗଣତାନ୍ତ୍ରିକ ଜୀବନ ଶୈଳୀ ଓ ମୂଲ୍ୟବୋଧ ସହ ସମତାଳଯୁକ୍ତ । ପୁନଶ୍ଚ ନିରୀଶ୍ୱରବାଦର ସବିଶେଷ ଆବେଦନ ହେଉଛି ଯେ ମଣିଷ ହିଁ ତାର ଭବିଷ୍ୟତର ନିୟନ୍ତା । ମଣିଷ ନିଜ ଉଦ୍ୟମରେ ଓ ସାମୂହିକ ପ୍ରୟାସ ଦ୍ୱାରା ଜୀବନ ଓ ସଂସାରକୁ ସୁନ୍ଦର କରିପାରିବ । ସଂସାରରେ ଯାହା କିଛି ସୁନ୍ଦର ପରିବେଶ ଆସିଛି ତାହା ମଣିଷ ହାତର କରାମତି । ଶିକ୍ଷା, ସଭ୍ୟତା, ସଂସ୍କୃତି, ନୈତିକତା ଇତ୍ୟାଦି ସମସ୍ତ ମହତ୍ତର ପ୍ରାପ୍ତିଗୁଡ଼ିକ ନାନା ସ୍ତର ଦେଇ ମଣିଷର ଚେତନାରୁ ବିକଶିତ ହୋଇଛି । ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତି ମଣିଷକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ବିଶ୍ୱାୟନ କରିବାରେ ଲାଗିଛି । ନିରୀଶ୍ୱରବାଦୀ ଜୀବନ ଦର୍ଶନ ମାନବ ସତ୍ତାକୁ କ୍ଷୁଦ୍ରତମ ବେଷ୍ଟନୀ ବା ପରିଧିଠାରୁ ମୁକ୍ତ କରି ତାକୁ ବିଶ୍ୱ ଦୃଷ୍ଟି ଦେବାରେ ଲାଗିଛି । ମଣିଷର ଏହି ଉର୍ଦ୍ଧ୍ୱାୟନ ଓ ମାନବସତ୍ତାର ଏହି ବିଶ୍ୱାୟନ ହେଉଛି ମାନବକୈନ୍ଦ୍ରିକ ନିରୀଶ୍ୱରବାଦର ଅବଦାନ ।



# ମାନବବାଦ : ଦୃଷ୍ଟି ଓ ଦିଗନ୍ତ

ମାନବବାଦ ଏକ ଜୀବନଦୃଷ୍ଟି ଓ ଏକ ସମାଜ-ଦର୍ଶନ । ହେତୁବାଦ, ସଂଶୟବାଦ, ନିରୀଶ୍ୱରବାଦ, ପ୍ରତ୍ୟକ୍ଷବାଦ, ଅସ୍ତିତ୍ୱବାଦ ଇତ୍ୟାଦି ଦାର୍ଶନିକ ବିଚାର ସ୍ତରରେ ମାନବବାଦକୁ ଏକ ମହତ୍ତର ଜୀବନଦୃଷ୍ଟି ଭାବେ ଗ୍ରହଣ କରାଯାଇଛି । ମଣିଷ ହିଁ ସବୁର ମାନଦଣ୍ଡ; ସକଳ ନୀତି, ଆଦର୍ଶ, ମୂଲ୍ୟବୋଧ, ଜୀବନଶୈଳୀ ଇତ୍ୟାଦି ମଣିଷ ହିଁ ନିଜର ସାମାଜିକ ବିକାଶ ଧାରାରେ ସୃଷ୍ଟି କରିଛି । ଏହା ହିଁ ମାନବବାଦର ଏକ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ସଭ୍ୟତାର ସକଳ କୀର୍ତ୍ତିକରଣୀ ସୋପାନ ସୋପାନ ଦେଇ ମଣିଷ ଦ୍ୱାରା ସୃଷ୍ଟି ହୋଇଛି । ଅର୍ଥାତ୍ ସକଳ ବିକାଶ ବା ଉତ୍‌ଥାନ ମଣିଷର ପ୍ରୟାସ ଓ ବିଚାରଯୋଗୁଁ ସମ୍ଭବ ହୋଇଛି । ଏହି ଅନୁଭୂତି ଆଧାରରେ ଏକ ସମାଜ-ଦର୍ଶନର ଭିତ୍ତି ପଡ଼ିଛି । ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ସମତା ଆଧାରିତ ସମାଜ ଭାବନା ସଭ୍ୟ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ ହୋଇଛି । ଅର୍ଥାତ୍ ଏକ ମୂଲ୍ୟବୋଧ ଆଧାରିତ ଜୀବନ ଦୃଷ୍ଟିର ଅଭ୍ୟୁଦୟ କ୍ଷେତ୍ରରେ ବା ସକଳ ସାମାଜିକ ବିକାଶ ପ୍ରକ୍ରିୟାରେ ମାନବବାଦ ହିଁ ସଭ୍ୟ ପ୍ରେରଣାର ଉତ୍ସ ହୋଇରହିଛି । ଶଂସିତ ପ୍ରବନ୍ଧରେ ଏହି ବିଚାରର କେତେକ ସାଧାରଣ ବୈଶିଷ୍ଟ୍ୟକୁ ଆଲୋଚନା କରିବାକୁ ଲକ୍ଷ୍ୟ ରଖାଯାଇଛି । ଅବଶ୍ୟ ମାନବବାଦର ନାନା ଦିଗନ୍ତ ରହିଛି ଓ ସକଳ ଦିଗନ୍ତକୁ ସ୍ପର୍ଶ କରିବା ଏହି ପ୍ରବନ୍ଧର ପରିସର ଭିତରେ ସମ୍ଭବ ନୁହେଁ । ତେବେ ମାନବବାଦର କେତେକ ମୁଖ୍ୟ ତାତ୍ପର୍ଯ୍ୟକୁ ଦର୍ଶାଇବା ଏହି ପ୍ରବନ୍ଧର ଲକ୍ଷ୍ୟ ।

ପୃଥିବୀର ଯେକୌଣସି ଅଞ୍ଚଳର ସଭ୍ୟତାର ବିଶ୍ଳେଷଣ କଲେ ବା ଆଧୁନିକ ଜୀବନଧାରାର ବିକାଶ ପର୍ବକୁ ଦେଖିଲେ ଏହା ଜାଣିହୁଏ ଯେ ହଜାର ହଜାର ବର୍ଷର କ୍ରମ ବିକାଶ ପ୍ରକ୍ରିୟାରେ ସଭ୍ୟତାର ବିକାଶ ହୋଇଛି । ଜୀବନର ପ୍ରତ୍ୟେକ ସ୍ତରରେ ବା ପ୍ରାକୃତିକ ବିଜ୍ଞାନର ପ୍ରତିଟି ସୋପାନରେ ଜ୍ଞାନ-ବିଜ୍ଞାନ ଅଭ୍ୟୁଦୟର ଏକ ସୁଦୀର୍ଘ ଇତିହାସ ରହିଛି । ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ମଣିଷର ବିକାଶ ଯେପରି ହୋଇଛି, ସାମାଜିକ ମୂଲ୍ୟଚୟର ବିକାଶ ସେହିପରି ହଜାର ହଜାର ବର୍ଷର କ୍ରମୋନ୍ନତି ଦେଇ ସମ୍ଭବ ହୋଇଛି । ବଣ ଜଙ୍ଗଲରେ ଏକଦା ନିରାପଦଵିହୀନ ଜୀବନ ବଞ୍ଚୁଥିବା ମଣିଷ କାଳକ୍ରମେ ଗୋଷ୍ଠୀ ଜୀବନକୁ ସୁଦୃଢ଼ କରିଛି, ଭାଷାର ବିକାଶ ଘଟାଇଛି, ପରିବେଶକୁ ବୁଝିବାକୁ ଉଦ୍ୟମ କରିଛି ଓ ନିଜର ପରିବେଶକୁ ଅବବୋଧ କରି ନିରାପଦ ଜୀବନପାଇଁ ପ୍ରୟାସ କରିଛି । ପ୍ରତ୍ୟେକ ଗୋଷ୍ଠୀ ଜୀବନରୁ ଏକ ଏକ ଭାଷାର ଉତ୍ପନ୍ନ ହୋଇ ହଜାର ହଜାର ଭାଷାର ଉଦ୍‌ଭବ ହୋଇଛି । ଭାଷାର ବିକାଶ ପରେ ବୌଦ୍ଧିକ ଜିଜ୍ଞାସା ଆସିଛି । ବୌଦ୍ଧିକ ଜିଜ୍ଞାସା ଜନିତ ସୃଜନଶୀଳତାରୁ ସାହିତ୍ୟ, ଦର୍ଶନ, ଧର୍ମ, ଇତିହାସ, କିଛି ବିଜ୍ଞାନ (ଯେତେ ସୀମିତ ଅର୍ଥରେ ହେଲେ ବି), କଳା, ସ୍ଥାପତ୍ୟ ଇତ୍ୟାଦିର ବିକାଶ ବିଭିନ୍ନ ସଭ୍ୟତାରେ ହୋଇଛି । ଏସବୁ ମଧ୍ୟଦେଇ ବୌଦ୍ଧିକ ଉତ୍ତରଣ ଘଟିଛି । ଏସବୁ ହଜାର ହଜାର ବର୍ଷର ନିରନ୍ତର ପ୍ରୟାସ ଓ ଉଦ୍ୟମ ଯୋଗୁଁ ସମ୍ଭବ ହୋଇଛି । ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଓ ହଜାର ହଜାର ବର୍ଷର ସାମାଜିକ ପରିବର୍ତ୍ତନ ଦେଇ ଆଧୁନିକ ଜୀବନ ଶୈଳୀର ବିକାଶ

ହୋଇଛି । ସକଳ ପରିବର୍ତ୍ତନ, ଉତରଣ ଓ କ୍ରମୋନ୍ନତି କୌଣସି ଅତିପ୍ରାକୃତିକ ଶକ୍ତି ଯୋଗୁଁ ବା କୌଣସି ଈଶ୍ୱରଙ୍କ ଯୋଗୁଁ ସମ୍ଭବ ହୋଇନାହିଁ । କୌଣସି ଦୈବୀ ଆଶୀର୍ବାଦ ଯୋଗୁଁ ସମାଜ ଆଗକୁ ଯାଇନାହିଁ, ସମାଜ ଆଗକୁ ଯାଇଛି ବିଚାରଧାରାର କ୍ରମୋନ୍ନତ ବିକାଶ ଯୋଗୁଁ । ପୁନଶ୍ଚ ସଂସାରର ବିଭିନ୍ନ ଭୂଖଣ୍ଡରେ ବା ସଭ୍ୟତାରେ ଏହି ବିକାଶ ଧାରା ସମାନ୍ତରାଳ ଭାବେ ଘଟି ନାହିଁ ବା ସମଭାବରେ ହୋଇନାହିଁ । ମଣିଷର ଉଦ୍ୟମ ବା ପ୍ରଚେଷ୍ଟାର ପାର୍ଥକ୍ୟ ଯୋଗୁଁ ବିକାଶର ଧାରା ମଧ୍ୟ ଭିନ୍ନ ଭିନ୍ନ ହୋଇଛି । ତେବେ ଯାହା କିଛି ବିକାଶ ଲାଭ କରିଛି ବା ଜୀବନର ମାନବୃଦ୍ଧି ଘଟିଛି ତାହା ପଶ୍ଚାତରେ କୌଣସି ଈଶ୍ୱରୀୟ ନିର୍ଦ୍ଦେଶ ନାହିଁ ବା ଏ ସବୁ ଶୂନ୍ୟରୁ ସୃଷ୍ଟି ହୋଇନାହିଁ । ସକଳ ବିକାଶ ବା ଉନ୍ନତି ପଛରେ ରହିଛି ମଣିଷର ଅବିରତ ପ୍ରଚେଷ୍ଟା ଓ ଉପଯୁକ୍ତ ସାମାଜିକ ପରିବେଶ । କୌଣସି ସଭ୍ୟତାରେ ବା ଭୂଖଣ୍ଡରେ ଜ୍ଞାନ ବିଜ୍ଞାନ ଓ ଉନ୍ନତ ଜୀବନ ଶୈଳୀର ବିକାଶ ପାଇଁ ସାମାଜିକ ପରିବେଶ ଅନୁକୂଳ ହୋଇଛି ଓ ଅନ୍ୟ କେଉଁଠି ସାମାଜିକ ଘଟଣା ପ୍ରବାହ ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ବାଧକ ବା ଅନ୍ତରାୟ ସୃଷ୍ଟି କରିଛି । ତେବେ ମଣିଷ ଭିତରର ସୃଜନଶୀଳତା ଉପଯୁକ୍ତ ପରିବେଶରେ ବିକଶିତ ହୋଇ ସମାଜ ଜୀବନକୁ ଉନ୍ନତ କରିଛି ଓ ଅନ୍ୟ କେଉଁଠି ମଣିଷର ସୃଜନଶୀଳତା ଉପଯୁକ୍ତ ଭାବେ ବିକଶିତ ହୋଇ ନପାରି ସମାଜକୁ ବିକଶିତ କରିପାରି ନାହିଁ । ଯେଉଁଠି ମଣିଷ ଅନୁସନ୍ଧିତ୍ସୁ ହୋଇଛି, ପ୍ରକୃତି ଓ ପରିବେଶକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କରିଛି, ଜୀବନକୁ ଅଧିକ ନିରାପଦ କରିବାକୁ ଉପାୟ ଚିନ୍ତା କରିଛି, ଗୋଷ୍ଠୀ ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବାରେ ବ୍ରତୀ ହୋଇଛି, ସବୁ ମଣିଷଙ୍କର ଆବଶ୍ୟକତା ପୂରଣ ପାଇଁ ଉପଯୁକ୍ତ ସାମାଜିକ ଅନୁଷ୍ଠାନ ସୃଷ୍ଟି କରିଛି ସେଠି ସଭ୍ୟତାର ଗୁଣାତ୍ମକ ବିକାଶ ହୋଇଛି ଓ ସାଂସ୍କୃତିକ ଉତରଣ ଘଟିଛି । ଯେଉଁଠି ମଣିଷ ଏ ସବୁ ପ୍ରତି ବୀତସ୍ପୃହ ରହି ଈଶ୍ୱର, ଦେବତା, ଅତିପ୍ରାକୃତିକ ଶକ୍ତି ପାଖରେ ଶରଣ ପଶିଛି, ଜୀବନକୁ ଅଳୀକ ମନେ କରି ସାମାଜିକ ସମ୍ବନ୍ଧକୁ ତୁଚ୍ଛ ମଣିଛି ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି ପରି ଗୁଡ଼ିଏ କାଳ୍ପନିକ ଲକ୍ଷ୍ୟକୁ ଶ୍ରେୟ ଭାବରେ ନେଇ ସମାଜ ପ୍ରତି ସ୍ପର୍ଶକାତରଶୂନ୍ୟ ଦୃଷ୍ଟିଭଙ୍ଗୀ ଆଣିଛି ସେଠାରେ ସଭ୍ୟତାର ଅଗ୍ରଗତି ଶିଥିଳ ହୋଇଛି, ଜୀବନର ଗୁଣାତ୍ମକ ମାନ ଅନୁନ୍ନତ ହୋଇ ରହିଛି । ମଣିଷକୁ ମୂଲ୍ୟ ଦେଉଥିବା ଓ ମଣିଷର ଜୀବନଶୈଳୀକୁ ଗୁରୁତ୍ୱପୂର୍ଣ୍ଣ ମନେ କରୁଥିବା ବାସ୍ତବବାଦୀ ଜୀବନଦୃଷ୍ଟି ସଭ୍ୟତାର କ୍ରମବିକାଶ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିବା ବେଳେ ଜୀବନ ଓ ବୃହତ୍ତର ସମାଜ ପ୍ରତି ଏକ ଉଦାସୀନ ମନ ନେଇ ଭିନ୍ନ ଜଗତର ପ୍ରାପ୍ତି ପାଇଁ ପ୍ରୟାସ ହେଉଥିବା ସାମାଜିକ ପରିବେଶ ଅନୁନ୍ନତ ହୋଇ ରହିବା ମାନବିକ ଅନୁଭୂତିରୁ ସ୍ପଷ୍ଟ ହୋଇଥାଏ ।

ବସ୍ତୁତଃ ମାନବବାଦ ଏକ ମାନବକୈନ୍ଦ୍ରିକ ଜୀବନ ଦର୍ଶନକୁ ପ୍ରାଧାନ୍ୟ ଦେଇଥାଏ । ଏଠାରେ ମାନବକୈନ୍ଦ୍ରିକ ଜୀବନ-ଦର୍ଶନ ଈଶ୍ୱର-କୈନ୍ଦ୍ରିକ ଜୀବନ-ଦର୍ଶନ ଠାରୁ ପୃଥକ୍ ମନେହୁଏ । ମାନବକୈନ୍ଦ୍ରିକ ଜୀବନ ଦର୍ଶନ ଏହି ଜଗତକୁ ଗୁରୁତ୍ୱ ଦିଏ, ଏହି ସଂସାରର ସବୁ ମଣିଷଙ୍କର ଜୀବନକୁ ଉନ୍ନତ କରିବାକୁ ପ୍ରୟାସ କରେ । ସଂସାରରେ ଯାହା କିଛି ମନ୍ଦ ବା ଅଶୁଭ ରହିଛି ତାକୁ ବୁଝିବାକୁ ପ୍ରୟାସ କରେ ଓ ସକଳ ମନ୍ଦ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ବିଚାରଶୀଳ ଭାବେ ପନ୍ଥାର ସନ୍ଧାନ କରେ । ରୋଗ, ପ୍ରାକୃତିକ ବିପର୍ଯ୍ୟୟ, କୌଣସି ଅଜ୍ଞାତପୂର୍ବ ବା ଅନପେକ୍ଷିତ ସଂକଟର ସମ୍ମୁଖୀନ ହେବାକୁ ଉପାୟ ଚିନ୍ତା କରିବା ଦ୍ୱାରା ମଣିଷର ଦୁଃଖ ଦୁର୍ଦ୍ଦଶାକୁ ସେ ନିୟନ୍ତ୍ରଣ କରିବାକୁ ସମର୍ଥ ହୁଏ । ଅପର ପକ୍ଷରେ ସବୁକିଛି ଈଶ୍ୱର ନିୟନ୍ତ୍ରିତ ବ୍ୟବସ୍ଥା ଓ ମଣିଷ ଏଠାରେ ଏକ ଅସହାୟ ଗୋଟି ମାତ୍ର ଭାବନା- ଜୀବନ ପ୍ରତି ଏକ ନକାରାତ୍ମକ ଦୃଷ୍ଟି

ଆଣିଥାଏ । ଜୀବନର ଆହ୍ୱାନଙ୍କୁ ମୁକାବିଲା କରିବା ଓ ସେଥିପାଇଁ ବିଚାରଶୀଳ ଭାବେ ସମାଧାନର ସୂତ୍ର ବାହାର କରିବା ମାନବକୈନ୍ଦ୍ରିକ ଜୀବନଦର୍ଶନର ଆଭିମୁଖ୍ୟ ଅଟେ । ଅପର ପକ୍ଷରେ ଭାଗ୍ୟବାଦୀ ହେବା, ଅସହାୟବୋଧ ଦୃଷ୍ଟିଭଙ୍ଗୀ ନେଇ କୌଣସି କଳ୍ପିତ ଦିଅଁ ଦେବତା ପାଖରେ ଶରଣ ପଶିବା, ଚମତ୍କାରିତାରେ ଆସ୍ଥାବାନ ହେବା, ଜୀବନର ଆହ୍ୱାନ ପ୍ରତି ଉଦାସୀନ ରହିବା ବା ବାସ୍ତବ ପରିସ୍ଥିତିକୁ ଏଡାଇ ଯିବା ମାନବକୈନ୍ଦ୍ରିକ ଜୀବନଦର୍ଶନର ପରିପନ୍ଥୀ ମନେ ହୁଏ । ଈଶ୍ୱରକୈନ୍ଦ୍ରିକ ଜୀବନଦର୍ଶନ, ଭାଗ୍ୟବାଦ, ପଳାୟନବାଦ ବା ମାୟାବାଦ ପରି ଦୃଷ୍ଟିକୋଣ ମାନବବାଦର ପ୍ରତିକୂଳ ବୋଧହୁଏ । ମାନବକୈନ୍ଦ୍ରିକ ଜୀବନଦର୍ଶନ ବିଚାର କରେ ଯେ ଆଜିର ଜ୍ଞାନ, ବିଜ୍ଞାନ, ସାମାଜିକ ବ୍ୟବସ୍ଥା, ନୈତିକ ଆଦର୍ଶଚୟ ଅତୀତର ପ୍ରୟାସ ଭିତରୁ ଉଦ୍‌ଭବ ହୋଇଛି । ଆଜିର ଏହି ସ୍ଥିତିକୁ ଆସିବାକୁ ହଜାର ହଜାର ବର୍ଷର ପ୍ରୟାସ ରହିଛି । ସେହିପରି ଆମ ଦୁନିଆର ଭବିଷ୍ୟତ ଆଜିର ପ୍ରୟାସ ଦ୍ୱାରା ରୂପରେଖ ନେଇପାରିବ । ଜ୍ଞାନ-ବିଜ୍ଞାନ, ଉନ୍ନତ ଜୀବନଶୈଳୀ, ପ୍ରୀତିପୂର୍ଣ୍ଣ ସାମାଜିକ ସମ୍ବନ୍ଧ, ବିଶ୍ୱଦୃଷ୍ଟି ଇତ୍ୟାଦିର ଅଧିକ କ୍ରମୋନ୍ନତି ପାଇଁ ନିଷ୍ଠାପର ଉଦ୍ୟମର ଆବଶ୍ୟକତା ରହିଛି । ଏସବୁ ଦିଗରେ ଯେତିକି ସଂଘବଦ୍ଧ ପ୍ରୟାସ ହେବ ଏହାର ସଫଳ ଅଭିବ୍ୟକ୍ତି ସେତିକି ତ୍ୱରାନ୍ୱିତ ହୋଇପାରିବ । କୌଣସି ପ୍ରାପ୍ତି ବା ସାମାଜିକ ଲକ୍ଷ୍ୟ ହାସଲ ପାଇଁ ମଣିଷର ଉଦ୍ୟମ ଯେ ନିର୍ଣ୍ଣାୟକ ଏହା ହିଁ ଏହି ଜୀବନଦର୍ଶନର ମୂଳମନ୍ତ୍ର ଅଟେ । ମଣିଷର ଉଦ୍ୟମ ବ୍ୟତୀତ ସଭ୍ୟତାର ବିକାଶ ହୁଏ ନାହିଁ ବା ଗୁଣାତ୍ମକ ଜୀବନର କ୍ରମୋନ୍ନତି ସମ୍ଭବ ହୋଇପାରେ ନାହିଁ । ପ୍ରାର୍ଥନା, ଦିଅଁ ଦେବତାଙ୍କ ପାଖରେ ସମର୍ପଣ, ଈଶ୍ୱର ଭକ୍ତି ଇତ୍ୟାଦି ହୁଏତ ମଣିଷକୁ କିଛି ମନସ୍ତାତ୍ତ୍ୱିକ ନିର୍ଭୟତା ଦେଉଥାଇପାରେ, କିନ୍ତୁ ଏହା ଦ୍ୱାରା ପରିସ୍ଥିତି ବଦଳିଯାଏ ନାହିଁ ବା ସମାଜର ବିକାଶ ହୁଏ ନାହିଁ । ଈଶ୍ୱର ବିଶ୍ୱାସ ଜନିତ ଭାବନା ଏକ ମନସ୍ତାତ୍ତ୍ୱିକ ଆବେଗ ମାତ୍ର, ଏହା ଏକ ସର୍ତ୍ତବଦ୍ଧ ବ୍ୟକ୍ତିକୁ ହୁଏତ ମାନସିକ ସ୍ତରରେ କିଛି ନିର୍ଭୟତା ବା ଆତ୍ମବିଶ୍ୱାସ ଦେଉଥାଏ । ତେବେ ଏହା କୌଣସି ସାମାଜିକ ବିକାଶ ଘଟାଏ ନାହିଁ ବା ମାନବିକ ସମସ୍ୟାର ସମାଧାନ ଦିଏ ନାହିଁ । ବ୍ୟକ୍ତିଗତ ବିଶ୍ୱାସ ଓ ଆବେଗ କେତେକ କ୍ଷେତ୍ରରେ କିଛି ଅଭିନିବେଶ ଯୋଗାଇଥାଏ ମାତ୍ର, କିନ୍ତୁ ଏହା କୌଣସି ମହତ୍ତର ଲକ୍ଷ୍ୟ ଦିଗରେ ସମାଜକୁ ଆଗକୁ ନେଇନଥାଏ । ମଣିଷର ବ୍ୟକ୍ତିଗତ ବିଶ୍ୱାସ ବ୍ୟକ୍ତିକୁ ଏକ ମହତ୍ତର ଓ ଉତ୍ତରଦାୟୀ ଜୀବନଦୃଷ୍ଟି ହୁଏତ ଦେଇପାରେ, ତେବେ ମଣିଷର ନିଷ୍ଠା, ସଂକଳ୍ପ ଓ ପ୍ରୟାସ ବ୍ୟତୀତ ସମାଜର କ୍ରମୋନ୍ନତି ସମ୍ଭବ ହୋଇନଥାଏ ।

ମାନବବାଦର ବୌଦ୍ଧିକ ପୃଷ୍ଠଭୂମିଟିକୁ ଦେଖିଲେ ମଣିଷ ଓ ତାର ଅନୁଭୂତି ହିଁ ଏଥିରେ ପ୍ରାଧାନ୍ୟ ନେଇଥାଏ । ମାନବବାଦୀ ଦର୍ଶନ ପ୍ରତ୍ୟକ୍ଷ ଜନିତ ଜ୍ଞାନ ମୀମାଂସା, ବାସ୍ତବତା ଜନିତ ତତ୍ତ୍ୱମୀମାଂସା ଓ ଅନୁଭୂତି ଆଧାରିତ ଆଚାର ମୀମାଂସାକୁ ମୁଖ୍ୟ ଭାବରେ ନେଇଥାଏ । ଆମେ ଇନ୍ଦ୍ରିୟ ଆଧାରରେ ଆମ ଚତୁଃପାର୍ଶ୍ୱର ଘଟଣା ପ୍ରବାହକୁ ଯେପରି ପର୍ଯ୍ୟବେକ୍ଷଣ କରୁ ତାହାରି ଆଧାରରେ ଜଗତ ବିଷୟକ ଧାରଣା ସୃଷ୍ଟି କରିଥାଉ । ବିଶେଷ କରି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଆଧାରରେ ବସ୍ତୁନିଷ୍ଠ ଅନୁଶୀଳନ ଦ୍ୱାରା ବୈଜ୍ଞାନିକ ଜ୍ଞାନର ସୌଧ ଗଢ଼ି ଉଠିଛି । ସକଳ ବୈଜ୍ଞାନିକ ଅନୁଶୀଳନ, ଉଦ୍‌ଭାବନ ଓ ଆବିଷ୍କାରର ମୂଳଭିତ୍ତି ହେଉଛି ଆମର ପ୍ରତ୍ୟକ୍ଷ ଜନିତ ଅନୁଭୂତି । ବୈଜ୍ଞାନିକ ଜ୍ଞାନ ବସ୍ତୁତଃ ପରୀକ୍ଷିତ, ପ୍ରଗତିଶୀଳ ଓ ସତ୍ୟର ନିକଟବର୍ତ୍ତୀ ଯାହା ମାନବିକ ଅନୁଭୂତି ଆଧାରରେ ରୂପ ନେଇଥାଏ । ଜଗତ ବିଷୟରେ ଆମେ ଯେଉଁ ଅନୁଭୂତି ଲାଭ କରୁ ତାହାରି ଆଧାରରେ ଆମର ଚିନ୍ତା ସ୍ତରରେ ନାନା ସିଦ୍ଧାନ୍ତର ଅବତାରଣା କରିଥାଉ । ସେହିପରି

ଆମର ପ୍ରତ୍ୟକ୍ଷ ଓ ଅନୁଭୂତିକୁ ଆଧାର କରି ଜଗତରେ କ'ଣ ବାସ୍ତବ ବା ଅବାସ୍ତବ, ପ୍ରକୃତିର ମୂଳଭିତ୍ତି କ'ଣ, କାର୍ଯ୍ୟ କାରଣ ନିୟମର ସ୍ୱରୂପ କ'ଣ ଇତ୍ୟାଦି ବିଷୟରେ ବିଭିନ୍ନ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ କେବଳ ମଣିଷର ଅନୁଭୂତି ଆଧାରରେ ରୂପ ନେଇଥାଏ । ଅନୁଭୂତି - ବହିର୍ଭୂତ, ସଂପୂର୍ଣ୍ଣ-କଳ୍ପନା ପ୍ରସୂତ ବା ପରିକଳ୍ପନାତ୍ମକ (speculative) ତାତ୍ତ୍ୱିକ ସିଦ୍ଧାନ୍ତ ସକଳ ଦାର୍ଶନିକ ସ୍ତରରେ କିଛିଟା ଭାବଗର୍ଭକ ହୋଇପାରେ କିନ୍ତୁ ସେ ସବୁ ତର୍କ ସମ୍ମତ ବା ଅନୁଭୂତି ସମର୍ଥିତ ନ ହୋଇଥିବା ଯୋଗୁଁ ସେ ସବୁର ଗୁରୁତ୍ୱ ନଥାଏ । ପରସ୍ପର ବିରୋଧୀ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ସକଳ କିପରି ଅପାଂକ୍ତେୟ ହୋଇଯାଇଛି ତାହା ଏହି ଶହେ ବର୍ଷର ଦାର୍ଶନିକ ଜିଜ୍ଞାସା ମଧ ଦେଇ ସ୍ପଷ୍ଟ ହୋଇଯାଇଛି । ମୋଟ ଉପରେ କହିଲେ ସକଳ ତାତ୍ତ୍ୱିକ ଭାବନାର ବୈଧତା କେବଳ ମଣିଷର ବିଚାରଶୀଳତା ଓ ତାର୍କିକ ଅନୁଶୀଳନ ଦେଇ ସ୍ପଷ୍ଟ ହୋଇଥାଏ । ମଣିଷର ଅନୁଭୂତି ତଥା ବିଚାରଶୀଳ ଓ ତର୍କଶୀଳ ପର୍ଯ୍ୟାଲୋଚନା ବ୍ୟତୀତ କୌଣସି ଜ୍ଞାନର ଯେ କିଛି ଆଧାର ନାହିଁ ଏହା ନିଃସନ୍ଦେହ ମନେ ହୁଏ । ସେହିପରି ନ୍ୟାୟ-ଅନ୍ୟାୟ, ଭଲ-ମନ୍ଦ, ନୀତି-ଅନୀତି ଇତ୍ୟାଦି ପ୍ରଶ୍ନ ସକଳ ମଣିଷର ଅନୁଭୂତି ଓ ବିଚାରଶୀଳତା ମଧ ଦେଇ ରୂପରେଖ ନେଇଥାଏ । କୌଣସି କାର୍ଯ୍ୟର ନୈତିକ ମୂଲ୍ୟାୟନ ମଣିଷ ତାର ବିଚାରଶୀଳ ଓ ଅନୁଭୂତି-ସମର୍ଥିତ ମାନଦଣ୍ଡ ଆଧାରରେ କରିଥାଏ । ସତ୍ୟବାଦିତା, ଅହିଂସା, ସମ୍ବେଦନଶୀଳତା, ନ୍ୟାୟପରାୟଣତା ଇତ୍ୟାଦି ନୈତିକ ମୂଲ୍ୟଚୟ ଗୁଡ଼ିକ କେଉଁ ଈଶ୍ୱର ଆମକୁ ଦେଇନାହାନ୍ତି ବରଂ ଏସବୁ ଯେ ସଭ୍ୟ ଜୀବନଧାରାର ଅଙ୍ଗବିଶେଷ ଏହା ନାନା ଅନୁଭବ ଦେଇ ସମାଜରେ ବିବର୍ତ୍ତିତ ହୋଇଛି । କେଉଁ ଆଚରଣ ଓ ସାମାଜିକ କର୍ତ୍ତବ୍ୟବୋଧ ବ୍ୟକ୍ତିକୁ ସଂସ୍କୃତି ସଂପନ୍ନ କରାଏ ତଥା ସାମାଜିକ ଜୀବନର ଗୁଣାତ୍ମକ ବିକାଶ ପାଇଁ ଅନୁକୂଳ ହୁଏ ତାହା ମଣିଷ ନାନା ଅନୁଭୂତି ବା ଚିନ୍ତନ ଦେଇ ଜାଣିବାକୁ ସମର୍ଥ ହୋଇଛି । ସୁତରାଂ ନୈତିକତା ଯେ ଏକ ସାମାଜିକ କର୍ତ୍ତବ୍ୟ ଓ ଗୁଣାତ୍ମକ ଜୀବନ ପାଇଁ ଅବଶ୍ୟମ୍ଭାବୀ, ଏହା ମଣିଷ ନିଜର ଅନୁଭୂତି ଓ ବିଚାର ଦେଇ ଜାଣିବାକୁ ସମର୍ଥ ହୋଇଛି । ମୋଟ ଉପରେ ମଣିଷର ଅନୁଭୂତି ଓ ବିଚାରଶୀଳତା ହିଁ ସକଳ ଜ୍ଞାନ, ତତ୍ତ୍ୱ ଓ ସଭ୍ୟ ଆଚରଣର ଭିତ୍ତି ହୋଇରହିଛି । ସୁତରାଂ ମାନବ-କୈନ୍ଦ୍ରିକ ଜୀବନଦର୍ଶନ ଯେ ମାନବବାଦର ଅନ୍ତଃସ୍ୱର ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯଦି ମଣିଷର ଅନୁଭୂତି ଓ ବିଚାରଶୀଳତା ମାନବିକ ଶ୍ରେୟ ସାଧନର ଭିତ୍ତି ହୁଏ (ଯାହା ମାନବବାଦର ଆଭିମୁଖ୍ୟ ଅଟେ), ତେବେ ମାନବବାଦ (humanism) ଓ ମାନବିକତାବାଦ (humanitarianism) ସମାନ ହେବେ ନା ପରସ୍ପର ଠାରୁ ପୃଥକ ହେବେ ? ମାନବବାଦୀମାନେ ଯଦି ସକଳ ଶ୍ରେୟ ସାଧନ କ୍ଷେତ୍ରରେ ଏକ ମାନବକୈନ୍ଦ୍ରିକ ସିଦ୍ଧାନ୍ତକୁ ପ୍ରାଧାନ୍ୟ ଦେବେ, ତାହା ମାନବିକତାବାଦ ଠାରୁ ପୃଥକ୍ ହେବ ନାହିଁ କି ? ଧାର୍ମିକ ଜୀବନ ଦୃଷ୍ଟି ଭିତରେ ପ୍ରାୟତଃ ଈଶ୍ୱରଙ୍କୁ ପ୍ରାଧାନ୍ୟ ଦିଆଯାଏ । ଈଶ୍ୱର ବିଶ୍ୱାସରୁ ବ୍ୟକ୍ତି ବହୁ ସମୟରେ ମହତ୍ତର ପ୍ରେରଣା ଲାଭ କରିଥାଏ । ଅନେକ ନିଜର ଧର୍ମ ଓ ଈଶ୍ୱର ବିଶ୍ୱାସରୁ ପ୍ରେରଣା ପାଇ ଦୁସ୍ଥ ମଣିଷର ସେବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବାର ଦୃଷ୍ଟାନ୍ତ ସମାଜରେ ବିରଳ ନୁହେଁ । "ମଣିଷ ସେବା ହିଁ ଈଶ୍ୱର ସେବା" ପରି ବିଶ୍ୱାସରୁ ଲୋକ ଉପକାରକୁ କେତେକ ଜୀବନର ଶ୍ରେୟ ଭାବରେ ନେବା ଦେଖାଯାଏ । ସେ କ୍ଷେତ୍ରରେ ମାନବବାଦ ଓ ମାନବିକତାବାଦ ଭିତରେ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଜଣେ ମାନବିକତାବାଦୀର ଯୁକ୍ତି ହୋଇପାରେ ଯେ ସବୁ ମଣିଷ ଈଶ୍ୱରଙ୍କର ସନ୍ତାନ, ସୁତରାଂ ସମସ୍ତଙ୍କ ଭିତରେ ଏକ ଭ୍ରାତୃତ୍ୱବୋଧ ରହିବା ଆବଶ୍ୟକ । ଈଶ୍ୱର ବିଶ୍ୱାସ ବ୍ୟକ୍ତି ଭିତରେ ମହତ୍ତର ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା ସହ ଏକ ସମ୍ବେଦନଶୀଳ ହୃଦୟ ବି

ଆଣିଥାଏ, ପରିଣାମତଃ ମାନବିକତାବାଦ ଏକ ଆଦର୍ଶ ହେବା ସମ୍ଭବ । ଈଶ୍ୱରଙ୍କୁ ବାଦ୍ ଦେଲେ ମାନବବାଦରେ ଏକ ଉଚ୍ଚତର ପ୍ରେରଣା ରହିବା ସମ୍ଭବ ହେବ ନାହିଁ । ସୁତରାଂ ଈଶ୍ୱର କୈନ୍ଦ୍ରିକ ମାନବିକତାବାଦ ମାନବକୈନ୍ଦ୍ରିକ ମାନବବାଦ ଠାରୁ ମହତ୍ତର ଜଣାପଡେ । ଦୁଃସ୍ଥ ଜନଗଣଙ୍କ ପ୍ରତି ଏକ ସମ୍ବେଦନଶୀଳ ମନୋଭାବ ପୋଷଣ କରିବା ବା ପୃଥିବୀର ପ୍ରତ୍ୟେକ ବ୍ୟକ୍ତିକୁ ସମ୍ମାନ କରିବା ମହତ୍ତର ଜୀବନାଦର୍ଶ କହିଲେ ଅତ୍ୟୁକ୍ତି ହେବନାହିଁ । ଜଣେ ଈଶ୍ୱରଙ୍କ ଅସ୍ତିତ୍ୱ ବିଶ୍ୱାସ କରୁ ବା ନକରୁ ଏହି ମୂଲ୍ୟଚୟକୁ ଗୁରୁତ୍ୱ ଦେବା ମହତ୍ତ୍ୱପୂର୍ଣ୍ଣ । ତେବେ ଈଶ୍ୱର ବିଶ୍ୱାସ ଦ୍ୱାରା ପରିଚାଳିତ ହୋଇ ଯଦି ବ୍ୟକ୍ତି ଭିତରେ ଏକ ମହତ୍ତର ଭାବନା ସୃଷ୍ଟି ହେଉଛି ତେବେ ତାହା ଗ୍ରହଣଯୋଗ୍ୟ । କିନ୍ତୁ  ବାସ୍ତବ ସ୍ଥିତିରେ ଆମ ସଂସାରରେ ଏହା ହୁଏ ନାହିଁ ବା ଇତିହାସରେ ଏହା ହୋଇନାହିଁ । ବରଂ ଅପର ପକ୍ଷରେ ଧର୍ମ-ଧର୍ମ ଭିତରେ ସର୍ବଦା ବିଦ୍ୱେଷ ଲାଗି ରହିଛି । ନିଜ ଈଶ୍ୱର ଓ ନିଜ ପୂଜାପାଠକୁ ପବିତ୍ର ମନେକରି ଅନ୍ୟର ପୂଜାପାଠକୁ ଧ୍ୱଂସ କରିବାର ମାନସିକତା ସର୍ବଦା ରହିଆସିଛି । ଏପରିକି ଧର୍ମ ନାମରେ ଯୁଦ୍ଧ ହୋଇଛି, ନିଜ ଈଶ୍ୱରଙ୍କ ପ୍ରତି କର୍ତ୍ତବ୍ୟ ଭାବନାରୁ ଅନ୍ୟ ଧର୍ମ ବା ବିଶ୍ୱାସର ଲୋକମାନଙ୍କୁ ନିର୍ଯାତନା ଦିଆଯାଇଛି । ଧର୍ମ ଓ ଈଶ୍ୱର ନାମରେ ଧରଣୀ ବହୁବାର ରକ୍ତରଂଜିତ ହେବାରେ ଲାଗିଛି । ଯେଉଁଠି ବିଶ୍ୱାସ ପ୍ରାଧାନ୍ୟ ନିଏ ଧର୍ମଗ୍ରନ୍ଥକୁ ପବିତ୍ର ମନେ କରାଯାଏ ଓ ଧର୍ମର ବାଣୀ ଶାଶ୍ୱତ ବୋଲି ଭାବନା ଆସେ ସେଠାରେ ଧର୍ମର ନୈତିକତା ଅନୁଜ୍ଞା ବା ଆଦେଶରେ ପରିଣତ ହୁଏ । ଏହା ମୁକ୍ତ ଚିନ୍ତାକୁ ପ୍ରଶ୍ରୟ ଦିଏ ନାହିଁ, ବ୍ୟକ୍ତି ମର୍ଯ୍ୟାଦାବୋଧକୁ ନ୍ୟୂନ କରିଥାଏ ଓ ମାନବିକ ଦୁଃଖ ଦୁର୍ଦ୍ଦଶାପ୍ରତି ସ୍ପର୍ଶକାତରହୀନ ମନୋଭାବ ଆଣିଥାଏ । ବରଂ ମାନବବାଦୀ ଦୃଷ୍ଟିଭଙ୍ଗୀ ବିଚାରଶୀଳତାକୁ ପ୍ରାଧାନ୍ୟ ଦେଇ ବ୍ୟକ୍ତିମର୍ଯ୍ୟାଦାବୋଧକୁ ଏକ ସଭ୍ୟ ଦୃଷ୍ଟିର ପ୍ରତିଫଳନ ଭାବେ ନେଇଥାଏ । ଏହା ବ୍ୟକ୍ତି ଭିତରେ ଆତ୍ମ-ନିରୀକ୍ଷଣକୁ ଗୁରୁତ୍ୱ ଦେଇଥାଏ । କୌଣସି ଈଶ୍ୱରଙ୍କ ପ୍ରତି କର୍ତ୍ତବ୍ୟ ସଂପାଦନ ଯୋଗୁଁ ଜଣେ ନୀତିବାନ ହେବା ସମ୍ଭବ । ତେବେ ବ୍ୟକ୍ତିକୁ ଏକ ନୈତିକ ଜୀବନ ପାଇଁ ଏହା ଯେତିକି ପ୍ରେରଣା ଦେବ ନାହିଁ; ନୈତିକ ଆଚରଣ ଯେ ସଭ୍ୟ ଜୀବନଧାରାର ଅଙ୍ଗ ବିଶେଷ ଓ ଏହା ଦ୍ୱାରା ସାମାଜିକ ସଂହତି ଓ ଗୁଣାତ୍ମକ ଜୀବନ ସମ୍ଭବ ଏହି ବିଶ୍ୱାସ ନୈତିକ ଆଚରଣ ପାଇଁ ବ୍ୟକ୍ତି ପ୍ରତି ଅଧିକ ପ୍ରେରଣାଦାୟକ ହେବ । ଈଶ୍ୱର କୈନ୍ଦ୍ରିକ ମାନବିକତାବାଦ ଭିନ୍ନ ଜଗତର ସ୍ୱପ୍ନ ସହ ସଂଶ୍ଳିଷ୍ଟ ହୋଇଥାଏ, ଇହଜୀବନ ଅପେକ୍ଷା ପାରଲୌକିକ ସ୍ଥିତିକୁ ଗୁରୁତ୍ୱ ଦେଇଥାଏ ଓ ବିଚାରଶୀଳତା ପରିବର୍ତ୍ତେ ଧାର୍ମିକ ବିଶ୍ୱାସ, ଅନୁଜ୍ଞା, ଅନ୍ତଃପ୍ରଜ୍ଞା ପରି ରହସ୍ୟମୟ ପ୍ରେରଣା ପ୍ରତି ଉନ୍ମୁକ୍ତ ରହିଥାଏ । ବସ୍ତୁତଃ ବହୁ ସମୟରେ ଏହା ରୂଢ଼ିବାଦ ଓ ରୁଦ୍ଧ ମାନସିକତାରେ ପରିଣତ ହୋଇଥାଏ । ଅପରପକ୍ଷରେ ମାନବବାଦ ଏହାର ତାତ୍ତ୍ୱିକ ପୃଷ୍ଠଭୂମିରେ ମୁକ୍ତ ଚିନ୍ତନ, ବିଚାରଶୀଳତାର ପ୍ରାଧାନ୍ୟ ଓ ସାର୍ବଜନୀନ ଜୀବନାଦର୍ଶକୁ ପ୍ରାଧାନ୍ୟ ଦେଇଥାଏ । ସୁତରାଂ ମାନବିକତାବାଦର ମହତ୍ତର ଆବେଦନ ସତ୍ତ୍ୱେ ଏହାର ଅନ୍ତର୍ନିହିତ ଦୁର୍ବଳତା ଏହାର ସାର୍ବଜନୀନ ଆବେଦନକୁ ନ୍ୟୂନ କରିଥାଏ । ଅପର ପକ୍ଷରେ ମାନବବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳତା ଓ ନୈତିକ କର୍ତ୍ତବ୍ୟର ବାସ୍ତବ ଉପଯୋଗିତାକୁ ଗୁରୁତ୍ୱ ଦେଉଥିବାରୁ ଏହାର ଆବେଦନ ସାର୍ବଜନୀନ ହୋଇଥାଏ ।

ମାନବକୈନ୍ଦ୍ରିକ ଜୀବନଦର୍ଶନ ଅନୁଯାୟୀ ପ୍ରତ୍ୟେକ  ମନୁଷ୍ୟ ଏକ ମନସ୍ତତ୍ତ୍ୱୀୟ ବ୍ୟକ୍ତିସତ୍ତା । ପ୍ରତ୍ୟେକ ବ୍ୟକ୍ତି ଭିତରେ ଭୟ, ଆବେଗ, ପ୍ରବୃତ୍ତି, ବିଚାରଶୀଳତା ଇତ୍ୟାଦି ରହିଛି । ବ୍ୟକ୍ତିର ପ୍ରବୃତ୍ତି ଅଧିକାରାତ୍ମକ ବା ସ୍ୱାର୍ଥକୈନ୍ଦ୍ରିକ ହୋଇପାରେ ଓ ସୃଜନାତ୍ମକ ମଧ୍ୟ ହୋଇପାରେ । ସେହିପରି ବ୍ୟକ୍ତିର ବୁଦ୍ଧି ମହତ୍ତର ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇପାରେ

କିମ୍ବା ସ୍ୱାର୍ଥକୈନ୍ଦ୍ରିକ ଓ ଏପରିକି ମନ୍ଦ ଦିଗରେ ଅଭିପ୍ରେତ ହୋଇପାରେ । ପୁନଶ୍ଚ ମଣିଷ ଭିତରେ ଯେଉଁଭଳି ଯାନ୍ତବ ଆବେଗ ରହିଛି, ସେହିପରି ମହତର ଅନୁରାଗ ମଧ୍ୟ ରହିଛି । ବ୍ୟକ୍ତି ଭିତରେ ସୃଜନଶୀଳ ଓ ମହତ୍ତର ଅନୁରାଗ ସୃଷ୍ଟି କରାଯାଇପାରେ କିମ୍ବା ବ୍ୟକ୍ତିକୁ ସ୍ୱାର୍ଥାନ୍ୱେଷୀ ଓ ପ୍ରତିକ୍ରିୟାଶୀଳ ମଧ୍ୟ କରାଯାଇପାରେ । ବ୍ୟକ୍ତିର ଜୀବନଦୃଷ୍ଟିକୁ ପ୍ରଭାବିତ କରିବାରେ ସାମାଜିକ ପରିବେଶର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପାରିବାରିକ ଓ ସାମାଜିକ ପରିବେଶ, ଶିକ୍ଷା, ଗଣମାଧ୍ୟମ ପରି ବହୁସ୍ତରର ପ୍ରଭାବ ବ୍ୟକ୍ତି ଉପରେ ପଡିଥାଏ । ବ୍ୟକ୍ତିର ଜୀବନ ଦୃଷ୍ଟି ବହୁ ଭାବରେ ଏସବୁ ଦ୍ୱାରା ପ୍ରଭାବିତ ହୋଇପାରେ । ଏକ ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ, ସମ୍ବେଦନଶୀଳ ଜୀବନଦୃଷ୍ଟି, ନୈତିକ ଜୀବନ ପ୍ରତି ଅନୁରାଗ ସୃଷ୍ଟି କରିବାରେ ସାମାଜିକ ପରିବେଶର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ଠିକ୍ ସେହିପରି ଏକ ଅନୁନ୍ନତ ପରିବେଶରେ ବ୍ୟକ୍ତି ଭିତରେ ଅନ୍ୟମାନଙ୍କ ପ୍ରତି ଘୃଣା ଓ ବିଦ୍ୱେଷର ଆବେଗ ସୃଷ୍ଟି କରାଯାଇପାରେ । ଭୟଙ୍କର ପ୍ରତିଯୋଗିତା ମୂଳକ ପରିବେଶରେ ବା ଏକ ଦୁର୍ନୀତିପୂର୍ଣ୍ଣ ସାମାଜିକ ଦୃଶ୍ୟପଟରେ ବ୍ୟକ୍ତି ଅଧିକ ସ୍ୱାର୍ଥକୈନ୍ଦ୍ରିକ ହେବା ସହଜ ହୋଇଥାଏ । ସାମାଜିକ ବୈଷମ୍ୟ ଯେଉଁଠି ସାମାଜିକ ଜୀବନର ପରମ୍ପରା ହୋଇଥାଏ ସେଠାରେ ବ୍ୟକ୍ତି ବହୁ ସମୟରେ ହୀନମନ୍ୟତାର ଶିକାର ହୋଇ ସମାଜ ପ୍ରତି ଏକ ପ୍ରତିହିଂସା ମୂଳକ ମନୋଭାବ ସୃଷ୍ଟି କରିପାରେ । ଧାର୍ମିକ ମୌଳବାଦ ବା ସାଂପ୍ରଦାୟିକତା ବ୍ୟକ୍ତି ଭିତିରେ ମହତ୍ତର ଆବେଗ ସୃଷ୍ଟି କରିବା ପରିବର୍ତ୍ତେ ଧାର୍ମିକ ବିଦ୍ୱେଷ ସୃଷ୍ଟି କରିଥାଏ । ସେହିପରି ଏକ ଭୟଙ୍କର ଆର୍ଥିକ ବୈଷମ୍ୟପୂର୍ଣ୍ଣ ପରିବେଶ ବ୍ୟକ୍ତି ଭିତରେ ହିଂସା, ପ୍ରତିଶୋଧମୂଳକ ମନୋଭାବ ମଧ୍ୟ ଆଣିଥାଏ । ମୋଟ ଉପରେ ସାମାଜିକ ବ୍ୟବସ୍ଥା ଉନ୍ନତ ହେଲେ ତାହା ବ୍ୟକ୍ତି ମାନସିକତାକୁ ମନ୍ଦ ଦିଗରେ ପ୍ରଭାବିତ ମଧ୍ୟ କରିବାର ସମ୍ଭାବନା ଥାଏ । ଗୁଣାତ୍ମକ ଜୀବନଶୈଳୀର ବିକାଶ ପାଇଁ ସାମାଜିକ ପରିବେଶର ନିର୍ଣ୍ଣାୟକ ଭୂମିକା ରହୁଥିବାରୁ ସମାଜରେ କିପରି ମାନବବାଦୀ ଆଦର୍ଶର ପରିବେଶ ଅଣାଯାଇପାରିବ ତାହା ସମାଜ ବିଜ୍ଞାନ, ନୀତିଶାସ୍ତ୍ର, ଦର୍ଶନ ପରିସରରେ ଆଲୋଚିତ ହେବା ଦେଖାଯାଏ । ସମାଜରୁ ଉତ୍କଟ ଦାରିଦ୍ର୍ୟ, ବୈଷମ୍ୟ, ନିରକ୍ଷରତା, ଜାତିଗତ ବିଦ୍ୱେଷ, ସାଂପ୍ରଦାୟିକ ଦୃଷ୍ଟିଭଙ୍ଗୀ, ସାମାଜିକ ଅନ୍ୟାୟ, ଆର୍ଥିକ ଶୋଷଣ ଇତ୍ୟାଦିକୁ ଦୂର କରାଯାଇପାରିଲେ ସାମାଜିକ ଜୀବନର ଯେ ଗୁଣାତ୍ମକ ବିକାଶ ହେବ ଏହା ଆଶା କରାଯାଏ, କାରଣ ଏ ସବୁ ସଭ୍ୟ ଓ ଉନ୍ନତ ଜୀବନଧାରାର ପରିପନ୍ଥୀ ମନେ ହୁଏ । ପୁନଶ୍ଚ ମାନସିକ ଦାସତ୍ୱ, ଅଜ୍ଞତା ଓ ଚମତ୍କାରିତା ଇତ୍ୟାଦି ମଧ୍ୟ ସଭ୍ୟ ଜୀବନଧାରାର ପରିପନ୍ଥୀ । ଯାହା ସଭ୍ୟ ଓ ଗୁଣାତ୍ମକ ଜୀବନର ପରିପନ୍ଥୀ ତାହା ମାନବବାଦର ପ୍ରତିକୂଳ । ଅପର ପକ୍ଷରେ ମୁକ୍ତ ମନ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳ ଅନୁଶୀଳନ, ଜ୍ଞାନର କ୍ରମ ବିକାଶ, ପରିବେଶ ଉପରେ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ଓ ଉନ୍ନତ ସାମାଜିକ ବିଧାନ ଉପରେ ମାନବବାଦ ଗୁରୁତ୍ୱ ପ୍ରଦାନ କରିଥାଏ । ଅର୍ଥାତ୍ ମାନବବାଦୀ ଜୀବନଧାରା ବ୍ୟକ୍ତି ଭିତରେ ବିଚାରଶୀଳ ଦୃଷ୍ଟି, ସମ୍ବେଦନଶୀଳ ଅନୁରାଗ ଓ ସମାଜ ପ୍ରତି ଉତ୍ତରଦାୟିତ୍ୱ ଭାବ ସୃଷ୍ଟି କରିଥାଏ । ଜୀବନ ପ୍ରତି ଏହି ସକାରାତ୍ମକ ଦୃଷ୍ଟିଭଙ୍ଗୀ ଯୋଗୁଁ ହିଁ ସଭ୍ୟତାର କ୍ରମବିକାଶ ହୋଇଛି । ଜ୍ଞାନର ବିକାଶ ଘଟିଛି ଓ ସଭ୍ୟ ଜୀବନଧାରାର ସୈଦ୍ଧାନ୍ତିକ ଆବେଦନ ନେଇ ଅନ୍ତତଃ ବୌଦ୍ଧିକ ସ୍ତରରେ ବିଚାର ସୃଷ୍ଟି ହୋଇଛି । ମାନବବାଦ ମଣିଷର ଦୃଷ୍ଟିଭଙ୍ଗୀକୁ ଉନ୍ନତ କରିବା ସହ ସୃଜନଶୀଳତାର ବିକାଶ ଉପରେ ଗୁରୁତ୍ୱ ଆରୋପ କରିଆସିଛି । ଉପଯୁକ୍ତ ଶିକ୍ଷା ଓ ସାମାଜିକ ପରିବେଶ ମାଧ୍ୟମରେ ବ୍ୟକ୍ତିର ସୃଜନଶୀଳତାକୁ ବୃଦ୍ଧି କରାଯାଇ ପାରିବ । ଅନୁକୂଳ ପରିବେଶ ପାଇଲେ ବ୍ୟକ୍ତିର ସହଜାତ ପ୍ରତିଭା ଓ ସୃଜନଶୀଳତାର ବିକାଶ ହେବା ସମ୍ଭବ ହେବ ।

ଅନ୍ୟଥା ବ୍ୟକ୍ତିର ସାମର୍ଥ୍ୟ ମଧ୍ୟ ମନ୍ଦ ଦିଗରେ ବିନିଯୋଗ ହୋଇ ସମାଜ ପ୍ରତି କ୍ଷତିକାରକ ହେବ । କେତେକ ବିଚକ୍ଷଣ ଓ ସୃଜନଶୀଳ ବ୍ୟକ୍ତି ମନ୍ଦ ଦିଗରେ ପରିଚାଳିତ ହେଲେ ସନ୍ତ୍ରାସବାଦୀ ହେବା, ହିଂସାକୁ ଜୀବନଧାରାରେ ମିଶାଇ ଦେବା ବା ଅନ୍ୟକୁ ଆକ୍ରମଣ କରି ବିକାରଗ୍ରସ୍ତ ଆନନ୍ଦ ଅନୁଭବ କରିବାର ପରିବେଶ ମଧ୍ୟ ଆସିପାରିବ । ଯଦି ବ୍ୟକ୍ତି କୁପ୍ରରୋଚିତ ହୋଇ ଭାବପ୍ରବଣ ହୁଏ ତେବେ ତାର ସକଳ ମହନୀୟ ସ୍ୱଭାବ ଓ ସୂକ୍ଷ୍ମ ଅନୁଭବ ଧ୍ୱଂସ ପାଇଥାଏ । ମାନବିକତା ବିରୋଧୀ କୌଣସି ମନ୍ଦାଦର୍ଶରେ ଅନୁପ୍ରାଣିତ ବ୍ୟକ୍ତି କଷ୍ଟସହିଷ୍ଣୁ, ତ୍ୟାଗୀ ହୋଇ ମଧ୍ୟ ହିଂସା, ପ୍ରତିହିଂସା, ନାରକୀୟ କାର୍ଯ୍ୟ କରିବାରେ କୌଣସି ବିବେକର ଦଂଶନ ପାଇନଥାଏ । ସୁତରାଂ ମାନବବାଦ ବ୍ୟକ୍ତିର ଜୀବନାଦର୍ଶକୁ ସୃଜନଶୀଳତା ଓ ସମାଜ ପ୍ରତି କର୍ତ୍ତବ୍ୟବୋଧ ଦିଗରେ ପରିଚାଳିତ କରିଥାଏ । ବ୍ୟକ୍ତି ଭିତରେ ନୈତିକ ଦୃଷ୍ଟିଭଙ୍ଗୀ ପ୍ରତି ଏକ ବିଚାରଶୀଳ ଉତ୍ତରଦାୟିତ୍ୱବୋଧ ସୃଷ୍ଟି କରିବାକୁ ମାନବବାଦ ଗୁରୁତ୍ୱ ଦେଇଥାଏ । ବ୍ୟକ୍ତିକୁ ଅଧିକ ସୃଜନଶୀଳ, ନୈତିକ ଓ ସମ୍ବେଦନଶୀଳ କରିବା ସହ ସାମାଜିକ ବ୍ୟବସ୍ଥାକୁ ଉନ୍ନତ, ନ୍ୟାୟପୂର୍ଣ୍ଣ ଓ ସମତାପୂର୍ଣ୍ଣ କରିବା ପାଇଁ ବ୍ୟକ୍ତି ସୁବୁଦ୍ଧିସଂପନ୍ନ ହେବା ଆବଶ୍ୟକ । ଏଥିପାଇଁ ସାମାଜିକ ପରିବେଶ, ଶିକ୍ଷା ବ୍ୟବସ୍ଥା, ପାରିବାରିକ ଜୀବନ ଇତ୍ୟାଦି ମଧ୍ୟ ଉନ୍ନତ ହେବା ଦରକାର । ମୋଟ ଉପରେ ବ୍ୟକ୍ତି ଓ ଗୋଷ୍ଠୀ ଉଭୟ ଭିତରେ ଏକ ସୁସଂହତ ସମ୍ବନ୍ଧ ରକ୍ଷା କରି ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିବା ମାନବବାଦର ଏକ ମୁଖ୍ୟ ଆଭିମୁଖ୍ୟ ଅଟେ ।

ମାନବବାଦ ଏକ ଗୁଣାତ୍ମକ ଜୀବନ ଉପରେ ପ୍ରାଧାନ୍ୟ ଦିଏ ଓ ଏକ ଗୁଣାତ୍ମକ ଜୀବନ ସାମାଜିକ ବ୍ୟବସ୍ଥା ଉପରେ ଅନେକାଂଶରେ ନିର୍ଭରଶୀଳ ହୋଇଥାଏ । ବସ୍ତୁତଃ ସାମାଜିକ ପୃଷ୍ଠଭୂମିର ଏ କ୍ଷେତ୍ରରେ ନିର୍ଣ୍ଣାୟକ ଭୂମିକା ରହିଥାଏ । ସମାଜର ରାଜନୈତିକ ଦୃଶ୍ୟପଟ, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ଭାବଧାରା ଓ ପରମ୍ପରା ସାମାଜିକ ପରିବେଶକୁ ଉନ୍ନତ କରିବାରେ ସହାୟକ ହୋଇଥାଏ । ଯେଉଁ ରାଜନୈତିକ ବ୍ୟବସ୍ଥା ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ଉନ୍ନତ ନାଗରିକ ଶୃଙ୍ଖଳା, ଧର୍ମ ନିରପେକ୍ଷ ଆଭିମୁଖ୍ୟ, ମାନବିକ ଅଧିକାରକୁ ଗୁରୁତ୍ୱ ଦିଏ ତାହା ଏକ ଉନ୍ନତ ରାଜନୈତିକ ବ୍ୟବସ୍ଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଏ ସବୁ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାର ଅପରିହାର୍ଯ୍ୟ ଅଙ୍ଗ ମନେହୁଏ । ଗଣତନ୍ତ୍ରକୁ କେବଳ ଏକ ଶାସନ ପଦ୍ଧତି ଭିତରେ ସୀମିତ ନରଖି ବ୍ୟାପକତର ଅର୍ଥରେ ଏକ ଜୀବନଶୈଳୀ ଭାବରେ ନିଆଯାଇପାରେ । ଏହାକୁ ଏହିପରି ଏକ ବ୍ୟାପକ ପୃଷ୍ଠଭୂମିରେ ବିଚାର କଲେ ଗଣତନ୍ତ୍ରର ଈପ୍ସିତ ଲକ୍ଷ୍ୟ ଭିତରେ ଏହି ସବୁ ଲକ୍ଷଣ ଗୁଡିକ ସନ୍ନିହିତ ଥିବା ଜଣାପଡ଼େ । ସେହିପରି ଗୋଟିଏ ଅର୍ଥନୈତିକ ବ୍ୟବସ୍ଥା ଯଦି ସମାଜରେ ଶୋଷଣ, ବୈଷମ୍ୟ, ଧନୀ-ଦରିଦ୍ର ଭିତରେ ବିଶାଳ ପ୍ରଭେଦ ସୃଷ୍ଟି କରୁଥାଏ, ତେବେ ତାହାର ଯାହା କିଛି ସୁଗୁଣ ଥିଲେ ବି ତାହା ପ୍ରକାରାନ୍ତରେ ଅନ୍ୟାୟପୂର୍ଣ୍ଣ ଅଟେ । ସମାଜରେ ପ୍ରତ୍ୟେକ ବ୍ୟକ୍ତି ଯଦି ତାର ଜୀବନର ସକଳ ଆବଶ୍ୟକତାକୁ ପୂରଣ କରିବା ସହ ତାର କର୍ମସଂସ୍ଥାନ ଭିତର ଦେଇ ସ୍ୱାବଲମ୍ବୀ ହୁଏ ଓ ତାର ବ୍ୟକ୍ତିତ୍ୱର ସମୁଚିତ ବିକାଶର ସୁଯୋଗ ଲାଭ କରେ ତେବେ ତାହା ଏକ ଉନ୍ନତ ବ୍ୟବସ୍ଥା ମନେ ହୁଏ । କର୍ମର ମର୍ଯ୍ୟାଦା ରହିବା ଓ କୌଣସି କାର୍ଯ୍ୟ ସମାଜ ଦୃଷ୍ଟିରେ ନ୍ୟୂନ ବିବେଚିତ ନହେବା ଆର୍ଥିକ ବ୍ୟବସ୍ଥାର ମାନବିକ ଦିଗ ଅଟେ । ଯେଉଁଠି ଏହିପରି ସୁସ୍ଥ ପରିବେଶ ଥାଏ ଓ ବ୍ୟକ୍ତି ତାର ସାମର୍ଥ୍ୟ ନେଇ ସମାଜରେ କର୍ମସଂସ୍ଥାନ ପାଏ ଓ ଶୋଷିତ ହୁଏ ନାହିଁ ତାହା ଏକ ବାଂଛନୀୟ ବ୍ୟବସ୍ଥା ଅଟେ । ସେହିପରି ସମାଜର ସାଂସ୍କୃତିକ ପରିବେଶ ଭିତରେ ଯଦି ବ୍ୟକ୍ତି କୌଣସି ତାରତମ୍ୟ ବା ଭେଦଭାବର ଶିକାର ହୁଏ ନାହିଁ

ଓ ଜଣେ ମର୍ଯ୍ୟାଦାବାନ ବ୍ୟକ୍ତି ଭାବେ ସ୍ୱୀକୃତ ହେଉଥାଏ, ତେବେ ତାହା ଏକ ଉନ୍ନତ ବ୍ୟବସ୍ଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାତି, ଧର୍ମ, ଆଞ୍ଚଳିକତା, ଆର୍ଥିକ ସ୍ଥିତି ଇତ୍ୟାଦି ନିର୍ବିଶେଷରେ ବ୍ୟକ୍ତି ଯଦି ସମାଜରେ ସମ୍ମାନଜନକ ଭାବେ ଜୀବନ ବଞ୍ଚିବାର ଓ ନିଜ ସାମର୍ଥ୍ୟର ବିକାଶ କରାଇବାର ଅବକାଶ ଲାଭ କରେ ତାହା ଗୁଣାତ୍ମକ ଜୀବନ ବିକାଶ ଦିଗରେ ଅନୁକୂଳ ହୋଇଥାଏ । ଏ ସବୁର ଏକ ସମନ୍ୱିତ ପ୍ରଭାବ ବ୍ୟକ୍ତିର ଜୀବନଧାରାକୁ ପ୍ରଭାବିତ କରିଥାଏ । ସମାଜର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଦୃଶ୍ୟପଟ ଯେ ବ୍ୟକ୍ତିର ସାମାଜିକ ସ୍ଥିତି ଓ ଜୀବନଧାରଣ କ୍ଷେତ୍ରରେ ଅନେକାଂଶରେ ନିର୍ଣ୍ଣାୟକ ଭୂମିକା ନେଇଥାଏ ଏହା ମାନବବାଦ ଗ୍ରହଣ କରେ । ଭାଗ୍ୟ, କର୍ମଫଳ, ପୂର୍ବନିର୍ଦ୍ଦିଷ୍ଟବାଦ ଇତ୍ୟାଦି ବ୍ୟକ୍ତିର ଜୀବନକୁ ନିୟନ୍ତ୍ରିତ କରେ ନାହିଁ ବରଂ ସାମାଜିକ, ଶୈକ୍ଷିକ ଓ ସାଂସ୍କୃତିକ ପୃଷ୍ଠଭୂମି ହିଁ ବ୍ୟକ୍ତିର ଜୀବନଧାରାକୁ ପ୍ରଭାବିତ କରିଥାଏ । ମାନବବାଦ ଭାଗ୍ୟ, କର୍ମଫଳ ଇତ୍ୟାଦି ଆଧିଦୈବିକ ତତ୍ତ୍ୱକୁ ଗ୍ରହଣ କରେ ନାହିଁ ବରଂ ସାମାଜିକ ପରିବେଶ ଓ ଘଟଣା ପ୍ରବାହକୁ ଗୁରୁତ୍ୱ ଦେଇଥାଏ । ବ୍ୟକ୍ତିର ନୀତିବୋଧ, ସମାଜ ପ୍ରତି ଉତ୍ତରଦାୟିତ୍ୱ, କର୍ମସଂସ୍କୃତି ଇତ୍ୟାଦି ସାମାଜିକ ପରିସ୍ଥିତି ଓ ପରିବେଶ ଦ୍ୱାରା ନିୟନ୍ତ୍ରିତ ଓ ପ୍ରଭାବିତ ହୋଇଥାଏ । ଯେଉଁଠି ସାମାଜିକ ପରିବେଶ ଉନ୍ନତ, ସେଠାରେ ବ୍ୟକ୍ତିଚେତନା ଉନ୍ନତ ହେବାର ସମ୍ଭାବନା ଅଧିକ; ଅପର ପକ୍ଷରେ ଯେଉଁଠି ସାମାଜିକ ପରିବେଶ ଅନୁନ୍ନତ ସେଠାରେ ଜୀବନ ଧାରଣର ମାନ ତୁଳନାତ୍ମକ ଭାବରେ ନ୍ୟୁନ ହେବା ସାଧାରଣ ଘଟଣା ଅଟେ । ପୂର୍ବୋକ୍ତ ପରିବେଶରେ ଆଇନ ପ୍ରତି ସମ୍ମାନ, ନାଗରିକ ଶୃଙ୍ଖଳାବୋଧ, କର୍ମ ସଂସ୍କୃତି ଉଚ୍ଚମାନର ହୋଇଥାଏ ଅଥଚ ଶେଷୋକ୍ତ କ୍ଷେତ୍ରରେ ଏ ସବୁର ଘୋର ଅଭାବ ସାଧାରଣ ଘଟଣା ଅଟେ । ତେବେ ଗୋଟିଏ ସାମାଜିକ ବ୍ୟବସ୍ଥା ଉନ୍ନତ, ନ୍ୟାୟପୂର୍ଣ୍ଣ ବା ଅଧିକ ମାନବିକ ହେବା ମାନବିକ ଉଦ୍ୟମ ଓ ଘଟଣା ପ୍ରବାହର ପରିଣାମ ଅଟେ । ମଣିଷ ହିଁ ବ୍ୟବସ୍ଥାକୁ ସଚେତନତା ଦ୍ୱାରା ଉନ୍ନତ କରିପାରେ; ସଚେତନ ପ୍ରୟାସର ଅଭାବରେ ଏହା ଅନୁନ୍ନତ ରହିଥାଏ । କୌଣସି ଧର୍ମ, ଈଶ୍ୱର ବା ଆଧିଦୈବିକ ସତ୍ତା ବା ଶକ୍ତିର ଏଥିରେ କୌଣସି ଭୂମିକା ନଥାଏ । ମାନବବାଦ ସବୁ କିଛିକୁ ମଣିଷ ହାତର ପରିଣାମ ଭାବେ ନିଏ । ମଣିଷ ହିଁ ତାର ସଂସାର ଓ ସମାଜକୁ ସୁନ୍ଦର, ମହତ୍ତର ଓ ପ୍ରୀତିପୂର୍ଣ୍ଣ କରିବାକୁ ସମର୍ଥ, ଏହା ହିଁ ମାନବବାଦର ପ୍ରତିପାଦ୍ୟ ସିଦ୍ଧାନ୍ତ ଅଟେ ।

ଯେଉଁ ଯୁଗରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଗଣତାନ୍ତ୍ରିକ ଜୀବନଶୈଳୀ, ମାନବିକ ମହତ୍ତ୍ୱ ପରି ମୂଲ୍ୟଚୟର କୌଣସି ଭାବନା ସୃଷ୍ଟି ହୋଇନଥିଲା ସେହି ପରିବେଶରେ ସାମାଜିକ ଜୀବନ ଅଧିକ ବିପଦ ସଂକୁଳ ଥିଲା । ରାଜତନ୍ତ୍ର ଯୁଗରେ ରାଜ୍ୟ ରାଜ୍ୟ ମଧ୍ୟରେ ଯୁଦ୍ଧ, ଲୁଣ୍ଠନ ସାଧାରଣ ଘଟଣା ଥିଲା । ସାମନ୍ତବାଦୀ ସମାଜ ବ୍ୟବସ୍ଥାରେ ଆର୍ଥିକ ଶୋଷଣ, ଅତ୍ୟାଚାର, ଧାର୍ମିକ କୁସଂସ୍କାର ଜନିତ ନାନା ବୀଭତ୍ସ କାର୍ଯ୍ୟ ହେଉଥିଲା । ରାଜତନ୍ତ୍ର ତଥା ସାମନ୍ତବାଦ ଯେଉଁ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ବାତାବରଣ ସୃଷ୍ଟିକରିଥିଲା ସେଥିରେ ବ୍ୟକ୍ତିର କୌଣସି ମହତ୍ତ୍ୱ ନଥିଲା । ଏହି ପରିବେଶରେ କୁସଂସ୍କାର, ଅନ୍ଧବିଶ୍ୱାସ, ନାରୀ ନିର୍ଯ୍ୟାତନା, ସାମାଜିକ ଭେଦଭାବ ସମାଜରେ ଭରପୂର ହୋଇରହିଥିଲା । ନାନା ରୋଗ ଓ ମହାମାରୀରେ ଗଣମୃତ୍ୟୁ ଏକ ଭୟାନକ ସ୍ଥିତି ସୃଷ୍ଟି କରୁଥିଲା । ନିରାପଦବିହୀନ ପରିବେଶ ଯୋଗୁଁ ପ୍ରତି ସ୍ତରରେ ଜୀବନରେ ଭୟର୍ ରାଜୁତି ରହିଥିଲା । ସୁତରାଂ ସେ ଯୁଗର ମାନସିକତାରେ 'ଜୀବନ ଦୁଃଖପୂର୍ଣ୍ଣ' ବୋଲି ବିଚାର ଦାର୍ଶନିକ ଚିନ୍ତନର ଏକ ପ୍ରତିପାଦ୍ୟ ସିଦ୍ଧାନ୍ତ ରହିଥିଲା । ମନସ୍ତାତ୍ତ୍ୱିକ ସ୍ତରରେ ଦୁଃଖପୂର୍ଣ୍ଣ ସ୍ଥିତିରୁ ପରିତ୍ରାଣ ପାଇଁ ମୁକ୍ତି, ମୋକ୍ଷ, ସ୍ୱର୍ଗବାସ, ଈଶ୍ୱର ଉପଲବ୍ଧି ପରି କେତେ କେତେ କାଳ୍ପନିକ ଚିନ୍ତା ଧାର୍ମିକ ଦୃଷ୍ଟିର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଥିଲା ।

କାଳକ୍ରମେ ଜ୍ଞାନର ବିକାଶ ଦ୍ୱାରା ସାମାଜିକ ସ୍ଥିତିରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ଧର୍ମର କାଳ୍ପନିକ ସିଦ୍ଧାନ୍ତ ଗୁଡ଼ିକ ବୈଜ୍ଞାନିକ ଜ୍ଞାନର ମାନଦଣ୍ଡରେ ଅପାଂକ୍ତେୟ ହେଲା । ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବର ସୂତ୍ରପାତ ହେଲା । ସାମନ୍ତବାଦ ଓ ସାମାଜିକ ବୈଷମ୍ୟ ବିରୁଦ୍ଧରେ ଆଲୋଡ଼ନ ଆସିଲା । ବହୁ ଘାତ, ପ୍ରତିଘାତ ଦେଇ ଗଣତନ୍ତ୍ର, ଗଣଶିକ୍ଷା, ମାନବିକ ମର୍ଯ୍ୟାଦା, ନାଗରିକ ଅଧିକାର, ଧର୍ମନିରପେକ୍ଷ ଜୀବନଦୃଷ୍ଟି, ସାମାଜିକ ନ୍ୟାୟ, ସମତା ଇତ୍ୟାଦି ପ୍ରଗତିଶୀଳ ମୂଲ୍ୟଚୟର ବିକାଶ ହେଲା । ଏ ସବୁ ଭାବନା ଓ ମୂଲ୍ୟଚୟର ଭିତ୍ତି ଉପରେ ମାନବବାଦ ସୁଦୃଢ଼ ଭିତ୍ତି ନେଲା । କାଳ୍ପନିକ ଦିଅଁ, ଦେବତା, ଈଶ୍ୱର, ସ୍ୱର୍ଗ, ମୁକ୍ତି, ମୋକ୍ଷର ଭାବନା ଗୁଡିକ ବୈଜ୍ଞାନିକ ଚିନ୍ତନ ପୃଷ୍ଠଭୂମିରେ କେବଳ 'ଆଈ ମା କାହାଣୀ' ବୋଲି ଭାବନା ସୃଷ୍ଟି ହେଲା । ହେତୁବାଦ ଜନିତ ତର୍କଶୀଳ ଅନୁଶୀଳନ ଦ୍ୱାରା ବାସ୍ତବ ଜ୍ଞାନର ମାନଦଣ୍ଡ ନିରୂପିତ ହେଲା । ବାସ୍ତବଜ୍ଞାନ ଓ କାଳ୍ପନିକ ବିଶ୍ୱାସ ଭିତରେ ପାର୍ଥକ୍ୟ ସୁସ୍ପଷ୍ଟ ହେଲା । ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ, ପୂଜା, ପ୍ରାର୍ଥନା, ବିପଦ ସମୟରେ ଦୈବୀ-ସାହାଯ୍ୟ ଇତ୍ୟାଦି ଏକ ପୁରାତନ ଜୀବନଶୈଳୀର ସନ୍ତକ ହୋଇ ରହିଲା । ଅଧିକନ୍ତୁ ମଣିଷ ଯେ ତାର ଭାଗ୍ୟର ନିୟନ୍ତା ଓ ସେ ତାର ସମାଜ ଓ ସଂସାରକୁ ଉତ୍ତମ ଦିଗରେ ପରିଚାଳିତ କରିପାରିବ ଏହା କାଳକ୍ରମେ ଚିନ୍ତା ସ୍ତରରେ ଗୃହୀତ ହେବାକୁ ଲାଗିଲା । ଏହି ଭାବନାର ଦିଗନ୍ତ ନାନା ଦିଗରେ ବିସ୍ତାର ଲାଭ କରିବା ଫଳରେ ବୈଚାରିକ ସ୍ତରରେ କ୍ରାନ୍ତିର ସୂତ୍ରପାତ ହେଲା । ଗୋଟିଏ ଈଶ୍ୱରକୈନ୍ଦ୍ରିକ ଓ ପାରଲୌକିକ ପ୍ରାପ୍ତି ଜନିତ ବିଶ୍ୱାସ ଠାରୁ ଏକ ମାନବକୈନ୍ଦ୍ରିକ ଇହଲୋକ ଜନିତ ଗୁଣାତ୍ମକ ଜୀବନ ପ୍ରତି ସଚେତନତା ପ୍ରକାଶ ପାଇଲା ।

ଉପସଂହାରରେ ଏହା କହିବା ଯଥାର୍ଥ ହେବ ଯେ ମାନବବାଦୀ ଜୀବନ-ଦର୍ଶନର ତିନୋଟି ମୌଳିକ ଆଧାର ହେଲା - (୧) ମୁକ୍ତ ମନ ଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, (୨) ବ୍ୟକ୍ତି ମର୍ଯ୍ୟାଦା ଜନିତ ଗଣତାନ୍ତ୍ରିକ ଜୀବନଶୈଳୀ ଓ (୩) ଧର୍ମ, ଈଶ୍ୱର ମୁକ୍ତ ନିରପେକ୍ଷ ନୀତିବୋଧ । ଏ ପ୍ରତ୍ୟେକର ପୁନଶ୍ଚ ନାନା ଦିଗନ୍ତ ରହିବା ସ୍ୱାଭାବିକ ମନେହୁଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରକୃତିର ସକଳ କାର୍ଯ୍ୟ ଓ ଜୀବନର ଘଟଣା ପ୍ରବାହକୁ ବସ୍ତୁନିଷ୍ଠ ଆଧାରରେ ବିଶ୍ଳେଷଣ କରିଥାଏ । ବିଜ୍ଞାନ ଯେଉଁ ସୈଦ୍ଧାନ୍ତିକ ତତ୍ତ୍ୱ ଉପରେ ଆଧାରିତ ତାହା ହେଲା, ବୈଜ୍ଞାନିକ ପ୍ରକୃତିବାଦ ବା ସ୍ୱଭାବବାଦ (scientific naturalism) । ଏହାର ତାତ୍ପର୍ଯ୍ୟ ହେଲା ପ୍ରକୃତିର ପ୍ରତ୍ୟେକ ଘଟଣା ପଶ୍ଚାତରେ ପ୍ରାକୃତିକ ଶୃଙ୍ଖଳା, କାର୍ଯ୍ୟକାରଣ ନିୟମ ଓ ପ୍ରାକୃତିକ ଏକରୂପତା (uniformity of nature) ବିଦ୍ୟମାନ । କୌଣସି ଘଟଣା ଅଲୌକିକ, ଆଧିଦୈବିକ ଓ ଈଶ୍ୱର ନିୟନ୍ତିତ ନୁହେଁ । ପ୍ରକୃତିର ଓ ସାମାଜିକ ଜୀବନର ସକଳ ଘଟଣା ପ୍ରବାହକୁ ବ୍ୟାଖ୍ୟା କରାଯିବା ସମ୍ଭବ ଓ ଏହି ବ୍ୟାଖ୍ୟା କୌଣସି ଦୈବୀ କାରଣ ଉପରେ ଆଧାରିତ ନୁହେଁ । ପ୍ରକୃତିରେ ଅନେକ ରହସ୍ୟ ରହିଛି, ଯାହା ଏବେ ବି ଆମ ଜ୍ଞାନର ପରିସରରେ ବୋଧଗମ୍ୟ ହୋଇନାହିଁ । ତେବେ କୌଣସି ଅଲୌକିକତା ବା ଚମତ୍କାରିତା ନାହିଁ ଯାହା ପ୍ରକୃତିର ନିୟମକୁ ଉଲଂଘନ କରିପାରିବ । ଜ୍ଞାନର ବିକାଶ ଯେତେ ଅଧିକ ହେଉଥିବ ପ୍ରକୃତିର ରହସ୍ୟଗୁଡ଼ିକ ସେତିକି ଉନ୍ମୋଚିତ ହୋଇ ଯାଉଥିବ । ସୁତରାଂ ଏକ ମୁକ୍ତ ମନ ଓ ବସ୍ତୁନିଷ୍ଠ ପ୍ରଣାଳୀ ଅବଲମ୍ବନରେ ଆମେ ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିବା ସମ୍ଭବ । ସେହିପରି ଗଣତନ୍ତ୍ର କେବଳ ଏକ ରାଜନୈତିକ ବ୍ୟବସ୍ଥା ନୁହେଁ, ଏହା ଏକ ଜୀବନଶୈଳୀ ଓ ମୂଲ୍ୟବୋଧ ଆଧାରିତ ସମାଜ ଦର୍ଶନ । ସମତା, ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀ ଇତ୍ୟାଦି ଏହାର ସ୍ୱୀକୃତ ଆଦର୍ଶ । ଏହି ଆଦର୍ଶଚୟ ଏ ଯୁଗର ସାର୍ବଜନୀନ ମୂଲ୍ୟଚୟ କହିଲେ ଅତ୍ୟୁକ୍ତି

ହେବନାହିଁ । ଯେଉଁ ସମାଜରେ ଏ ସବୁର ପରିପ୍ରକାଶ ଯେତେ ଅଧିକ ସେହି ସମାଜ ସେତିକି ସଭ୍ୟ ଓ ସେଠାରେ ଜୀବନର ଗୁଣାତ୍ମକ ମାନ ସେତିକି ଉନ୍ନତ । ସେହିପରି ନିରପେକ୍ଷ ନୀତିବୋଧ ଗୁଣାତ୍ମକ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ । ନାଗରିକ ଶୃଙ୍ଖଳାବୋଧ, କର୍ମସଂସ୍କୃତି, ଅନ୍ୟର ସୁଖ ଦୁଃଖ ପ୍ରତି ସମ୍ବେଦନଶୀଳ ମନୋଭାବ, ମହତ ସ୍ୱଭାବ, ସୃଜନଶୀଳ ଅନୁଭବ ଇତ୍ୟାଦି ଏହି ଭାବନା ସହ ସଂଶ୍ଳିଷ୍ଟ । ଯେଉଁ ବିଚାରବୋଧ ବ୍ୟକ୍ତିକୁ ଦରଦୀ, ମାନବିକ (humane) ଓ ସମ୍ବେଦନଶୀଳ କରିଥାଏ ତାହା ଏହି ଭାବଧାରା ସହିତ ସନ୍ନିହିତ । ପରିଣାମତଃ ଯେକୌଣସି ପ୍ରକାରର ଭେଦଭାବ, ଉଚ୍ଚନୀଚ ଦୃଷ୍ଟିଭଙ୍ଗୀ, ମନୁବାଦ ଜନିତ ବ୍ରାହ୍ମଣ-ଶୂଦ୍ର ମାନସିକତା ନିରପେକ୍ଷ ନୀତିବୋଧର ପରିପନ୍ଥୀ । ବସ୍ତୁତଃ ମାନବବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜନିତ ହେତୁବାଦ, ଗଣତାନ୍ତ୍ରିକ ଜୀବନଶୈଳୀ ଓ ନିରପେକ୍ଷ ନୀତିବୋଧର ଏକ ସମନ୍ୱିତ ଅଭିବ୍ୟକ୍ତି । କହିବା ନିଷ୍ପ୍ରୟୋଜନ ଯେ ଏହି ସବୁ ଆଦର୍ଶ ଓ ମୂଲ୍ୟଚୟ ପରସ୍ପର ପରିପୂରକ ଯାହାର ଅନ୍ତଃସ୍ୱର ହେଉଛି ଏକ ଇହଜୀବନ-ଭିତ୍ତିକ ତଥା ମାନବକୈନ୍ଦ୍ରିକ-ସମାଜ-ଦର୍ଶନ ।

ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବଜାତି ବା ମାନବସମାଜ ଚିରସ୍ଥାୟୀ । ମାନବ ଜାତିର କ୍ରମୋନ୍ନତି ଧାରାରେ ଆମେ ଆଜି ଯେଉଁ ସୋପାନଟିରେ ରହିଛେ ଓ ଯେଉଁ ସୁବିଧା ସୁଯୋଗର ଅଧିକାରୀ ହୋଇଛେ ତାହା ପଶ୍ଚାତରେ ରହିଛି ଆମ ପୂର୍ବସୂରିମାନଙ୍କର ଅବଦାନ । ଜ୍ଞାନ, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ସାମାଜିକ ସ୍ଥିରତା, ନୀତି, ଆଦର୍ଶ ଇତ୍ୟାଦି ହଜାର ହଜାର ବର୍ଷର ସାମାଜିକ ବିବର୍ତ୍ତନ ଧାରାରେ ବିକାଶ ଲାଭ କରିଛି । ଏହା ଆକାଶରୁ ଖସି ନାହିଁ ବା କେଉଁ ଦିଅଁ ଦେବତାର ଆଶୀର୍ବାଦରୁ ଉଦ୍‌ଭବ ହୋଇନାହିଁ । ଏହା ମଣିଷର ସୃଜନଶୀଳ ଓ ବିଚାରଶୀଳ ପ୍ରୟାସରୁ ହିଁ ସମ୍ଭବ ହୋଇଛି । ସେହିପରି ଆମର ସୃଜନଶୀଳ ଅବଦାନ ଓ ଉତ୍ତରଦାୟିତ୍ୱବୋଧରୁ ଆଗାମୀ ପିଢ଼ି ଯେ ଅଧିକ ପ୍ରୀତିପଦ ଓ ସୁଖକର ଜୀବନ ବଞ୍ଚିବାକୁ ସମର୍ଥ ହେବ ଏହା ନିଃସନ୍ଦେହ । ଆମର ଗ୍ରହମଣ୍ଡଳରେ କେବଳ ପୃଥିବୀ ପୃଷ୍ଠରେ ଯେଉଁ ମାନବ ସମାଜ ରହିଛି ତାହା କିପରି ଚିରସ୍ଥାୟୀ ଭାବେ ଏଠାରେ ରହି ଜୀବନକୁ ଅଧିକ ଅର୍ଥପୂର୍ଣ୍ଣ ଭାବେ ବଞ୍ଚିପାରିବ ତାହାର ଉତ୍ତରଦାୟିତ୍ୱ ଆମ ଉପରେ ନିର୍ଭରଶୀଳ । ଏହାକୁ ଗ୍ରହ-ମଣ୍ଡଳୀୟ ମାନବିକତା ବା ପ୍ଲାନେଟାରୀ ହ୍ୟୁମାନିଜିମ୍ (planetary humanism) ବୋଲି ସାଂପ୍ରତିକ ଦାର୍ଶନିକ ପରିଭାଷାରେ ବ୍ୟକ୍ତ କରାଯାଉଛି । ଏହି ମାନବିକତାର ଅନ୍ତର୍ନିହିତ ଆଭିମୁଖ୍ୟ ହେଉଛି ମାନବବାଦ । ଅର୍ଥାତ୍ ମାନବବାଦ ଯେଉଁ ସବୁ ଆଦର୍ଶ ଜନିତ ମୂଲ୍ୟବୋଧ ଉପରେ ଆଧାରିତ ତାହାର ବିକାଶ ଓ ସାମାଜିକ ଚେତନାରେ ଅଧିକରୁ ଅଧିକ ପ୍ରତିଫଳନ ଆମର ନୈତିକ କର୍ତ୍ତବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ମଧ୍ୟ ହେତୁବାଦୀ ଜୀବନଶୈଳୀର ଅଭିବ୍ୟକ୍ତି ।



# ତର୍କେ ମିଳଇ ଜ୍ଞାନ

ମଣିଷମାନଙ୍କ ଭିତରେ ଦୁଇଟି ବିପରୀତ ପ୍ରବୃତ୍ତି ଓ ଜୀବନ-ଦର୍ଶନ ଦେଖାଯାଏ । ଅଧିକାଂଶ ବ୍ୟକ୍ତି ଅତିପ୍ରାକୃତିକ ସତ୍ତା ବା ଶକ୍ତି (supernatural power) ଓ ଏପରିକି ଚମତ୍କାରିତାରେ ବିଶ୍ୱାସ କରନ୍ତି । ମୁଷ୍ଟିମେୟ ବ୍ୟକ୍ତି ଏସବୁ ବିଶ୍ୱାସର କୌଣସି ଆଧାର ନ ପାଇ ଏସବୁକୁ ସନ୍ଦେହ କରନ୍ତି; ସେମାନେ ବୈଜ୍ଞାନିକ ଅନୁଶୀଳନ ଓ ତର୍କଶୀଳ ବିଚାର ପ୍ରତି ଆଗ୍ରହୀ ହୁଅନ୍ତି । ଅତିପ୍ରାକୃତିକ ଶକ୍ତି ବା ସତ୍ତାରେ ବିଶ୍ୱାସ ସାମାଜିକ ମନସ୍ତତ୍ତ୍ୱରେ ବ୍ୟାପକ ଭାବେ ରହିଛି । ପିଲାଟି ବେଳୁ ଏହି ବିଶ୍ୱାସ ବୃହତ୍ତର ପରିବେଶରୁ ପାଉଥିବା ଯୋଗୁ ଅନେକ ଏହି ବିଶ୍ୱାସକୁ ଗ୍ରହଣ କରି ନେଇଥାନ୍ତି । ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତି ବି ବିଶ୍ଳେଷଣାତ୍ମକ ମନୋଭାବ ଅଭାବରେ ଅତିପ୍ରାକୃତିକ ଶକ୍ତିରେ ବିଶ୍ୱାସ କରନ୍ତି । ବିଜ୍ଞାନ ଅଧ୍ୟୟନ କରିଥିବା ବ୍ୟକ୍ତି, ଡାକ୍ତର, ଇଂଜିନିୟର ବି ଏପରି ବିଶ୍ୱାସରୁ ମୁକ୍ତ ହୋଇପାରନ୍ତି ନାହିଁ । ତେବେ ସେମାନେ ନିଜସ୍ୱ ଅଧ୍ୟୟନ ପରିସରରେ ହୁଏତ ବୈଜ୍ଞାନିକ ପଦ୍ଧତି ଗ୍ରହଣ କରନ୍ତି ବା ବିଶ୍ଳେଷଣାତ୍ମକ ଦୃଷ୍ଟି ପୋଷଣ କରନ୍ତି କିନ୍ତୁ ଏହାକୁ ଅନ୍ୟ ସ୍ତରରେ ବା ଜୀବନର ବ୍ୟାପକ ପରିସରରେ ପ୍ରୟୋଗ କରନ୍ତି ନାହିଁ । ଅର୍ଥାତ୍ ନିଜର ବୌଦ୍ଧିକ ପରିସରଟି ବାହାରେ ସେମାନେ ସାଧାରଣ ଲୋକଙ୍କ ପରି ଅତିପ୍ରାକୃତିକ ଶକ୍ତିରେ ଆସ୍ଥାସ୍ଥାପନ କରନ୍ତି । ଜୀବନର ଘନଘଟା ବା ପ୍ରକୃତିର ବିଭିନ୍ନ କ୍ଷେତ୍ର ଯେ ଅତିପ୍ରାକୃତିକ ସତ୍ତାଦ୍ୱାରା ନିୟନ୍ତ୍ରିତ ତାହା ଅନେକ ଲୋକ ବିଶ୍ୱାସ କରନ୍ତି । ଯେଉଁମାନେ ଏଥିରେ ବିଶ୍ୱାସ କରନ୍ତି ସେମାନେ ଭାବନ୍ତି ଯେ ଆମ ଦୃଷ୍ଟିର ଅନ୍ତରାଳରେ କିଛି ଅତିପ୍ରାକୃତିକ ଶକ୍ତି ରହିଛି ଯାହା ନିର୍ଦ୍ଦେଶରେ ସବୁକିଛି ଘଟୁଛି । ଏହି ଜୀବନ ଦର୍ଶନର ତାତ୍ପର୍ଯ୍ୟ ହେଉଛି "ବିଶ୍ୱାସ" । ବିଶ୍ୱାସ ଦ୍ୱାରା ହିଁ ଈଶ୍ୱର ଉପଲବ୍ଧି ହୋଇପାରିବ- ବିଶ୍ୱାସେ ମିଳଇ ବିଷ୍ଣୁ (ଈଶ୍ୱର) ତର୍କେ ବହୁ ଦୂର । ବିଶ୍ୱାସ ଦ୍ୱାରା ହିଁ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ହାସଲ ହୋଇପାରିବ । ତେବେ ସର୍ବୋଚ୍ଚ ଲକ୍ଷ୍ୟଟି କ'ଣ, ଈଶ୍ୱର ଉପଲବ୍ଧି ହେଲେ କଣ ହେବ, ସେହି ଉପଲବ୍ଧି କେବେ ଓ କିପରି ହୁଏ, ତାହା ଦ୍ୱାରା ସମାଜର କ'ଣ ହେବ- ଏ ସବୁର କୌଣସି ସନ୍ତୋଷଜନକ ବା ସର୍ବଗ୍ରାହ୍ୟ ଉତ୍ତର ମିଳେ ନାହିଁ । ବରଂ ନାନା କାଳ୍ପନିକ, ଅସଂଯୋଜିତ ଓ ଏପରିକି ପରସ୍ପର ବିରୋଧି ଉତ୍ତର ବିଭିନ୍ନ ଧର୍ମର ପ୍ରବକ୍ତାମାନେ ଦେଇଥାନ୍ତି ।

ଅନ୍ୟ ଦୃଷ୍ଟିଭଙ୍ଗୀରେ, ବିଶ୍ୱାସ ପରିବର୍ତ୍ତେ ଯୁକ୍ତିଶୀଳତା ଉପରେ ଗୁରୁତ୍ୱ ଦିଆଯାଏ । ଏହାକୁ ଗ୍ରହଣ କରୁଥିବା ଲୋକମାନେ ସବୁଥିରେ ପ୍ରଶ୍ନ କରନ୍ତି । କୌଣସି କିଛିକୁ ମାନି ନିଅନ୍ତି ନାହିଁ । ବିଶ୍ୱାସ ଉପରେ ଆଧାରିତ କଥାଗୁଡ଼ିକର ସତ୍ୟାସତ୍ୟ ପରୀକ୍ଷା ପାଇଁ ଆହ୍ୱାନ କରନ୍ତି ଓ ସବୁଥିରେ ଅନୁସନ୍ଧିତ୍ସୁ ହୁଅନ୍ତି । ସେମାନେ ଏକ ଭିନ୍ନ ଜୀବନ ଦର୍ଶନରେ ବିଶ୍ୱାସ କରନ୍ତି ଓ ସେମାନଙ୍କ ମତରେ ଅନୁସନ୍ଧିତ୍ସୁ ହେଲେ ଜ୍ଞାନ ମିଳିପାରିବ, ବିଶ୍ୱାସ କଲେ ନୁହେଁ । ଅନୁସନ୍ଧିତ୍ସୁ ହେବା, ଘଟଣାର କାରଣ ଖୋଜିବା, ବୈଜ୍ଞାନିକ ପଦ୍ଧତିରେ ଆସ୍ଥା ସ୍ଥାପନ କରିବା, କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ରହିଥିବା ବୈଧ ପ୍ରଣାଳୀର ପ୍ରୟୋଗ କରିବା, ମୁକ୍ତ ମନରେ ବିଚାର କରିବା ଇତ୍ୟାଦି ଏହି ପ୍ରକ୍ରିୟାର ଅଂଶ ବିଶେଷ । ଏ

ସମସ୍ତ ବିଚାରର ପରିସରଟି 'ତର୍କ' ର ଅନ୍ତର୍ଭୁକ୍ତ । ଏଠାରେ 'ତର୍କ' କୁ କେବଳ ଯୁକ୍ତିଶୀଳ ପଦ୍ଧତି ଭିତରେ ସୀମିତ କରାନଯାଇ ଏକ ବ୍ୟାପକ ଅର୍ଥରେ ଗ୍ରହଣ କରାଯାଉଛି । ଜ୍ଞାନଲାଭର ପ୍ରକୃତ ପ୍ରଣାଳୀ କ'ଣ, ସେହି ପ୍ରଣାଳୀ ସହିତ କୌତୂହଳ ପ୍ରବଣତା, ଅନୁସନ୍ଧିତ୍ସୁ ଦୃଷ୍ଟି, ମୁକ୍ତ ମନ, ସାର୍ବଜନୀନ ପ୍ରଣାଳୀ ଇତ୍ୟାଦିକୁ ନିଆଯାଉଛି । ଏହା ହିଁ ହେଉଛି ତର୍କଶୀଳ ଦୃଷ୍ଟିର ତାତ୍ପର୍ଯ୍ୟ । ବସ୍ତୁତଃ ବିଶ୍ୱାସ ଆଧାରିତ ଭାବନା ଓ ତର୍କଶୀଳ ବିଚାର ଭିତରେ କେତେକ ପାର୍ଥକ୍ୟ ଦର୍ଶାଇବା ଶଂସିତ ପ୍ରବନ୍ଧର ଉଦ୍ଦେଶ୍ୟ ।

( ୧ )

ପ୍ରଥମେ ଜ୍ଞାନ ଓ ବିଶ୍ୱାସ ଭିତରେ ଥିବା ସମ୍ବନ୍ଧ ବିଷୟରେ ସାମାନ୍ୟ ସୂଚନା ଦିଆଯାଉ । ଯାହା ଏକ ସ୍ଥିରୀକୃତ ପ୍ରଣାଳୀରେ ପ୍ରାପ୍ତ ହୁଏ ତାହାକୁ ଆମେ ସାଧାରଣତଃ ଜ୍ଞାନ କହିଥାଉ । ଯାହା ଆମେ ଜାଣିଛୁ ବା ଜାଣୁ ତାହା ଜ୍ଞାନ ଓ ଯାହାକୁ ଆମେ ଧରି ନେଉଛୁ ବା କଳ୍ପନା କରୁଛୁ ତାହା ବିଶ୍ୱାସ । ଯଦି ଜାଣିବାକୁ ଜ୍ଞାନ ଓ କଳ୍ପନାକୁ ବିଶ୍ୱାସ କୁହାଯାଏ, ତେବେ ଉଭୟର ବ୍ୟାପ୍ତି ଓ ପ୍ରକ୍ରିୟା ପୃଥକ୍ ହେବ । ତେବେ 'ଜାଣିବାର' ବିଭିନ୍ନ ଅର୍ଥ ବି ରହିପାରେ । ଜାଣିବାର ତାତ୍ପର୍ଯ୍ୟ କ'ଣ ହୋଇପାରେ ତାହାର କେତେକ ଉଦାହରଣ ଦେଖାଯାଉ ।

ମୁଁ ଗାନ୍ଧୀଙ୍କୁ ଜାଣେ ବା କଲିକତା ବିଷୟରେ ଜାଣେ କହିବା ବେଳେ ବୁଝାଯାଏ ଯେ ହୁଏତ ମୁଁ ଗାନ୍ଧୀଙ୍କ ସଂସ୍ପର୍ଶରେ ଆସିଛି କିମ୍ୱା କଲିକତାରେ କିଛି ଦିନ ବିତାଇଛି । କିମ୍ୱା ଏହା ବି ହୋଇପାରେ ଯେ ମୁଁ ସେମାନଙ୍କ ବିଷୟରେ ବିଭିନ୍ନ ତଥ୍ୟ ରଖିଛି । ତେବେ ସାଧାରଣ ଅର୍ଥରେ ଯଦି କୁହାଯାଏ ଯେ ମୁଁ 'କ'କୁ ଜାଣେ ତାହାର ଅର୍ଥ ହେବ ମୁଁ 'କ''ଙ୍କ ସଂସ୍ପର୍ଶରେ ଆସିଛି । ସଂସ୍ପର୍ଶରେ ଆସି ଜାଣିବା ଓ କେତେକ ତଥ୍ୟକୁ ନେଇ ଜାଣିବା ଭିତରେ ପାର୍ଥକ୍ୟ ବି କରାଯାଇପାରେ । ପୁନଶ୍ଚ ଜାଣିବାର ଅନ୍ୟ ଏକ ତାତ୍ପର୍ଯ୍ୟ ହେବ ଏକ ସାମର୍ଥ୍ୟର ଅଧିକାରୀ ହେବା । ମୁଁ କାର୍ ଡ୍ରାଇଭିଂ ଜାଣେ ବା ସନ୍ତରଣ ଜାଣେ କହିବାର ତାତ୍ପର୍ଯ୍ୟ ହେବ ଏ ସବୁଥିରେ ମୋର ଦକ୍ଷତା ବା ସାମର୍ଥ୍ୟ ରହିଛି । ତେବେ ଜାଣିବାର ଗୁରୁତ୍ୱପୂର୍ଣ୍ଣ ଅର୍ଥଟି ହେଲା ଏକ ସତ୍ୟ ଆଧାରିତ ଘଟଣା ବା ସିଦ୍ଧାନ୍ତକୁ ଜାଣିବା । ମୁଁ ଯଦି କହେ ମୁଁ ଜାଣେ ଯେ ସୂର୍ଯ୍ୟ ସ୍ଥିର, ଜଳ ଏକ ଯୌଗିକ ବସ୍ତୁ, ଭାରତ ଦ୍ୱିତୀୟ ଜନବହୁଳ ରାଷ୍ଟ୍ର ତେବେ ଏଠାରେ ଏକ ସତ୍ୟବଚନର ଅବତାରଣା ନେଇ ମୋର ଜ୍ଞାନ ଥିବା ମୁଁ ବ୍ୟକ୍ତ କରିଥାଏ । ମୁଁ କ, ଖ, ଗ.... ବିଷୟରେ ଜାଣେ କହିବାର ଅର୍ଥ ହେବ କ, ଖ, ଗ.... ଗୁଡିକ ସତ୍ୟବଚନ ଭାବେ ସ୍ୱୀକୃତ । ତେବେ ଏପରି ମଧ୍ୟ ହୋଇପାରେ ଯେ ଅନେକ ସତ୍ୟବଚନ ଅଛି ଯାହା ଆମେ ଜାଣୁନାହୁଁ । ତେବେ ଯାହାକୁ ସତ୍ୟ ବୋଲି ଆମେ ଜାଣୁ ତାହା ବାସ୍ତବରେ ସତ୍ୟ ହେବା ଆବଶ୍ୟକ । ସୁତରାଂ ଯଦି କୁହାଯିବ 'କ' କୁ ମୁଁ ଜାଣେ, କିନ୍ତୁ 'କ' ସତ୍ୟ ନୁହେଁ ତେବେ ଏହା ଏକ ବିରୋଧାଭାସ ହେବ । ଯାହା ଜ୍ଞାନ ତାହା ସତ୍ୟବଚନ । ଏହା ନିର୍ଦ୍ଦିଷ୍ଟ ପ୍ରକ୍ରିୟା ଯଥା ପ୍ରତ୍ୟକ୍ଷ ବା ଅନୁମାନ ଆଧାରରେ ସମ୍ଭବ ହୋଇଥାଏ । ଜ୍ଞାନ ସର୍ବଦା ପରୀକ୍ଷା-ସାପେକ୍ଷ ଓ ଏହା ଯେଉଁ ଆଧାରରେ ଜଣାଯାଉଛି ତାହା ବସ୍ତୁନିଷ୍ଠ ଓ ମୁକ୍ତ । ଏହି ପରିପ୍ରେକ୍ଷୀରେ ଜ୍ଞାନ ଓ ବିଜ୍ଞାନ ଭିତରେ ପାର୍ଥକ୍ୟ ରହିଛି । ଅବଶ୍ୟ ଜ୍ଞାନକୁ କେତେକ 'ସତ୍ୟ ବିଶ୍ୱାସ' ବୋଲି କହିଥାନ୍ତି । ତେବେ ବିଶ୍ୱାସର ପରିସର ସତ୍ୟ ବିଶ୍ୱାସ ଠାରୁ ବହୁ ବ୍ୟାପକ ମନେହୁଏ । କେତେକ ବିଶ୍ୱାସର କିଛି ଆଧାର ଥାଇପାରେ କିନ୍ତୁ ଏକ ବିଶ୍ୱାସ ପରୀକ୍ଷିତ ନହେଲେ, ସତ୍ୟବୋଲି ପ୍ରତିଷ୍ଠା ନହେଲେ ତାହା କେବଳ ବ୍ୟକ୍ତିନିଷ୍ଠ ଧାରଣ ସ୍ତରରେ ରହେ । ଆମେ ଅନେକ କିଛି କଳ୍ପନା କରୁ, ଅନୁମାନ କରୁ, ଭାବନା

ଭିତରେ ଚିନ୍ତା କରୁ- ସବୁ ଆମର ବିଶ୍ୱାସ । ଯେତେବେଳେ କୌଣସି ବିଶ୍ୱାସ ପରୀକ୍ଷିତ ହୋଇ ପ୍ରତିଷ୍ଠା ଲାଭକରେ ତାହା ଏକ ସତ୍ୟବଚନ ହୁଏ । ପରୀକ୍ଷିତ ବା ପ୍ରତିଷ୍ଠା ନହେଲେ ଏହା ବିଶ୍ୱାସ । ବିଜ୍ଞାନର ପରିସରରେ ହୁଏତ ବ୍ୟାଖ୍ୟା ହୋଇପାରୁନଥିବା କେତେକ ଘଟଣା ପାଇଁ ପ୍ରକଳ୍ପର ଅନୁମାନ କରାଯାଏ । ସେହି ପ୍ରକଳ୍ପ ଗୁଡିକ ପ୍ରମାଣିତ ବା ପରୀକ୍ଷିତ ନ ହେବା ପର୍ଯ୍ୟନ୍ତ ସେଗୁଡ଼ିକ ହୁଏତ ଅନୁମାନ ବା ବିଶ୍ୱାସ । ତେବେ ବୈଜ୍ଞାନିକ ପରିସରରେ ଥିବା ପ୍ରକଳ୍ପ ଗୁଡିକର ଆଧାର ଥାଏ, ଯେହେତୁ ସେଗୁଡ଼ିକ ପ୍ରାକୃତିକ କାରଣ ଉପରେ ପର୍ଯ୍ୟବସିତ । ଅପର ପକ୍ଷରେ ଏପରି ବହୁ ଘଟଣା ରହିଛି ଯାହା ଆମର ବଶ୍ୱାସ, କିନ୍ତୁ ସେଗୁଡ଼ିକ ପ୍ରାକୃତିକ କାରଣ ଉପରେ ପର୍ଯ୍ୟବସିତ ନଥିବାରୁ ସେହି ବିଶ୍ୱାସ ଗୁଡିକ ଆଧାରହୀନ । ଯାହାର କୌଣସି ପରୀକ୍ଷା ସମ୍ଭବ ନୁହେଁ ବା ଯାହା କୌଣସି ପଦ୍ଧତି ଆଧାରରେ ସତ୍ୟ ବା ମିଥ୍ୟା ବୋଲି ଗୃହୀତ ହେବା ସମ୍ଭବ ନୁହେଁ ତାହା କେବଳ ବିଶ୍ୱାସ । ଗୋଟିଏ ବିଶ୍ୱାସକୁ କେତେ ଲୋକ ଗ୍ରହଣ କରୁଛନ୍ତି ତାହା ତାର ସତ୍ୟତାର ମାପକାଠି ନୁହେଁ । ସତ୍ୟତାର ମାପକାଠି ପରୀକ୍ଷା, ଯାହା ବସ୍ତୁନିଷ୍ଠ, ପଦ୍ଧତିଜନିତ ବୈଜ୍ଞାନିକ ପ୍ରଣାଳୀ ଉପରେ ନିର୍ଭର କରେ ।

(୨)

ଆଜି ସଭ୍ୟତା ଯେଉଁ ସ୍ତରକୁ ଆସିଛି ତାହା ପଶ୍ଚାତରେ ସୁଦୀର୍ଘ କାହାଣୀ ରହିଛି । ସଭ୍ୟ ମୂଲ୍ୟବୋଧ ଗୁଡ଼ିକ ହଜାର ହଜାର ବର୍ଷର କ୍ରମବିକାଶ ଧାରାରେ ସମାଜରେ ବିକଶିତ ହୋଇଛି । ଜ୍ଞାନ ବିଜ୍ଞାନର ବିକାଶ ଶହ ଶହ ବର୍ଷର ଅନୁସନ୍ଧିତ୍ସା, ଗବେଷଣା, ନାନା ପରୀକ୍ଷା, ପର୍ଯ୍ୟବେକ୍ଷଣ ମଧ୍ୟ ଦେଇ ସମ୍ଭବ ହୋଇଛି । ଲିପିର ଉଦ୍‌ଭାବନ, ସାହିତ୍ୟ, ପୁରାଣ, ଦର୍ଶନର ବିକାଶର ସୁଦୀର୍ଘ ଅତୀତ ରହିଛି । କଳା, ସ୍ଥାପତ୍ୟ, ଯାନ୍ତ୍ରିକ କୌଶଳ, ଯାନବାହନ, ଗମନାଗମନ ହଜାର ହଜାର ବର୍ଷ ଦେଇ ବିକାଶ ଲାଭ କରିଛି । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା, ଜନମଙ୍ଗଳକାରୀ ରାଷ୍ଟ୍ର ଭାବନା, ଧର୍ମନିରପେକ୍ଷ ଆଦର୍ଶ, ମାନବିକ ମୂଲ୍ୟବୋଧ, ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା, ମାନବିକ ଅଧିକାର ପରି ସଭ୍ୟ ମୂଲ୍ୟବୋଧ ଗୁଡ଼ିକ ମାତ୍ର ଦୁଇ ତିନି ଶତାବ୍ଦୀ ଭିତରେ ଚିନ୍ତା ସ୍ତରରେ ଆଲୋଡ଼ନ ଆଣିଛି । ସଭ୍ୟତାର ଆଦି ପର୍ବରେ କୃଷିଭିତ୍ତିକ ଗ୍ରାମୀଣ ଜୀବନ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ନଦୀତଟ ମାନଙ୍କରେ ଆରମ୍ଭ ହୋଇଥିଲା । ଜନସଂଖ୍ୟାର ବୃଦ୍ଧି ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାରଣରୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଗଠନ ହେଲା । ହଜାର ହଜାର ଭାଷାମାନଙ୍କର ଉଦ୍‌ଭବ ହେଲା । ତେବେ ୟୁରୋପରେ ଶିଳ୍ପ ବିପ୍ଲବ ପରେ କଳକାରଖାନାର ସ୍ଥାପନ ଯୋଗୁଁ ସହରୀ ସଭ୍ୟତା ଗଢ଼ି ଉଠିଲା । ରାଷ୍ଟ୍ରର ଭାବନା ଆସିଲା, ସାମ୍ରାଜ୍ୟବାଦ ବିସ୍ତାରିତ ହେଲା । କାଳକ୍ରମେ ନୂଆ ନୂଆ ବିଚାର ଚିନ୍ତା ରାଜ୍ୟରେ ଆଲୋଡ଼ନ ଆଣିଲା । ଷୋଡ଼ଶ, ସପ୍ତଦଶ ଶତାବ୍ଦୀ ବେଳକୁ ବୈଜ୍ଞାନିକ ଅନୁସନ୍ଧିତ୍ସା ଧୀରେ ଧୀରେ ଆରମ୍ଭ ହେଲା ଓ ସାର୍ବଜନୀନ ଶିକ୍ଷାର ପରିବେଶ ବିଭିନ୍ନ ରାଷ୍ଟ୍ରରେ ସୃଷ୍ଟି ହେଲା । ଏହିପରି ଦେଖିଲେ ନାନା ସ୍ତର ଦେଇ ସଭ୍ୟତା ଆଗକୁ ଯାଇଛି, ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ଚିକିତ୍ସା ବିଜ୍ଞାନ ଯୋଗୁଁ ଜୀବନରୁ ଦୁଃଖ ଯନ୍ତ୍ରଣା କମିଛି ଓ ନିରାପଦ ଜୀବନର ପରିବେଶ ଆସିଛି । ତେବେ ଯେଉଁ ଯୁଗରେ ଜ୍ଞାନ ବିଜ୍ଞାନର ବିଶେଷ ବିକାଶ ହୋଇନଥିଲା, ସେହି ସମୟରେ ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ଅତି ସାଧାରଣ ଘଟଣା ଥିଲା । ପ୍ରକୃତିର ବିଶାଳତା, ପ୍ରାକୃତିକ ପରିବେଶର ଜଟିଳତା, ଜୀବନର ଘନଘଟା, ପ୍ରାକୃତିକ ବିପର୍ଯ୍ୟୟ ଜନିତ ଆଶା ଆଶଙ୍କା ଭିତରେ ନାନା କଳ୍ପନା ମଣିଷ ମନକୁ ଛୁଇଁଥିଲା । ସୀମିତ ବୁଦ୍ଧି ଓ କଳ୍ପନା ଭିତରେ

ଅତିପ୍ରାକୃତିକ ଶକ୍ତିରେ ବିଶ୍ୱାସ ମଣିଷ ପାଇଁ ଅତ୍ୟନ୍ତ ସ୍ୱାଭାବିକ ଥିଲା । ଦୃଷ୍ଟିର ଅଳକ୍ଷ୍ୟରେ କୌଣସି ଦୈବୀ ଶକ୍ତି ରହି ସବୁ କିଛିକୁ ପରିଚାଳିତ କରୁଛି । ତାର ନିର୍ଦ୍ଦେଶରେ ଦିନ, ରାତି ହେଉଛି; ସବୁ ଘଟଣା ଘଟିଚାଲିଛି । ଅଜ୍ଞତା ଓ ଭୟ ଜନିତ କାରଣରୁ ମଣିଷର ବୁଦ୍ଧି ଓ କଳ୍ପନା ମିଶି ଅତିପ୍ରାକୃତିକ ସତ୍ତା ଓ ନାନା ଦୈବୀ ଶକ୍ତିର ବିଶ୍ୱାସ ସୃଷ୍ଟି ହୋଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ବିଭିନ୍ନ ଭୂଖଣ୍ଡରେ କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ହୋଇଛି ଓ ସେମାନେ ଧର୍ମ-ଚେତନାର ଭିତ୍ତି ପକାଇଛନ୍ତି । ପ୍ରକୃତି ଓ ଜୀବନର ଘନଘଟାକୁ ବୁଝିବା ପାଇଁ ସେମାନେ ଯେଉଁ ସବୁ ବ୍ୟାଖ୍ୟା ଦେଇଛନ୍ତି, ଜୀବନର ଅନ୍ତିମ ଲକ୍ଷ୍ୟ ନେଇ ଯେଉଁ କଳ୍ପନା ସୃଷ୍ଟି କରିଛନ୍ତି, ସମାଜକୁ ଶୃଙ୍ଖଳିତ କରିବା ପାଇଁ ଯେଉଁ କେତେକ ନୈତିକ ଆଦର୍ଶର ଭାବନା ଆଣିଛନ୍ତି ଓ ଜୀବନରେ ପ୍ରୀତି, ମୈତ୍ରୀ, କରୁଣାର ଯେଉଁ ବାର୍ତ୍ତା ଦେଇଛନ୍ତି ତାହା ସେ ସମୟରେ ବେଶ୍ ଯୁଗାନ୍ତକାରୀ ମନେ ହୋଇଛି । କାଳକ୍ରମେ ଧର୍ମମାନ ଗୋଟିଏ ଗୋଟିଏ ଅନୁଷ୍ଠାନରେ ପରିଣତ ହୋଇଯାଇଛନ୍ତି ଓ ସାମାଜିକ ନିୟନ୍ତ୍ରଣର କ୍ଷେତ୍ରରେ ମୁଖ୍ୟ ଭୂମିକା ନେଇଛନ୍ତି । ପ୍ରତ୍ୟେକ ଧର୍ମକୁ ଆଧାର କରି ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ସୁଦୃଢ଼ ହୋଇଯାଇଛି । ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗ, ନରକ, ପୁନର୍ଜନ୍ମ, ଆତ୍ମା, ଆତ୍ମାର ଅମରତ୍ୱ ପରି ବିଚାରମାନ ଧର୍ମର ପରିସରରେ ମୁଖ୍ୟ ଭାବନା ପାଲଟିଛି । ପ୍ରତ୍ୟେକ ଧର୍ମ ଏହି ପ୍ରକାର ଭାବନା ଉପରେ କେତେ କେତେ ବିଶ୍ୱାସ ସୃଷ୍ଟି କରିଛନ୍ତି । ଶହ ଶହ ବର୍ଷ ଧରି ସେହି ସବୁ ଭାବନାମାନଙ୍କୁ ନେଇ ନାନା କାହାଣୀ, ପୁରାଣ, ଗଳ୍ପ, କିମ୍ବଦନ୍ତୀମାନ ସୃଷ୍ଟି ହୋଇଛି । ପ୍ରତ୍ୟେକ ସମାଜରେ ଧାର୍ମିକ ବିଶ୍ୱାସ ଆଧାରରେ ନାନା ପରମ୍ପରା, କର୍ମକାଣ୍ଡ, ପୂଜା, ଆରାଧନା ମାନ ଉଦ୍‌ଭବ ହୋଇଛି । ଏ ସବୁ ପିଢ଼ି ପରେ ପିଢ଼ି ଚାଲିବା ଯୋଗୁଁ  ଏହା ସଂସ୍କୃତିର ଅଙ୍ଗ ବିଶେଷ ହୋଇଯାଇଛି । ତେବେ ଅଧିକାଂଶ ଧର୍ମର ମୂଳ ଭିତ୍ତି ନାନା ପାରଲୌକିକ ବିଶ୍ୱାସ, ଅତିପ୍ରାକୃତିକ ସତ୍ତାରେ ଆସ୍ଥା ସ୍ଥାପନ, କେତେକ ନୈତିକ ଆଦର୍ଶ, କର୍ମକାଣ୍ଡ, ବିଭିନ୍ନ କିମ୍ବଦନ୍ତୀ, କାହାଣୀ ଉପରେ ଗଢ଼ି ଉଠିଛି ଓ ଶହ ଶହ ବର୍ଷ ଧରି ଧର୍ମ ସାମାଜିକ ଓ ରାଜନୈତିକ ନିୟନ୍ତ୍ରଣର ଭିତ୍ତି ହୋଇପଡିଛି । ତେବେ ଧର୍ମର ଅଧିକାଂଶ କ୍ଷେତ୍ରରେ ବିଶ୍ୱାସର ପ୍ରାବଲ୍ୟ ରହିଛି ଓ ଧର୍ମର ମୌଳିକ ନିର୍ଯ୍ୟାସ ଗୁଡ଼ିକ କଳ୍ପନା ଓ ବିଶ୍ୱାସର ସଂଯୋଗରେ ବିକଶିତ ହୋଇଛି ।

ତେବେ ସମୟେ ସମୟେ ବିଭିନ୍ନ ସଭ୍ୟତାରେ ଓ ଇତିହାସର କୌଣସି କୌଣସି କାଳଖଣ୍ଡରେ କିଛି ଚିନ୍ତାଶୀଳ ବ୍ୟକ୍ତି ଅନୁସନ୍ଧିତ୍ସୁ ହୋଇଛନ୍ତି ଓ ସମାଜର ପ୍ରଚଳିତ ବିଶ୍ୱାସକୁ ସନ୍ଦେହ ଦୃଷ୍ଟିରେ ଦେଖିଛନ୍ତି । ସେମାନେ କିଛି ନୂଆ ବିଚାରର ସନ୍ଧାନ କରିଛନ୍ତି ଓ ଜୀବନର ଓ ପ୍ରକୃତିର ଘଟଣା ପ୍ରବାହକୁ ଅନୁଭୂତି ଆଧାରରେ ବୁଝିବାକୁ ପ୍ରୟାସ କରିଛନ୍ତି । ଇତିହାସର ବଡ଼ ବିଡ଼ମ୍ବନା ଯେ ଯେଉଁମାନେ ସଭ୍ୟତାକୁ ନୂତନ ଆଲୋକ ଦେଇଛନ୍ତି ଓ ଯେଉଁମାନଙ୍କର ଅବଦାନର ପରିଣାମରୁ ସମାଜର ରୂପ ବଦଳିଛି ଓ ଗୁଣାତ୍ମକ ଜୀବନର ମାନ ବୃଦ୍ଧି ହୋଇଛି, ସେମାନେ ନିଜ ସମସାମୟିକ ସମାଜରେ ବହୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇଛନ୍ତି ।  ଚିନ୍ତା ଚେତନାରେ ମୌଳିକ ପରିବର୍ତ୍ତନ ଆଣିଥିବା ହେତୁବାଦୀମାନେ ଅତିପ୍ରାକୃତିକ ସତ୍ତାକୁ ସନ୍ଦେହ ଦୃଷ୍ଟିରେ ଦେଖିଆସିଛନ୍ତି । ଅନୁସନ୍ଧିତ୍ସୁ ହେବା ଦ୍ୱାରା ସେମାନେ ସନ୍ଦେହ କରିଛନ୍ତି ଯେ ପ୍ରକୃତିରେ ସେପରି କିଛି ସତ୍ତା ପ୍ରକୃତରେ ରହିଛି କି ? ନିଜର ଅନୁଭୂତି, ପର୍ଯ୍ୟବେକ୍ଷଣ ଓ ବିଚାରଶୀଳତା ଭିତରେ ଯେତେବେଳେ ମଣିଷ ତାର ପରିବେଶକୁ ଅନୁଶୀଳନ କରିଛି ସେ କେବଳ ଘଟଣାମାନଙ୍କର ପ୍ରାକୃତିକ କାରଣମାନଙ୍କୁ ଦେଖିଛି । ତେବେ ଚିନ୍ତା ରାଜ୍ୟକୁ ଅମୂଲ୍ୟ ଅବଦାନ ଦେଇଥିବା ବା ସାମାଜିକ ନ୍ୟାୟ ଓ ମାନବିକତାର ଆଦର୍ଶ ପ୍ରସାର

କରିଥିବା କ୍ରାନ୍ତିକାରୀ ଚିନ୍ତାନାୟକମାନେ ଧାର୍ମିକ ବିଶ୍ୱାସ ବିରୁଦ୍ଧରେ ଯାଇଛନ୍ତି । ସେମାନେ ନୂତନ ବିଚାରର ସୂତ୍ରପାତ କରିବା ଦ୍ୱାରା ବିଦ୍ରୋହୀ ବା ନନ୍‌କନଫର୍ମିଷ୍ଟ ପାଲଟିଛନ୍ତି । ଏଥିପାଇଁ ଅବଶ୍ୟ ବହୁ କ୍ରାନ୍ତିକାରୀ ବୁଦ୍ଧିଜୀବୀଙ୍କୁ ବହୁ ମୂଲ୍ୟ ଦେବାକୁ ହୋଇଛି । ଧାର୍ମିକ ବିଶ୍ୱାସର ମାନସିକତା କୌଣସି ନୂତନ ଚିନ୍ତାକୁ ଗ୍ରହଣ କରିପାରେ ନାହିଁ । ପରିଣାମତଃ ଧାର୍ମିକ ଆବେଗକୁ ଚିନ୍ତାନାୟକଙ୍କ ବିରୁଦ୍ଧରେ ପ୍ରୟୋଗ କରି ସେମାନଙ୍କୁ ନିନ୍ଦିତ କରିବାର ବହୁ ଦୁଃଖଦାୟକ କାହାଣୀ ଇତିହାସରେ ରହିଛି । ପ୍ରାଚୀନ ଯୁଗରୁ ଆଜି ପର୍ଯ୍ୟନ୍ତ ଏହା ରହି  ଆସିଛି । ସବୁ ସଭ୍ୟତାରେ ଚିନ୍ତାନାୟକ ମାନଙ୍କ ବିରୁଦ୍ଧରେ କିପରି ବିଶ୍ୱାସୀମାନେ ଲୋକମାନଙ୍କୁ ଉତ୍ତେଜିତ କରି ସେମାନଙ୍କ ଜୀବନକୁ ବିପର୍ଯ୍ୟସ୍ତ କରିଛନ୍ତି ତାହାର କେତୋଟି ଦୃଷ୍ଟାନ୍ତମୂଳକ ଉଦାହରଣ ଦିଆଯାଇପାରେ ।

ମଣିଷର ବୌଦ୍ଧିକ ଜଗତକୁ ପ୍ରାଚୀନ ଗ୍ରୀକ୍ ବୁଦ୍ଧିଜୀବୀମାନଙ୍କର ଅବଦାନ ଅତୁଳନୀୟ । ଖ୍ରୀ.ପୂ ୫୦୦ ବେଳକୁ ଗ୍ରୀସ୍‌ରେ ବିଶ୍ୱାସ ରହିଥିଲା ଯେ ସୂର୍ଯ୍ୟ-ଚନ୍ଦ୍ର ହେଉଛନ୍ତି ଦେବତା । ଆନାକ୍‌ସଗୋରାସ୍ ସେହି ସମୟରେ ଧାରଣା ଦେଲେ ଯେ ସୂର୍ଯ୍ୟ, ଚନ୍ଦ୍ର ପ୍ରାକୃତିକ ବସ୍ତୁ, କୌଣସି ଦୈବୀ ଶକ୍ତି ନୁହଁନ୍ତି । ସେ ଏହି ଧାରଣା ବ୍ୟକ୍ତ କରିବାରୁ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା, ତେବେ ସେ ଏଥେନ୍‌ସରୁ ଗୁପ୍ତରେ ଚାଲିଆସି ଆତ୍ମଗୋପନ କରି ରହିଲେ । ପ୍ରୋଟାଗୋରାସ୍ (ଖ୍ରୀ.ପୂ. ୪୮୫-୪୧୦) ମଣିଷ ହିଁ ସବୁର ମାନଦଣ୍ଡ କହି ଈଶ୍ୱରୀୟ ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ କରିବାରୁ ତାଙ୍କର ଲେଖାମାନଙ୍କୁ ପୋଡ଼ି ଦିଆଗଲା ଓ ସେ ବି ପ୍ରାଣ ଭୟରେ ଏଥେନ୍‌ସ ଛାଡି ଚାଲି ଆସିଥିଲେ । ମୁକ୍ତ ଚିନ୍ତକ, ପ୍ରଜ୍ଞାର ଅଧିକାରୀ ଓ ସତ୍ୟ ନ୍ୟାୟର ପ୍ରବକ୍ତା ସକ୍ରେଟିସ୍ (ଖ୍ରୀ.ପୂ.୪୭୦-୩୯୯) ଙ୍କ ବିରୁଦ୍ଧରେ ଅଭିଯୋଗ ଭିତରେ ବଡ଼ ଅଭିଯୋଗ ଥିଲା ଯେ ସେ ରାଷ୍ଟ୍ର ଦ୍ୱାରା ପୂଜିତ ଦେବତାମାନଙ୍କୁ ବିଶ୍ୱାସ କରୁନଥିଲେ । ଶେଷରେ ତାଙ୍କୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଗଲା । ଭାରତବର୍ଷରେ ଚାର୍ବାକ ଯେ କି ସେ ଯୁଗରେ ପ୍ରତ୍ୟକ୍ଷକୁ ଜ୍ଞାନର ମୌଳିକ ଆଧାର ଭାବରେ ନେଇ ସମସ୍ତ ଅତିପ୍ରାକୃତିକ ସତ୍ତାକୁ କଳ୍ପନା ବୋଲି କହି ଅସ୍ୱୀକାର କରୁଥିଲେ ତାଙ୍କର ସମସ୍ତ କୃତିକୁ ଧ୍ୱଂସ କରି ଦିଆଯାଇ ତାଙ୍କ ନାମରେ ଅବାନ୍ତର କଥା ସବୁ ଯୋଡ଼ି ଦିଆଗଲା । ବୌଦ୍ଧ ଧର୍ମରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଏଡାଇ ଯାଇ ନୀତିପୂର୍ଣ୍ଣ ଜୀବନକୁ ପ୍ରାଧାନ୍ୟ ଦିଆଯାଇଥିଲା ଓ ଏକ ଜାତିବିହୀନ ସମତାଭିତ୍ତିକ ସମାଜର ବାର୍ତ୍ତା ଥିବାରୁ ଭାରତବର୍ଷରେ ବହୁ ବୌଦ୍ଧ ସନ୍ନ୍ୟାସୀଙ୍କୁ ହତ୍ୟା କରାଯାଇ ଏକ ଗଣଧର୍ମକୁ ଧ୍ୱଂସ କରାଗଲା । ଖ୍ରୀଷ୍ଟଧର୍ମର ପ୍ରସାର ପରେ ୟୁରୋପରେ ନବ ଜାଗରଣ ଯୁଗ ପର୍ଯ୍ୟନ୍ତ ଅନ୍ଧକାରର ସମୟ ଥିଲା ।  ହଜାର ହଜାର ମହିଳାମାନଙ୍କୁ ମନ୍ଦ-ଆତ୍ମା ଭାବି ହତ୍ୟା କରାଯାଉଥିଲା । ବିଜ୍ଞାନର ଆରମ୍ଭ ପର୍ବରେ ପ୍ରଚଳିତ ବିଶ୍ୱାସମାନଙ୍କୁ ବିରୋଧ କରି ଯେଉଁ ବୈଜ୍ଞାନିକ ସିଦ୍ଧାନ୍ତ ସବୁ ଆବିଷ୍କୃତ ବା ଉଦ୍‌ଭାବିତ ହେଲା, ତାହା ଏକ ସଂଘର୍ଷମୟ ପରିସ୍ଥିତି ସୃଷ୍ଟି କରିଥିଲା । ଏଥିପାଇଁ ବହୁ ପ୍ରତିଭାଧର ବୈଜ୍ଞାନିକ ନାନା ନିର୍ଯ୍ୟାତନା ବା ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ଶରୀର ବିଜ୍ଞାନର ଜନକ ଆଣ୍ଡ୍ରିଆସ ଭେସାଲିୟସ୍ (୧୫୧୪-୧୫୬୪) ମଣିଷ ଶରୀର ବିଷୟରେ ଦେଇଥିବା ଜ୍ଞାନ ଧାର୍ମିକ ବିଶ୍ୱାସର ପ୍ରତିକୂଳ ହୋଇଥିବାରୁ ତାଙ୍କୁ ଭୟଙ୍କର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଛି । ଜିଆର୍ଡନୋ ବ୍ରୁନୋ (୧୫୪୮ -୧୬୦୦) କୌଣସି ଜ୍ଞାନ ଚିରନ୍ତନ ନୁହେଁ, ବାଇବେଲ୍‌ର ଜ୍ଞାନ ମିଥ୍ୟା ହୋଇପାରେ କହିବାରୁ ତାଙ୍କୁ ସର୍ବସାଧାରଣରେ ନିଆଁରେ ପୋଡି ହତ୍ୟା କରାଯାଇଛି । ବାଇବେଲର ସୃଷ୍ଟି ତତ୍ତ୍ୱ ବିରୁଦ୍ଧରେ ଜର୍ଜ ବୁଫନ୍ (୧୭୦୭-୧୭୮୮) ବିଶ୍ୱର ଉତ୍ପତ୍ତି ଓ ପ୍ରାକୃତିକ ପରିବର୍ତ୍ତନ କୋଟି କୋଟି ବର୍ଷ ଧରି ଚାଲିଆସିଥିବା କହିବାରୁ

ଧର୍ମଗୋଷ୍ଠୀ ତରଫରୁ ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଛନ୍ତି । ସୂର୍ଯ୍ୟକୈନ୍ଦ୍ରିକ ସୌରମଣ୍ଡଳ ଭାବନାକୁ ବିଜ୍ଞାନ ଆଧାରରେ ପ୍ରତିଷ୍ଠା କରିବାକୁ ଗାଲିଲିଓ ( ୧୫୬୪-୧୬୪୨ ) ଚେଷ୍ଟା କରି ବନ୍ଦୀ ଜୀବନ ବିତାଇଛନ୍ତି । ଚାର୍ଲସ ଡରୱିନ ( ୧୮୦୯-୧୮୮୨ ) ମଣିଷ ବା ପ୍ରାଣୀମାନଙ୍କୁ କୌଣସି ଈଶ୍ୱର ସୃଷ୍ଟି କରିନାହାଁନ୍ତି, ବରଂ ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଯୋଗୁଁ ମଣିଷ ଓ ପ୍ରାଣୀ ଜଗତର ଉତ୍ପତ୍ତି ହୋଇଥିବା ଭାବନା ଦେବାରୁ ବହୁ କଟାକ୍ଷ ଓ ସମାଲୋଚନାର ଶରବ୍ୟ ହୋଇଛନ୍ତି । ମୁସଲିମ୍ ସମାଜରେ ମୌଳବାଦୀ ମାନସିକତା ଏବେ ବି ଗମ୍ଭୀର ହୋଇ ରହିଛି । ଧାର୍ମିକ କୁସଂସ୍କାର ଓ ଶୋଷଣ ବିରୁଦ୍ଧରେ ନିଜର ଲେଖାରେ ସ୍ୱର ଉଠାଇଥିବାରୁ ବିଶିଷ୍ଟ ଲେଖକ ସଲମନ ରୁସିଦ୍ ଓ ତସ୍ଲିମା ନସ୍‌ରିନ୍‌ଙ୍କ ବିରୁଦ୍ଧରେ ଫତଓ୍ୱା ଜାରି ହୋଇଛି । ସେମାନେ ଭୟରେ ଆତ୍ମଗୋପନ କରି ଜୀବନ ବଞ୍ଚାଇଛନ୍ତି । ଜ୍ୟୋତିରାଓ ଫୁଲେ ଓ ବାବା ସାହେବ ଆମ୍ବେଦକରଙ୍କ ପରି ବିଶିଷ୍ଟ ସଂସ୍କାରକ ଗଣ ହିନ୍ଦୁ ସମାଜର ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉଠାଇ ଉଚ୍ଚ ଜାତିର ଲୋକଙ୍କ ଦ୍ୱାରା ନିନ୍ଦିତ ହୋଇଛନ୍ତି । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ଓ ମାନବିକ ଅଧିକାରର ବିଶିଷ୍ଟ ପ୍ରବକ୍ତା ଆବ୍ରାହମ ଲିଙ୍କନ ( ୧୮୦୯-୧୮୬୫ ) ଓ ମାର୍ଟିନ ଲୁଥର କିଙ୍ଗ୍ ଜୁନିୟରଙ୍କୁ ( ୧୯୨୯-୬୮ ) ଆମେରିକା ଭଳି ସଭ୍ୟ ସମାଜରେ ବି ହତ୍ୟା କରାଯାଇଛି । ଜ୍ଞାନ ବିଜ୍ଞାନ, ମାନବିକ ଅଧିକାର ତଥା ସାମାଜିକ ନ୍ୟାୟ କ୍ଷେତ୍ରରେ ମୌଳିକ ଅବଦାନ ଦେଇଥିବା ବହୁ ମହାନ ଚିନ୍ତାନାୟକମାନଙ୍କୁ ନିଜ ସମସାମୟିକ ସମାଜରେ ବହୁ ଦୁଃଖ ଓ ନିର୍ଯ୍ୟାତନା ସହ୍ୟ କରିବାକୁ ପଡିଛି । ଏହି କାହାଣୀ ସୁଦୀର୍ଘ ଓ ମର୍ମାନ୍ତିକ ।

ସଭ୍ୟତାର ଅଗ୍ରଗତି କିପରି ଘଟିଛି ? ବିଜ୍ଞାନର ବିକାଶ କିପରି ହୋଇଛି ? ମାନବିକ ସଭ୍ୟ ମୂଲ୍ୟବୋଧ ଗୁଡ଼ିକ ସମାଜରେ କିପରି ବିକଶିତ ହୋଇଛି ? ନୂଆ ନୂଆ ପ୍ରଯୁକ୍ତିର ଉଦ୍ଭାବନ କିପରି ହୋଇଛି ଓ କିଏ କରିଛନ୍ତି ? ପ୍ରାଣୀବିଜ୍ଞାନ ହେଉ ବା ପଦାର୍ଥ ବିଜ୍ଞାନ ହେଉ, ଚିକିତ୍ସା ବିଜ୍ଞାନ ହେଉ ବା ମନୋବିଜ୍ଞାନ ହେଉ, କୃଷି ବିଜ୍ଞାନ ହେଉ ବା ପାଗ ବିଜ୍ଞାନ ହେଉ ଏ ପ୍ରତ୍ୟେକ କ୍ଷେତ୍ରଟି ବିକଶିତ ହୋଇଛି ଗଭୀର ଅନୁଶୀଳନ, ପ୍ରକୃତିର ପର୍ଯ୍ୟବେକ୍ଷଣ ଓ ମୁକ୍ତ ମନ ଜନିତ ପରୀକ୍ଷା ନିରୀକ୍ଷାରୁ । କୌଣସି କିଛିକୁ ମାନି ନେବା, ବିଶ୍ୱାସ କରିବା ବା ଶାସ୍ତ୍ରର ବାଣୀକୁ ଆପ୍ତବଚନ ଭାବେ ନେବା ବୈଜ୍ଞାନିକ ମାନସିକତାର ପ୍ରତିକୂଳ । ନିଜର ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଓ ଏକ ସାର୍ବଜନୀନ ପ୍ରଣାଳୀ ମଧ୍ୟ ଦେଇ ଅନୁଶୀଳନ ଦ୍ୱାରା ପ୍ରକୃତିର ରହସ୍ୟ ମାନଙ୍କୁ ମଣିଷ ଜାଣିବାକୁ ସମର୍ଥ ହୋଇଛି । ପ୍ରକୃତିରେ ଯାହା କିଛି ଅଛି ବା ଆମ ଚତୁଃପାର୍ଶ୍ୱରେ ଯାହା କିଛି ଘଟୁଛି ସେହି ପ୍ରତ୍ୟକ ଘଟଣାର କେବଳ ପ୍ରାକୃତିକ କାରଣ ରହିଛି । ପ୍ରାକୃତିକ କାରଣକୁ ଜାଣିଲେ ଆମେ ପ୍ରକୃତି ଉପରେ ଆମର ନିୟନ୍ତ୍ରଣ ଆଣିପାରିବା । ଭଲ ଫସଲ ଉତ୍ପାଦନ ପାଇଁ ଉତ୍ପାଦନର କାରଣ ଓ ଆନୁଷଙ୍ଗିକ ଲକ୍ଷଣକୁ ଖୋଜିବାକୁ ହେବ । ରୋଗର ଚିକିତ୍ସା ବାହାର କରିବାକୁ ହେଲେ ରୋଗର କାରଣ ଖୋଜିବାକୁ ହେବ । ଦୂରଦର୍ଶନ, ମୋବାଇଲ ଫୋନ୍, ଇଣ୍ଟରନେଟ୍, ଏଟିଏମ୍‌ରୁ ଟଙ୍କା ଉଠାଣ ଇତ୍ୟାଦି ହାତ ପାଖର ପ୍ରଯୁକ୍ତି ଜ୍ଞାନ ପଶ୍ଚାତରେ ରହିଛି ଗଭୀର ବୈଜ୍ଞାନିକ ନିୟମ ଯାହା ମଣିଷ ନିଜର ବୁଦ୍ଧିଗତ ଅନୁଶୀଳନ ଦେଇ ହାସଲ କରିଛି । ଏ ସବୁ ମଣିଷର ସାମର୍ଥ୍ୟ ଭିତରକୁ ତର୍କ ମାଧ୍ୟମରେ ଆସିଛି, ଅର୍ଥାତ୍ ଗଭୀର ଅନୁଶୀଳନ, ପର୍ଯ୍ୟବେକ୍ଷଣ ଓ ବିଚାରଶୀଳତାରୁ ଉଦ୍ଭବ ହୋଇଛି ।

ସେହିପରି ଗଣତାନ୍ତ୍ରିକ ଜୀବନଶୈଳୀ, ମାନବିକ ଅଧିକାର, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ସାମାଜିକ ନ୍ୟାୟ, ବିଶ୍ୱଭ୍ରାତୃତ୍ୱ ଇତ୍ୟାଦି ସଭ୍ୟ ମୂଲ୍ୟବୋଧ ଗୁଡିକ ମାନବୀୟ ପରିସ୍ଥିତି ଉପରେ ଗଭୀର ଅନୁଶଳୀନରୁ ସମ୍ଭବ ହୋଇଛି । ମାନବିକ

ଦୁଃଖ, ଦୁର୍ଦ୍ଦଶା ଓ ସାମାଜିକ ସ୍ଥିତି ବିଷୟରେ ଅନୁଧାନ ଓ ଅନୁଶୀଳନରୁ ସର୍ବଜନ ହିତାୟ ଓ ଶାନ୍ତିପୂର୍ଣ୍ଣ ବିଶ୍ୱର ଭାବନା ମଣିଷ ମନକୁ ଆସିଛି । ମାନବ ଦରଦୀ ହେତୁବାଦୀମାନେ ସମାଜରୁ ଶୋଷଣ, ଅନ୍ୟାୟ, ବୈଷମ୍ୟ, ଭେଦଭାବ ମାନ ଦୂର କରି ଏକ ସୁନ୍ଦର ବିଶ୍ୱର ଚିତ୍ର ଆଙ୍କିଛନ୍ତି । ଏହି ବିଶ୍ୱକୁ ସୁନ୍ଦର, ପ୍ରୀତିମୟ କରିବାକୁ ହେଲେ ମାନବବାଦୀ ମୂଲ୍ୟଚୟକୁ ବିସ୍ତାର କରିବାକୁ ହେବ । ସେହି ବିଚାର ଓ ସଭ୍ୟ ଆଦର୍ଶଗୁଡ଼ିକ ଗଭୀର ଅନୁଶୀଳନ ଓ ଚିନ୍ତନ ଦେଇ ସମ୍ଭବ ହୋଇଛି ।

ଅର୍ଥାତ୍ ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି - ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ହେଉ କିମ୍ବା ମାନବିକ ମୂଲ୍ୟବୋଧ କ୍ଷେତ୍ରରେ ହେଉ- ପ୍ରତ୍ୟେକ କ୍ଷେତ୍ରରେ ମଣିଷର ବିଚାରଶୀଳ ଅନୁଶୀଳନ ରହିଛି । ସେହି ବିଚାରଶୀଳ ଅନୁଶୀଳନ ହିଁ ହେଉଛି 'ତର୍କ' ର ବିସ୍ତାରିତ ଅର୍ଥ । ତର୍କ ଓ ବିଶ୍ୱାସର ପରିଧି ପରସ୍ପରଠାରୁ ପୃଥକ୍ । ବିଶ୍ୱାସର ପରିଧିଟି ଭିତରେ ଦିଅଁ, ଦେବତା, ସମର୍ପଣ, ପୂଜା, ପ୍ରାର୍ଥନା, ଅତିପ୍ରାକୃତିକ ସତ୍ତା, ଚମକ୍ରାରିତା, ଭାଗ୍ୟ, ମୁକ୍ତି, ସ୍ୱର୍ଗ, ବାସ୍ତୁ, ଜ୍ୟୋତିଷ ଇତ୍ୟାଦି ଭାବନାର ପ୍ରାବଲ୍ୟ ଥିବାବେଳେ ତର୍କର ପରିଧିଟି ଭିତରେ ମୁକ୍ତ ମନ, ବୈଜ୍ଞାନିକ ଦୃଷ୍ଟି, ବିଚାରଶୀଳ ଅନୁଶୀଳନ, ବସ୍ତୁନିଷ୍ଠ ସତ୍ୟତା, ବୈଧ ଯୁକ୍ତି ଇତ୍ୟାଦି ଅନ୍ତର୍ନିହିତ ଥାଏ ।

(୩)

ବିଚାରଶୀଳତା ଓ ବିଶ୍ୱାସର ବୌଦ୍ଧିକ ପରିସର ଭିତରେ ଭିନ୍ନତା ତ ରହିଛି, ତେବେ ବିଚାରଶୀଳତା ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ହେବା ବେଳେ ବିଶ୍ୱାସର ପ୍ରାବଲ୍ୟ ଏଥିରେ ଅନ୍ତରାୟ ହୋଇଛି । ବିଚାରଶୀଳତାର ନାନା ଦିଗନ୍ତ ଭିତରେ ଏହାର ଯେଉଁ ମୌଳିକ ସିଦ୍ଧାନ୍ତ ଗୁଡ଼ିକର ସାର୍ବଜନୀନ ମୂଲ୍ୟ ରହିଛି ତାହା ହେଲା-ମୁକ୍ତ ମନ ଜନିତ ଅନୁସନ୍ଧିତ୍ସା, ବୈଜ୍ଞାନିକ ପ୍ରକୃତିବାଦ ଓ ମଣିଷର ପ୍ରୟାସରେ ଜୀବନର ଗୁଣାତ୍ମକ ବିକାଶ । ମୁକ୍ତ ମନ ଜନିତ ଅନୁସନ୍ଧିତ୍ସା ହିଁ ବୈଜ୍ଞାନିକ ଚିନ୍ତନର ଏକ ମୌଳିକ ନିଷ୍କର୍ଷ । ବିଜ୍ଞାନ ଓ ବୈଜ୍ଞାନିକ ଅନୁଶୀଳନ ଆମକୁ ବିଶ୍ୱ ସଂପର୍କରେ ସର୍ବଦା ପ୍ରଗତିଶୀଳ ଜ୍ଞାନ ଦେଇଥାଏ ଓ ବୈଜ୍ଞାନିକ ସିଦ୍ଧାନ୍ତ ନୂତନ ଅନୁଭୂତି ଓ ପର୍ଯ୍ୟବେକ୍ଷଣ ଆଧାରରେ ପରିବର୍ତ୍ତନଶୀଳ । ବୈଜ୍ଞାନିକ ପ୍ରକୃତିବାଦର ତାତ୍ପର୍ଯ୍ୟ ହେଲା ଆମ ଚତୁଃପାର୍ଶ୍ୱରେ ଯାହା କିଛି ଘଟେ ତାହା ପଶ୍ଚାତରେ ପ୍ରାକୃତିକ କାରଣ ରହିଛି, କୌଣସି ଘଟଣା ପଶ୍ଚାତରେ ଅତିପ୍ରାକୃତିକ ବା ଆଧିଦୈବିକ କାରଣ ନାହିଁ । ଏହି ସିଦ୍ଧାନ୍ତରୁ ବିଜ୍ଞାନର ବିଜୟ ଯାତ୍ରା ଅବ୍ୟାହତ ରହିଛି ଓ ବିଜ୍ଞାନ ପ୍ରକୃତିର ଅନେକ କ୍ଷେତ୍ରକୁ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଛି ଓ ଏହି ଧାରା ସଭ୍ୟତା ଥିବା ପର୍ଯ୍ୟନ୍ତ ପ୍ରାୟ ଅବ୍ୟାହତ ରହିବ । ଏହାର ତୃତୀୟ ସିଦ୍ଧାନ୍ତଟି ହେଲା ଯେ ମଣିଷର ଉଦ୍ୟମରେ ହିଁ ସବୁ କିଛି ସମ୍ଭବ ହୋଇପାରେ । ସଭ୍ୟତା ଏକ ଆଦିମ ସ୍ତରରୁ ଆଜିର ସ୍ତରକୁ ଆସିବା ଭିତରେ ରହିଛି ମଣିଷର ପ୍ରୟାସ । ମଣିଷ ଯେତେବେଳେ କୌତୂହଳୀ ହୋଇଛି ସେ ପ୍ରକୃତିର ବା ଜୀବନର ରହସ୍ୟକୁ ଉନ୍ମୋଚିତ କରିଛି । କେଉଁ ଈଶ୍ୱର ବା ଦେବତା ମଣିଷର ଜ୍ଞାନର ବିକାଶରେ ସହାୟକ ହୋଇନାହିଁ । ଯାହା କିଛି ମଣିଷ ହାସଲ କରିଛି ତାହା ପଶ୍ଚାତରେ ତାର ପ୍ରୟାସ ଓ ପ୍ରଚେଷ୍ଟା ହିଁ ରହିଛି । ମଣିଷର ଉଦ୍ୟମରେ ସଭ୍ୟତା ବିକଶିତ ହୋଇପାରେ ବା ଧ୍ୱଂସାଭିମୁଖୀ ହୋଇପାରେ, ଏହା ହିଁ ବିଚାରଶୀଳ ବା ତର୍କଶୀଳ ଦୃଷ୍ଟିର ନିଷ୍କର୍ଷ ।

ବିଶ୍ୱାସର ପରିସରଟି ବେଶ୍ ବ୍ୟାପକ । ତେବେ ଯେତେବେଳେ ବିଶ୍ୱାସ ଆଧାରହୀନ ହୁଏ ଓ ବିଶ୍ୱାସ ପଛରେ କୌଣସି ବିଚାରସମ୍ମତ କାରଣ ରହେ ନାହିଁ, ସେତେବେଳେ ଏହା କୁସଂସ୍କାରରେ ପରିଣତ ହୁଏ । ତେବେ ଆମେ

ଏଠାରେ ଧାର୍ମିକ ବିଶ୍ୱାସ ସଂପର୍କରେ ସାମାନ୍ୟ ସୂଚନା ଦେବା । ପ୍ରତ୍ୟେକ ଧର୍ମର ମୌଳିକ ସିଦ୍ଧାନ୍ତ ଗୁଡିକ ପ୍ରାୟତଃ ବିଶ୍ୱାସ ଉପରେ ଆଧାରିତ । ବିଶେଷ କରି କେତେକ ତାତ୍ତ୍ୱିକ ପ୍ରଶ୍ନ, ଯଥା-ଜଗତର ସର୍ବୋତ୍ତମ ସତ୍ତା କ'ଣ, ଈଶ୍ୱରଙ୍କ ସ୍ୱରୂପ କିପରି, ଈଶ୍ୱର ଏକ ବ୍ୟକ୍ତି ସତ୍ତା ନା ଅବ୍ୟକ୍ତିକ, ବ୍ୟକ୍ତି ଭିତରେ କୌଣସି ଆତ୍ମା ରହିଛି କି, ଆତ୍ମା ମୃତ୍ୟୁ ପରେ ରହେ କି, ଆତ୍ମାର ସ୍ୱରୂପ କ'ଣ, ପୁନର୍ଜନ୍ମ ଅଛି ନା ନାହିଁ- ଇତ୍ୟାଦି ପ୍ରଶ୍ନ ଉପରେ ପ୍ରତ୍ୟେକ ଧର୍ମ ନିଜସ୍ୱ ସିଦ୍ଧାନ୍ତ ମାନ ରଖିଛନ୍ତି । ପୁନଶ୍ଚ ପ୍ରତ୍ୟେକ ଧର୍ମ ପରମ୍ପରାରେ ଏହି ସଂପର୍କୀୟ ବିଶ୍ୱାସଗୁଡ଼ିକ ଧ୍ରୁବ ସତ୍ୟ ବୋଲି ଗ୍ରହଣ କରାଯାଏ । ପ୍ରତ୍ୟେକ ଧର୍ମର ନିଜସ୍ୱ ଧର୍ମଶାସ୍ତ୍ର ରହିଛି ଓ ଧର୍ମଶାସ୍ତ୍ରରେ ଯାହା ଉଲ୍ଲେଖ ରହିଛି ତାହା ଈଶ୍ୱର ପ୍ରଦତ୍ତ ଜ୍ଞାନ (Divine revelation) ବୋଲି ଧର୍ମଗୋଷ୍ଠୀରେ ବିଶ୍ୱାସ କରାଯାଏ । ତେବେ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ଏହା ଜଣାପଡ଼େ ଯେ ଧାର୍ମିକ ସିଦ୍ଧାନ୍ତମାନଙ୍କ ଭିତରେ ବିରୋଧାଭାସ ରହିଛି ଓ ଗୋଟିଏ ଧର୍ମର ସିଦ୍ଧାନ୍ତ ସତ୍ୟ ହେଲେ ଅନ୍ୟ ଧର୍ମର ସିଦ୍ଧାନ୍ତ ମାନ ମିଥ୍ୟା ହେବ । ଉପରେ ସୂଚିତ ପ୍ରଶ୍ନମାନଙ୍କ ଉପରେ ଯେକୌଣସି ଦୁଇଟି ଧର୍ମର ସିଦ୍ଧାନ୍ତ ସମାନ ନୁହେଁ । ଏହି ପରିପ୍ରେକ୍ଷୀରେ ସମସ୍ତ ଧାର୍ମିକ ସିଦ୍ଧାନ୍ତ ସକଳ ଯେ କେବଳ ପ୍ରାଚୀନ ଯୁଗର ବିଶ୍ୱାସ ଯାହା ପଶ୍ଚାତରେ କୌଣସି ଆନୁଭବିକ ବା ବିଚାରଶୀଳ ଆଧାର ନାହିଁ ତାହା କାଳକ୍ରମେ ସ୍ପଷ୍ଟ ହୋଇଛି । ପ୍ରତ୍ୟେକ ଧର୍ମ ଯେଉଁ ମୌଳିକ ତାତ୍ତ୍ୱିକ ବିଚାର ଉପରେ ଆଧାରିତ, ସେହି ତାତ୍ତ୍ୱିକ ସିଦ୍ଧାନ୍ତ ଗୁଡିକ ଯେ କେବଳ ବିଶ୍ୱାସ ଓ କଳ୍ପନା ଏହା ନିଃସନ୍ଦେହ, ତେବେ ଧାର୍ମିକ ବିଶ୍ୱାସ ମାନଙ୍କର ବ୍ୟାବହାରିକ ଉପଯୋଗିତା ଥାଇପାରେ, କିନ୍ତୁ ସେଗୁଡିକ ଯେ ସତ୍ୟବଚନ ନୁହେଁ ତାହା କାଳକ୍ରମେ ସ୍ୱୀକୃତ ହୋଇଯାଇଛି । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ପ୍ରବାହ ଭାବେ ନାନା ବିଶ୍ୱାସ, ତାତ୍ତ୍ୱିକ କଳ୍ପନା, ମିଥ୍, କିମ୍ବଦନ୍ତୀ, କର୍ମକାଣ୍ଡ ଓ କେତେକ ନୀତିବୋଧର ଆଧାର ଉପରେ ଗଢ଼ି ଉଠିଥିବା ଐତିହାସିକ ଅନୁଶୀଳନରୁ ସ୍ପଷ୍ଟ ହୋଇଥାଏ ।

ତେବେ ଧାର୍ମିକ ଭାବନାଗୁଡ଼ିକ ବିଶ୍ୱାସ ଆଧାରିତ ହେଲେ ବି ଧାର୍ମିକ ବିଶ୍ୱାସ ଏପରି ଉଗ୍ରବାଦ ଓ ଅସହିଷ୍ଣୁତାର ବାତାବରଣ ପୃଥିବୀରେ ସୃଷ୍ଟି କରିଛି ଯାହା ମଣିଷ ସମାଜକୁ ଭାଗ ଭାଗ କରିବାରେ ମୁଖ୍ୟ ଭୂମିକା ନେଇଛି । ବିଭିନ୍ନ ଦେଶରେ ଧାର୍ମିକ ଉଗ୍ରବାଦ କିପରି ହିଂସା ଓ ଘୃଣାର ବାତାବରଣ ଆଣିଛି ତାହାର କେତୋଟି ଉଦାହରଣ ସାଂପ୍ରତିକ ଘଟଣା ପ୍ରବାହରୁ ଦିଆଯାଇପାରେ । ଇସ୍ରାଏଲରେ ଜିଉ ଓ ମୁସଲମାନମାନେ ପରସ୍ପରର ଚିର ଶତ୍ରୁ ଭଳି ବ୍ୟବହାର କରିଥାନ୍ତି । ଇରାକ୍ ଓ ଇରାନ୍‌ରେ ସିହା ଓ ସୁନି ମୁସଲମାନ ପରସ୍ପରର ବିରୋଧି ହୋଇ ପରସ୍ପର ଭିତରେ ସଂଘର୍ଷ କରିଆସିଛନ୍ତି । ଲେବାନନରେ କେତେକ ଧାର୍ମିକ ଗୋଷ୍ଠୀ ଭିତରେ ବିବାଦ ଏତେ ମଜ୍ଜାଗତ ହୋଇରହିଛି ଯେ, ସେଠାରେ ସର୍ବଦା ସାଂପ୍ରଦାୟିକ ତିକ୍ତତା ଲାଗିରହିଛି । ଉତ୍ତର ଆୟରଲାଣ୍ଡରେ କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟିଆନ୍‌ମାନେ ସର୍ବଦା ବିବାଦ ଭିତରେ ସଂଘର୍ଷ କରି ଆସୁଛନ୍ତି । ଭାରତ ଓ ପାକିସ୍ତାନ ମଧ୍ୟରେ ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଧାର୍ମିକ ମାନସିକତାକୁ ନେଇ ତିକ୍ତତାର ପରିବେଶ ରହିଛି । ଗୋଟିଏ ଧର୍ମବିଶ୍ୱାସୀ ଲୋକମାନେ ଅନ୍ୟ ଧର୍ମର ପୂଜାସ୍ଥଳୀକୁ ଧ୍ୱଂସ କରିବାକୁ ଈଶ୍ୱରୀୟ କାର୍ଯ୍ୟ ବୋଲି ମନେ କରୁଛନ୍ତି । ଏପରିକି ଧର୍ମରୁ ପ୍ରେରଣା ନେଇ ସନ୍ତ୍ରାସବାଦୀ କାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତି ବିଶ୍ୱାସ କରିଥାନ୍ତି ଯେ ଅନ୍ୟ ଧର୍ମର ଲୋକଙ୍କୁ ହତ୍ୟା କଲେ ସେମାନେ ବୀରର ସମ୍ମାନ ପାଇବେ, ମୃତ୍ୟୁ ବରଣ କଲେ ଶହୀଦ୍‌ର ସମ୍ମାନ ପାଇବା ସହ ସ୍ୱର୍ଗପ୍ରାପ୍ତ ହେବେ । ଆମ ଦେଶର ସାମାଜିକ ପୃଷ୍ଠଭୂମିରେ ଶୂଦ୍ର ଓ ଦଳିତମାନଙ୍କୁ ଶହ ଶହ ବର୍ଷ ଧରି ମାନବିକ ଅଧିକାରରୁ ବଞ୍ଚିତ କରି ରଖିବା ପଶ୍ଚାତରେ ଧର୍ମଗ୍ରନ୍ଥର ଯେ ପ୍ରେରଣା ରହିଥିଲା ଏହା

ଅନସ୍ୱୀକାର୍ଯ୍ୟ । ସବୁ ସଂସ୍କୃତିରେ ଧାର୍ମିକ ବିଶ୍ୱାସର ନୈତିକ ଆବେଦନ ଗୁଡ଼ିକ କେତେକ ବ୍ୟକ୍ତିଙ୍କୁ ପ୍ରଭାବିତ କରିଥିଲେ ବି ଏହା ଉଗ୍ରବାଦ, ସାଂପ୍ରଦାୟିକତା, ମୌଳବାଦ ଓ ଅସହିଷ୍ଣୁତାର ମନୋଭାବ ମଧ୍ୟ ସୃଷ୍ଟି କରିଛି । ପୃଥିବୀରେ ଯେତେ ସଂଘର୍ଷ ହୋଇଛି ତା ତୁଳନାରେ ଧର୍ମ ଯୁଦ୍ଧ ବହୁ ଗୁଣରେ ହୋଇଛି ଯାହାକି ପୃଥିବୀକୁ ବହୁ ଭାବରେ ରକ୍ତରଞ୍ଜିତ କରିଛି । ଧାର୍ମିକ ବିଶ୍ୱାସ ସଭ୍ୟତା ପାଇଁ କେତେ ଅହିତକର ହୋଇଛି ତାହାର ବହୁ ଚିତ୍ର ଧର୍ମର ସମାଜଶାସ୍ତ୍ରିକ ଅନୁଧ୍ୟାନରୁ ଜଣାପଡ଼େ । ଯେଉଁଠି ଧର୍ମ ମାନବିକତା, ଭାତୃଭାବ ଓ ପ୍ରେମର ବାର୍ତ୍ତା ଦିଏ, ତାହାକୁ କେହି ବିରୋଧ କରିବେ ନାହିଁ, କିନ୍ତୁ ଧର୍ମ ଯେଉଁଠି ଉଗ୍ରବାଦ, ସାଂପ୍ରଦାୟିକତା ଓ ଘୃଣାର ମନୋଭାବ ସୃଷ୍ଟି କରେ, ତାହା ନିଶ୍ଚୟ ନିନ୍ଦନୀୟ ଓ ବର୍ଜନୀୟ ।

(୪)

ସଭ୍ୟତାର ଆରମ୍ଭ ଠାରୁ ସାଂପ୍ରତିକ ଯୁଗ ପର୍ଯ୍ୟନ୍ତ, ମଣିଷ ସମାଜକୁ ଧର୍ମ-ବିଶ୍ୱାସ ପୃଷ୍ଠଭୂମିରେ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଅଗଣିତ ବ୍ୟକ୍ତି ଓ ସାଧାରଣ ଜନତା ଧର୍ମ ଏବଂ ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସୀ ଓ ଖୁବ୍ ମୁଷ୍ଟିମେୟ ବ୍ୟକ୍ତି ଯେଉଁମାନେ ପ୍ରାଜ୍ଞ, ବୁଦ୍ଧିଜୀବୀ (ଇଲିଟ) ସେମାନେ ଏ ସବୁରେ ସନ୍ଦେହ ପ୍ରକାଶ କରିଥାନ୍ତି । ତେବେ ଯେଉଁ ମୁଷ୍ଟିମେୟ ପ୍ରଜ୍ଞାବାନ ବ୍ୟକ୍ତିମାନେ ଧର୍ମ ଓ ଅତିପ୍ରାକୃତିକ ସତ୍ତାରେ ସନ୍ଦେହ ପୋଷଣ କରି ଆସିଛନ୍ତି (ସେମାନେ ସାଧାରଣତଃ ରିଲିଜିଅସ୍ ନନକନ୍‌ଫର୍ମିଷ୍ଟ) ସେମାନେ ଜ୍ଞାନରାଜ୍ୟକୁ ଓ ସମାଜର ଗୁଣାତ୍ମକ ବିକାଶକୁ ବହୁ ଅମୂଲ୍ୟ ଅବଦାନ ଦେଇଛନ୍ତି । ଜ୍ଞାନ, ପ୍ରଯୁକ୍ତି କ୍ଷେତ୍ରରେ ହେଉ ବା ଉତ୍ତମ ସମାଜ କଳ୍ପନା କ୍ଷେତ୍ରରେ ହେଉ ଏହି ଅନୁସନ୍ଧିତ୍ସୁ ନନକନ୍‌ଫର୍ମିଷ୍ଟ ମାନଙ୍କର ମୌଳିକ ଅବଦାନ ଯୋଗୁଁ ସଭ୍ୟତା ଆଗକୁ ଯାଇଛି ଓ ଗୁଣାତ୍ମକ ଜୀବନର ପ୍ରେରଣା ସୃଷ୍ଟି ହୋଇଛି । ଅବଶ୍ୟ ଏହି ମୁକ୍ତ ଚିନ୍ତକମାନେ ସେମାନଙ୍କର ସମସାମୟିକ ସମାଜରେ ନାନା ନିର୍ଯାତନା ସହ୍ୟ କରିଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ବା ମୃତ୍ୟୁଦଣ୍ଡ ପାଇଛନ୍ତି ତଥାପି ସେମାନେ ସଭ୍ୟତାକୁ ଆଗକୁ ନେଇଛନ୍ତି ଓ ଚିନ୍ତାରାଜ୍ୟରେ ଅମରକୀର୍ତ୍ତିର ଅଧିକାରୀ ହୋଇଛନ୍ତି । ସେମାନଙ୍କୁ ସମାଜ ନାସ୍ତିକ, ଧର୍ମଦ୍ରୋହୀ, ଅବିଶ୍ୱାସୀ ବା ସେପରି କିଛି ଭାଷାରେ କଟୁକ୍ତି କରିଛି । ତଥାପି ସେହି ମୁଷ୍ଟିମେୟ ମୁକ୍ତ-ଚିନ୍ତକ ମାନେ ସଭ୍ୟତାକୁ ଆଲୋକ ଦେଇଛନ୍ତି । ସେହି ରିଲିଜିଅସ୍ ନନକନ୍‌ଫର୍ମିଷ୍ଟ (ପ୍ରଚଳିତ ଆନୁଷ୍ଠାନିକ ଧର୍ମରେ ବିଶ୍ୱାସ କରିନଥିବା) ମାନେ ଆଗ୍ନୋଷ୍ଟିକ୍, ନିରୀଶ୍ୱରବାଦୀ, ହେତୁବାଦୀ, ବସ୍ତୁବାଦୀ, ବୁଦ୍ଧିବାଦୀ, ଯୁକ୍ତିବାଦୀ ଯାହା କିଛି ହେଲେ ବି ସେମାନେ ମାନବବାଦୀ । ମାନବବାଦୀମାନେ ମଣିଷର ମହତ୍ତ୍ୱକୁ ପ୍ରାଧାନ୍ୟ ଦିଅନ୍ତି ଓ ମଣିଷର ପ୍ରୟାସରେ ଜୀବନର ଗୁଣାତ୍ମକମାନ ବୃଦ୍ଧି ହେବ ବୋଲି ବିଶ୍ୱାସ କରନ୍ତି ।

ସର୍ବସାଧାରଣରେ ଏହି ବିଶ୍ୱାସ ଅତି ବ୍ୟାପକ ଯେ ଈଶ୍ୱର (ଈଶ୍ୱର ଏକ ବା ଏକାଧିକ ହୋଇପାରନ୍ତି । ହିନ୍ଦୁ ବିଶ୍ୱାସ ଅନୁଯାୟୀ ତେତିଶ କୋଟି) ହେଉଛନ୍ତି ଏକ ଅତିପ୍ରାକୃତିକ ସତ୍ତା । ସେହି ଈଶ୍ୱର ଏହି ଜଗତର ସ୍ରଷ୍ଟା, ପାଳନ କର୍ତ୍ତା ଓ ସଂହର୍ତ୍ତା । ହେତୁବାଦୀମାନେ ଏହି ବିଶ୍ୱାସକୁ ସନ୍ଦେହ କରିଆସିଛନ୍ତି । କେତେକଙ୍କ ମତରେ ବିଶ୍ୱରେ ଥିବା ଶକ୍ତି ହିଁ ଈଶ୍ୱର । କେତେକଙ୍କ ମତରେ ମଣିଷ ଭିତରେ ଥିବା ସ୍ନେହ, ପ୍ରୀତି, କରୁଣା ହିଁ ଈଶ୍ୱର । କାହା ପାଇଁ ଈଶ୍ୱର ଏକ ବ୍ୟକ୍ତି ସତ୍ତା ଓ କାହା ପାଇଁ ଈଶ୍ୱର ଅବ୍ୟକ୍ତିକ । କେତେକ ବିଶ୍ୱାସ କରନ୍ତି ଯେ ମୃତ୍ୟୁ ପରେ ସ୍ୱର୍ଗରେ ଈଶ୍ୱରଙ୍କ ସାନ୍ନିଧ୍ୟ ମିଳିବ । ଅନ୍ୟମାନେ ବିଶ୍ୱାସ କରନ୍ତି ଯେ ମୁକ୍ତି ମିଳିଲେ ଈଶ୍ୱରଙ୍କ ଠାରେ ଆତ୍ମା ଲୀନ ହୋଇଯିବ । କିଏ କିଏ ଭାବନ୍ତି ପାପ ବୃଦ୍ଧି ହେଲେ ଈଶ୍ୱର ମଣିଷ ଭାବେ ଜନ୍ମ ନେଇ ପାପୀମାନଙ୍କୁ ସଂହାର କରି ଧର୍ମ ସଂସ୍ଥାପନ କରନ୍ତି । ଅନ୍ୟ କେହି ଭାବନ୍ତି ଯେ

ଈଶ୍ୱର କେବେ ବି ଜନ୍ମ ନିଅନ୍ତି ନାହିଁ । ଯେ ସର୍ବଶକ୍ତିମାନ ସେ ଯେଉଁଠି ରହିଲେ ବି ସଂସାରରେ ସବୁ କିଛି ସୁବ୍ୟବସ୍ଥିତ କରିଦେଇ ପାରିବେ । ତେବେ ଏ ସବୁ କିଛିକୁ ହେତୁବାଦୀମାନେ କେବଳ ବିଶ୍ୱାସ କହି ସନ୍ଦେହ କରି ଆସିଛନ୍ତି ।

ଯେଉଁମାନେ ସହଜ ବିଶ୍ୱାସ ଭିତରେ ଭାସି ନଯାଇ ସନ୍ଦେହ କରିଛନ୍ତି, ତର୍କ କରିଛନ୍ତି, ଯୁକ୍ତିଗତ ବା ତଥ୍ୟଗତ ଆଧାର ଖୋଜିଛନ୍ତି, ସେମାନଙ୍କୁ ସମାଜ ନାସ୍ତିକ ବା ଆଗ୍ନୋଷ୍ଟିକ ବା ଅନ୍ୟ କିଛି କହିଛି । ତେବେ ସେହିମାନଙ୍କର ସନ୍ଦେହର ଉପଯୁକ୍ତ କାରଣ ବି ରହିଛି । ଯଦି ଈଶ୍ୱର ସର୍ବଶକ୍ତିମାନ, କରୁଣାମୟ ଓ ସର୍ବନିୟନ୍ତା ତେବେ ତାଙ୍କ ସୃଷ୍ଟିରେ ଏତେ ଦୁଃଖ, ଅନ୍ୟାୟ, ଯୁଦ୍ଧ, ବିଭୀଷିକା, ଶୋଷଣ, ଯନ୍ତଣା ଇତ୍ୟାଦି ମନ୍ଦ ବା ଇଭିଲ କାହିଁକି ରହିଛି ? ଯାହା କିଛି ଆମ ସଂସାରରେ ବା ଚତୁଃପାର୍ଶ୍ୱରେ ଘଟୁଛି ତାହା ଯଦି ଈଶ୍ୱରଙ୍କ ଦ୍ୱାରା ନିୟନ୍ତ୍ରିତ, ତେବେ କ'ଣ ଏଡସ୍ ଓ କର୍କଟ ରୋଗ ବି ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇଛି ? କୁଷ୍ଠ ରୋଗରେ ଯେଉଁମାନେ ଯନ୍ତଣା ଜର୍ଜରିତ ହୋଇଛନ୍ତି, ଏପରିକି ଯେଉଁ ଶିଶୁମାନେ ରକ୍ତ କର୍କଟରେ ଆକ୍ରାନ୍ତ ହୋଇ ଜୀବନ-ମୃତ୍ୟୁ ସହ ସଂଗ୍ରାମ କରି ବଞ୍ଚିଛନ୍ତି ଏସବୁ କ'ଣ ଈଶ୍ୱରଙ୍କ ସୃଷ୍ଟି ? ହେତୁବାଦୀ ଓ ମାନବଦରଦୀ ଜେରହାର୍ଡ ହାନସନ କୁଷ୍ଠରୋଗର ଚିକିତ୍ସା ଓ କାରଣ ବାହାର କରିବାକୁ ଯାଇ ଜୀବନସାରା ଗବେଷଣା କରି ସଫଳ ହୋଇଛନ୍ତି । ସେହିପରି ହୁଏତ ମଣିଷର ପ୍ରୟାସରେ ଦିନେ କର୍କଟ ବା ଏଡସ୍ ରୋଗର ନିଦାନ ବାହାରି ପାରିବ । ଈଶ୍ୱରଙ୍କ ସୃଷ୍ଟିରେ ଏତେ ଦୁଃଖ ଦୁର୍ଦ୍ଦଶା ରହିବା ଓ ସେଥିରେ କେତେକ ଦରଦୀ ପ୍ରାଣ ଅଭିଭୂତ ହୋଇ ତାହାର ନିରାକରଣ ପାଇଁ ଜୀବନ ଉତ୍ସର୍ଗ କରୁଥିବା ବେଳେ ଈଶ୍ୱର କିପରି ସର୍ବଶକ୍ତିମାନ ବା କରୁଣାମୟ ହୋଇ ମାନବିକ ଦୁର୍ଦ୍ଦଶା ପ୍ରତି ଉଦାସୀନ ? ବିଶ୍ୱାସର ପରିଧି ଭିତରେ ଏହାର କ'ଣ ସନ୍ତୋଷ ଜନକ ବ୍ୟାଖ୍ୟା ଦିଆଯିବ ?

ଈଶ୍ୱର ଭାବନା ଅତିପ୍ରାକୃତିକ ଚିନ୍ତାର ଏକ ଅପରିହାର୍ଯ୍ୟ ଅଙ୍ଗ । ପ୍ରକୃତିରେ ନିଶ୍ଚୟ ଅନେକ ରହସ୍ୟ ରହିଛି । ଜୀବନର ଅନେକ ଘନଘଟା ଏବେ ବି ମଣିଷ ପ୍ରଜ୍ଞାର ବହିର୍ଭୂତ ମନେହୁଏ । ଏହି ଅଜ୍ଞତା ପୃଷ୍ଠଭୂମିରେ ଈଶ୍ୱର ହିଁ ବିଶ୍ୱାସ ପରିସରକୁ ଆସନ୍ତି । ଆଗେ ତ ସବୁ କିଛି ଈଶ୍ୱରକୃତ, ଈଶ୍ୱର ନିୟନ୍ତ୍ରିତ ବୋଲି ବିଶ୍ୱାସ ରହିଥିଲା । ଜ୍ଞାନର ଆଲୋକ ଯେତିକି ପ୍ରସାରିତ ହୋଇଚାଲିଛି ଈଶ୍ୱରଙ୍କ ପରିଧିଟି ସେତେ ସଙ୍କୁଚିତ ହୋଇଆସୁଛି । ଈଶ୍ୱର ସର୍ବଦା ଅଜ୍ଞତାର ଇଲାକାରେ ରହିଛନ୍ତି । ତେବେ ବିଡ଼ମ୍ବନାର ବିଷୟ ଜ୍ଞାନର ଆଲୋକ ବିସ୍ତାର କରୁଥିବା ଅନେକ ବ୍ୟକ୍ତି ହେଉଛନ୍ତି ଅତିପ୍ରାକୃତିକ ସତ୍ତାରେ ଅବିଶ୍ୱାସୀ ବା ରିଲିଜିଅସ୍ ନନକନ୍‌ଫର୍ମିଷ୍ଟ ।

ବାସ୍ତବରେ ଅଗଣିତ ମଣିଷ ଅତିପ୍ରାକୃତିକ ଶକ୍ତିରେ ଗଭୀର ଆସ୍ଥା ସ୍ଥାପନ କରିଆସିଛନ୍ତି । ସେମାନଙ୍କ ଜୀବନଧାରାରେ ଧର୍ମୀୟ ବିଶ୍ୱାସ ଓ ଈଶ୍ୱରଙ୍କ ଉପରେ ଗଭୀର ଆସ୍ଥା ବଦ୍ଧମୂଳ ହୋଇଯାଇଛି । ଏହାର ମନସ୍ତାତ୍ତ୍ୱିକ ବ୍ୟାଖ୍ୟା ସିଗମଣ୍ଡ ଫ୍ରଏଡ଼ ସୁନ୍ଦର ଭାବେ କରିଛନ୍ତି । ଛୋଟ ଶିଶୁମାନେ ନିଜର ବାପାଙ୍କ ବ୍ୟବହାରରେ ଭୟଭୀତ ହୋଇ ନିଜ ବାପାଙ୍କୁ ଶକ୍ତିଶାଳୀ ଓ ଆବଶ୍ୟକ ବେଳେ ଦଣ୍ଡଦାତା ବୋଲି ଭାବିଥାନ୍ତି । ସେମାନଙ୍କର ବୟସ ବୃଦ୍ଧି ହେଲେ ଓ ଚିନ୍ତା ଚେତନାର ବିକାଶ ହେଲେ ସେମାନେ ବାପାଙ୍କୁ ଆଉ ଭୟ କରନ୍ତି ନାହିଁ । ତେବେ ତାଙ୍କ ମନରେ ସୃଷ୍ଟି ହୋଇଥିବା ଭୟ ପରବର୍ତ୍ତୀ ସମୟରେ ସାମାଜିକ ପ୍ରଭାବ ଯୋଗୁଁ ଈଶ୍ୱରଙ୍କ ପ୍ରତି ଭକ୍ତିମିଶା ଭୟରେ ରୂପାନ୍ତରିତ ହୋଇଯାଏ । ତାଙ୍କ ପାଇଁ ଈଶ୍ୱର ଏକ ସର୍ବଶକ୍ତିମାନ କିନ୍ତୁ ଅଦୃଶ୍ୟ ଅତିପ୍ରାକୃତିକ ଶକ୍ତିରେ ପରିଣତ ହୋଇଯାନ୍ତି । ବିଶ୍ୱାସୀମାନେ ଈଶ୍ୱରଙ୍କୁ ଭକ୍ତିରେ

ଓ ଭୟରେ ପ୍ରାର୍ଥନା କରନ୍ତି ଓ ବିପଦ ବେଳେ ସେ ସହାୟକ ହେବେ ବୋଲି ଧରି ନିଅନ୍ତି । କିନ୍ତୁ ଏହା ଏକ ବିଶ୍ୱାସ ମାତ୍ର ଯାହା ନାନା ମନସ୍ତାତ୍ତ୍ୱିକ ଆବେଗ ଓ ସାମାଜିକ ପ୍ରଭାବର ସମ୍ମିଳିତ ପ୍ରଭାବରୁ ବ୍ୟକ୍ତି ଚେତନାରେ ରହିଆସିଛି ।

ବିଚାରଶୀଳ ଦୃଷ୍ଟି ଜନିତ ବୁଦ୍ଧିର ବିକାଶ ଓ ମାନବିକ ମୂଲ୍ୟବୋଧ ଜନିତ ସମ୍ବେଦନଶୀଳତାର ବିକାଶ ଭିତରେ ଜୀବନର ଗୁଣାତ୍ମକ ମାନ ନିହିତ । ସମାଜର ଅଗଣିତ ମଣିଷ ଚିନ୍ତା କରନ୍ତି ନାହିଁ ବା ବୌଦ୍ଧିକ କୌତୂହଳତା ପ୍ରକାଶ କରନ୍ତି ନାହିଁ । ସେମାନେ ସାଧାରଣ ଜୀବନ ବଞ୍ଚନ୍ତି । ପ୍ରଚଳିତ ଗୁଳାରେ ଚାଲନ୍ତି ଓ ସମାଜର ଚିରାଚରିତ ବିଶ୍ୱାସର ଅଙ୍ଗ ହୋଇଯାଆନ୍ତି । କିନ୍ତୁ ମୁଷ୍ଟିମେୟ ବ୍ୟକ୍ତି ପ୍ରଶ୍ନ କରନ୍ତି, ନୂଆ ବାଟ ଖୋଜନ୍ତି, ଅନୁସନ୍ଧିତ୍ସୁ ହୁଅନ୍ତି ଓ ଉତ୍ତମ ଜୀବନ ତଥା ସମାଜର ସ୍ୱପ୍ନ ଦେଖନ୍ତି । ଏହି ଶ୍ରେଣୀର ଲୋକଙ୍କ ସଂଖ୍ୟା ସଭ୍ୟତାର ଇତିହାସରେ ମୁଷ୍ଟିମେୟ । ତଥାପି ସେହିମାନଙ୍କର ପ୍ରୟାସ ଯୋଗୁଁ ସଭ୍ୟତା ଆଗକୁ ଯାଏ, ମାନବିକ ଶ୍ରେୟ ନେଇ ବିଚାର ସୃଷ୍ଟି ହୁଏ । ସେହିମାନଙ୍କର ତର୍କଶୀଳ ଅବଦାନର ସୁଫଳ ସମାଜ ପାଏ । ସେହି ପ୍ରଜ୍ଞାବାନ ଓ ସୃଜନଶୀଳ ବ୍ୟକ୍ତିମାନଙ୍କର ତ୍ୟାଗ, ନିଷ୍ଠା ଓ ଅନୁସନ୍ଧାନରୁ ପ୍ରାପ୍ତ ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତିର ସୁଫଳ ଚିନ୍ତା କରୁନଥିବା ମଣିଷମାନେ ବେଶି ଉପଭୋଗ କରନ୍ତି ।



# ହେତୁବାଦ ଓ ଜୀବନର ମୂଲ୍ୟ

ଜୀବନର ମୂଲ୍ୟ କେଉଁଥିରେ ନିହିତ ? ଅନ୍ୟ ଭାବରେ କହିଲେ ଉତ୍ତମ ଜୀବନ କାହାକୁ କହିବା ? ଏହାର କୌଣସି ମାନଦଣ୍ଡ ରହିଛି କି ? ଆମେ କାହିଁକି ବଞ୍ଚୁଛେ ? ବଞ୍ଚିବାର କିଛି ଅର୍ଥ ଅଛି କି ? ଜୀବନ କିପରି ଅର୍ଥପୂର୍ଣ୍ଣ ହେବ ? ଏହି ପ୍ରଶ୍ନଗୁଡ଼ିକ ଉପରେ ଧର୍ମ, ଦର୍ଶନ, ସୃଜନଶୀଳ ସାହିତ୍ୟ, ମନୋବିଜ୍ଞାନ ପରିସରରେ ଅନେକ କିଛି ଆଲୋଚନା ହୋଇଛି । ତେବେ ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବା ଏତେ ସହଜ ମନେ ହୁଏ ନାହିଁ । ମଣିଷର ସ୍ୱରୂପ, ଆଚରଣ, କର୍ମ, ଜୀବନଦୃଷ୍ଟି ଇତ୍ୟାଦି କ୍ଷେତ୍ରରେ ଏତେ ଭିନ୍ନତା ଓ ବିରୋଧାଭାସ ଦେଖିବାକୁ ମିଳେ ଯଦ୍ୱାରା ଜୀବନର ଅର୍ଥ ଓ ମୂଲ୍ୟ ନିରୂପଣ କରିବା ସହଜ ସାଧ ବୋଧ ହୁଏନାହିଁ । ମଣିଷ ସ୍ୱଭାବରେ ଯେପରି କୋମଳଭାବ ରହିଛି ସେହିପରି ଭୟଙ୍କର ପାଶବିକ ପ୍ରବୃତ୍ତି ରହିଛି । ମଣିଷ ଭିତରେ ସ୍ନେହ, ପ୍ରୀତି, କରୁଣା, ଦୟା, ଶାନ୍ତ ସ୍ୱଭାବ ଯେପରି ରହିଛି, ସେହିପରି ଈର୍ଷା, ଘୃଣା, ସ୍ୱାର୍ଥପରତା, ନିଷ୍ଠୁରତା ମଧ ରହିଛି । କେତେକ ବ୍ୟକ୍ତି ଅନ୍ୟର ସେବା ଓ ମଙ୍ଗଳ ପାଇଁ ଜୀବନକୁ ଉତ୍ସର୍ଗ କରିବା ଯେପରି ଦେଖାଯାଏ, ସେହିପରି ଅନ୍ୟ କେତେକ ବ୍ୟକ୍ତିଙ୍କ ସ୍ୱରୂପ ଏ ପ୍ରକାର ଯେ ସେମାନେ ଅନ୍ୟକୁ ଯନ୍ତ୍ରଣା ଦେବାରେ ଓ ଅନ୍ୟ ପ୍ରତି ନିଷ୍ଠୁର ଆଚରଣ ପ୍ରଦର୍ଶନ କରିବାରେ ବି ଖୁସି ହୁଅନ୍ତି । ବ୍ୟକ୍ତି - ଚରିତ୍ରରେ ଓ ସ୍ୱଭାବରେ ଏପରି ବିରୋଧାଭାସ ଦେଖାଯିବା ବେଳେ ଜୀବନର ଅର୍ଥ ଓ ମୂଲ୍ୟ ନିର୍ଣ୍ଣୟ କରିବା ଜଟିଳ ମନେ ହୁଏ । ଏହି ପୃଷ୍ଠଭୂମିରେ ଶଂସିତ ପ୍ରବନ୍ଧରେ ଉତ୍ତମ ଜୀବନର ସ୍ୱରୂପ ବିଷୟରେ କେତେକ ସାଧାରଣ ଆଲୋଚନା ସହ ଧାର୍ମିକ ଜୀବନଦୃଷ୍ଟି ଓ ହେତୁବାଦୀ ଜୀବନଦୃଷ୍ଟି ବିଷୟରେ ସୂଚନା ଦେବା ମୋର ଲକ୍ଷ୍ୟ । ତେବେ ଏହି ପ୍ରତ୍ୟେକଟି ପ୍ରସଙ୍ଗ ଅତି ଜଟିଳ ଓ ବ୍ୟାପକ ହୋଇଥିବାରୁ ଏ ସବୁର ଏକ ବିସ୍ତୃତ ବ୍ୟାଖ୍ୟା ଦେବା ସମ୍ଭବ ନୁହେଁ । ସୁତରାଂ ଏହି ସବୁ ପ୍ରସଙ୍ଗ ଉପରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ଅବତାରଣା କରିବା ପ୍ରବନ୍ଧଟିର ଉଦ୍ଦେଶ୍ୟ ।

ଉତ୍ତମ ଜୀବନ କାହାକୁ କୁହାଯିବ ? ଭଲ, ଉତ୍ତମ, ସୁନ୍ଦର ଇତ୍ୟାଦିର ସଂଜ୍ଞା ଦେବା ଜଟିଳ ମନେହୁଏ । ଏହାର ଏକ ସାର୍ବଜନୀନ ସଂଜ୍ଞା ଦେବା ସମ୍ଭବତଃ ସହଜ ନୁହେଁ । କିଛିକୁ ଭଲ ବା ଉତ୍ତମ କହିବାର ଏକ ସାଧାରଣ ଲକ୍ଷଣ ହେଉଛି ଯାହାକୁ ଆମେ ମୂଲ୍ୟବାନ ମନେ କରୁ ତାହାକୁ ଭଲ ବା ଉତ୍ତମ କହୁ । ସେ ଜଣେ ଭଲ ଲୋକ ବା ସେ ଜଣେ ଉତ୍ତମ ବ୍ୟକ୍ତି କହିବା ବେଳେ ତାଙ୍କ ପ୍ରତି ଆମର ସମ୍ମାନବୋଧ ବା ସମାଦର ପ୍ରକାଶ କରିଥାଉ । ପୁନଶ୍ଚ ଉତ୍ତମର ସାର୍ବଜନନୀ ମାନଦଣ୍ଡ ରହିବା ସମ୍ଭବ ନୁହେଁ । 'କ' ଖ ଦୃଷ୍ଟିରେ ଜଣେ ଉତ୍ତମ ବ୍ୟକ୍ତି ହୋଇପାରନ୍ତି କିନ୍ତୁ, ଗ, ଘ ଦୃଷ୍ଟିରେ ମନ୍ଦ ବ୍ୟକ୍ତି ହେବା ସମ୍ଭବ । ସେହିପରି ଉତ୍ତମ ଜୀବନ କହିଲେ ଯେଉଁ ଜୀବନକୁ ଆମେ ପସନ୍ଦ କରୁ ଓ ଯାହା ପ୍ରତି ଆମର ଅଭିରୁଚି ପ୍ରକାଶ କରୁ ତାହାକୁ ହୁଏତ ଆମେ ଉତ୍ତମ ଜୀବନ କହିପାରିବା । କେତେକ କାର୍ଯ୍ୟକୁ ଆମେ ଉତ୍ତମ କାର୍ଯ୍ୟ ମନେ କଲେ ବି ତାହା ପ୍ରତି ବିଶେଷ ଅନୁରାଗ ପ୍ରକାଶ ନକରିବାର ଦୃଷ୍ଟାନ୍ତ ମଧ ସମାଜରେ ଦେଖାଯାଏ । ବହୁ ସମୟରେ

ଏପରି ମଧ୍ୟ ଦେଖାଯାଏ ଯେ ଭଲ-ମନ୍ଦର ପାର୍ଥକ୍ୟ ନେଇ ଜଣେ ସୁନ୍ଦର ଭାବରେ ଚର୍ଚ୍ଚା କରୁଛନ୍ତି କିନ୍ତୁ ବାସ୍ତବ ଜୀବନରେ ଭଲ ପ୍ରତି ଶ୍ରଦ୍ଧା ଓ ମନ୍ଦ ପ୍ରତି ବିତୃଷ୍ଣା ପ୍ରକାଶ କରୁନାହାଁନ୍ତି ଓ ଜୀବନଧାରାରେ ଭଲ କାର୍ଯ୍ୟରେ ବ୍ରତୀ ହେଉନାହାଁନ୍ତି । ତେବେ ଭଲ-ମନ୍ଦ ପାର୍ଥକ୍ୟ ଜନିତ ଅବବୋଧରୁ ଏହା ମନେ କରାଯିବା ସମ୍ଭବ ଯେ ଭଲ କାର୍ଯ୍ୟଦ୍ୱାରା ସାମାଜିକ ମଙ୍ଗଳ ବିଧାନ ହୋଇପାରିବ ବୋଲି ସେ ମନେ କରନ୍ତି । ଅର୍ଥାତ୍ ଯାହା ଭଲ ତାହା ସମାଜ ପାଇଁ ମଙ୍ଗଳପ୍ରଦ ଓ ଯାହା ମନ୍ଦ ତାହା ସମାଜ ପାଇଁ ଅହିତକର ବୋଲି ସେ ଭାବନ୍ତି । ଏହି କ୍ଷେତ୍ରରେ ଭଲ ବା ଉତ୍ତମ ଏକ ଲକ୍ଷ୍ୟ ବା ମୂଲ୍ୟ ଦିଗରେ ଅଭିପ୍ରେତ ବୋଲି ଭାବନା ଆସିଥାଏ ।

ଏକ ଉତ୍ତମ ଜୀବନ ସାମାଜିକ ହିତ ପାଇଁ ଅଭିପ୍ରେତ ହୋଇଥିବାରୁ ଏହା ମହତ୍ତ୍ୱପୂର୍ଣ୍ଣ ନା ଏହା ନିଜସ୍ୱ ସ୍ୱରୂପରେ ମହତ୍ତ୍ୱପୂର୍ଣ୍ଣ ? କେତେକ ଜିନିଷ ଅନ୍ୟ ଲକ୍ଷ୍ୟ ହାସଲ ପାଇଁ ଅଭିପ୍ରେତ ଥିବାରୁ ସେଗୁଡ଼ିକ ମହତ୍ତ୍ୱପୂର୍ଣ୍ଣ । ଅନ୍ୟ କେତେକ କୌଣସି ଲକ୍ଷ୍ୟ ପାଇଁ ନୁହେଁ ବରଂ ସ୍ୱତଃ ବା ସ୍ୱରୂପରେ ହିଁ ମହତ୍ତ୍ୱପୂର୍ଣ୍ଣ । ଯାହା ଅନ୍ୟ ଲକ୍ଷ୍ୟ ପାଇଁ ମହତ୍ତ୍ୱପୂର୍ଣ୍ଣ ତାହାର ବାହ୍ୟିକ ମୂଲ୍ୟ ବା ସାଧନ ମୂଲ୍ୟ (instrumental value) ଥିବା କୁହାଯାଏ । ଅପର ପକ୍ଷରେ ଯାହା ନିଜସ୍ୱ ସ୍ୱରୂପରେ ବା ନିଜେ ହିଁ ମହତ୍ତ୍ୱପୂର୍ଣ୍ଣ ତାହାକୁ ସ୍ୱତଃ ମୂଲ୍ୟ (intrinsic value) ଭାବରେ ନିଆଯାଇପାରେ । ଅର୍ଥ, କ୍ଷମତା, ବୁଦ୍ଧି, ସାହସିକତା ଇତ୍ୟାଦି ଅନ୍ୟ ଲକ୍ଷ୍ୟ ପାଇଁ ଅଭିପ୍ରେତ ହୋଇଥିବାରୁ ସେ ସବୁର ସାଧନ ମୂଲ୍ୟ ରହିଛି । ଅର୍ଥର ନିଜସ୍ୱ ମୂଲ୍ୟ କିଛି ନାହିଁ, ବରଂ ଏହା ଦ୍ୱାରା ଆମେ ଜୀବନର ଆବଶ୍ୟକତା ପୂରଣ କରୁଥିବାରୁ ଏହାର ମୂଲ୍ୟ ରହିଛି । କ୍ଷମତା ଜଣକୁ ଯଶ, ପ୍ରତିଷ୍ଠା, ନିରାପତ୍ତା ଆଣି ଦେଉଥିବା ହେତୁ କ୍ଷମତାର ପରତଃ ମୂଲ୍ୟ ରହିଛି । ଏକ ନିର୍ଜନ ଦ୍ୱୀପରେ ଜଣେ ବ୍ୟକ୍ତିର ଅର୍ଥର କିଛି ମୂଲ୍ୟ ନାହିଁ ବା ଆମେରିକାରେ ଟଙ୍କାର ମୂଲ୍ୟ ବା ଭାରତରେ ଡଲାରର ମୂଲ୍ୟ ନାହିଁ । ସୁତରାଂ ଯାହାର ନିଜସ୍ୱ ମୂଲ୍ୟ ନାହିଁ ପରନ୍ତୁ ଯାହା ଅନ୍ୟ ଲକ୍ଷ୍ୟ ପାଇଁ ଅଭିପ୍ରେତ ତାହାର ମୂଲ୍ୟ ପରତଃ ମନେହୁଏ । ତେବେ ଉତ୍ତମ ଜୀବନ ସ୍ୱରୂପରେ ମୂଲ୍ୟବାନକି ? ଅର୍ଥାତ୍ ଏହାର ସ୍ୱତଃ ମୂଲ୍ୟ ରହିଛି କି ? କେତେକ ଦାର୍ଶନିକଙ୍କ ମତରେ ଉତ୍ତମ ଜୀବନର ନିଜସ୍ୱ ମୂଲ୍ୟ ନାହିଁ, ବରଂ ଏହି ଜୀବନ ଆନନ୍ଦ, ସୁଖ ପାଇଁ ଅଭିପ୍ରେତ ଥିବାରୁ ଏହାର ପରତଃ ମୂଲ୍ୟ ରହିଛି । ଅନ୍ୟ କେତେକଙ୍କ ମତରେ ଏକ ଉତ୍ତମ ଜୀବନ ସ୍ୱରୂପରେ ହିଁ ମୂଲ୍ୟବାନ । ଅର୍ଥାତ୍ ଏହା ସୁଖ, ଆନନ୍ଦ ଦେଉ ବା ନ ଦେଉ ଏହା ହିଁ ଆମ ପାଇଁ ମହତ୍ତ୍ୱପୂର୍ଣ୍ଣ । ଏହି ଉଭୟ ମତର ନିଜସ୍ୱ ଯୁକ୍ତି ରହିଛି ଓ ସେହି ଜଟିଳ ଯୁକ୍ତି ମାନଙ୍କୁ ଏଠାରେ ଆମେ ଆଲୋଚନା ପରିସରକୁ ଆଣିବା ନାହିଁ । ବରଂ ଏ କ୍ଷେତ୍ରରେ କେତେକ ସାଧାରଣ ସୂଚନା ଦେବା ।

ଯେଉଁମାନେ ସାମାଜିକ ଶାନ୍ତି, ସଂହତି ଓ ସ୍ଥିରତାକୁ ଗୁରୁତ୍ୱ ଦେବେ ସେମାନେ କହିବେ ଯେ ଉତ୍ତମ ଜୀବନ ଦ୍ୱାରା ଶାନ୍ତି, ସଂହତି ରହିବା ସହ ସୁଖକର ଜୀବନ ସମ୍ଭବ ହେଉଥିବାରୁ ଆମର ଲକ୍ଷ୍ୟ ଶାନ୍ତି ଓ ଆନନ୍ଦ ପାଇଁ ଅଭିପ୍ରେତ ହେବା ଆବଶ୍ୟକ । ଆମର ଲକ୍ଷ୍ୟ ହେଉଛି ସୁଖ ଓ ଆନନ୍ଦରେ ଜୀବନ ଧାରଣ କରିବା ଓ ସେଥିପାଇଁ ଉତ୍ତମ ଜୀବନ ଅବଶ୍ୟମ୍ଭାବୀ ମନେ ହୁଏ । ସୁଖ, ଶାନ୍ତି ଓ ଆନନ୍ଦରେ ବଞ୍ଚିବା ପାଇଁ ତ ଆମେ ଉତ୍ତମ ଜୀବନ ଚାହୁଁ । ତେଣୁ ଉତ୍ତମ ଜୀବନ ବା ଉତ୍କୃଷ୍ଟତା ଏକ ସାଧନ ମାତ୍ର, ଲକ୍ଷ୍ୟ ସୁଖ ଓ ଆନନ୍ଦ । ସାଧୁତା, କର୍ତ୍ତବ୍ୟନିଷ୍ଠା, ସମ୍ବେଦନଶୀଳତା, ସତ୍ୟବାଦିତା ମୂଲ୍ୟଚୟ ଗୁଡ଼ିକ ଜୀବନର ନୈତିକ ଆଦର୍ଶର ସୂଚନା ଦିଏ । ଏହାର ବାସ୍ତବ ପ୍ରତିଫଳନ ଦ୍ୱାରା ଜୀବନ ମହତ୍ତର ହୋଇଥାଏ । ତେବେ ଏହି ନୈତିକ ମୂଲ୍ୟଚୟର ଉଦ୍ଦେଶ୍ୟ ହେଉଛି ଆମର ସୁଖ ଓ ଆନନ୍ଦ । ସୁଖ

ଓ ଆନନ୍ଦର ସହ ଜୀବନ ବଞ୍ଚିବାକୁ ହେଲେ ଏହି ମୂଲ୍ୟଚୟକୁ ଜୀବନରେ ଗ୍ରହଣ କରିବା ଆବଶ୍ୟକ । ଏଗୁଡ଼ିକର ପ୍ରତ୍ୟାଖ୍ୟାନ ଦ୍ୱାରା ବା ଜୀବନ ପ୍ରବାହରେ ଏହାର ପ୍ରତିଫଳନ ନ ହେବା ଦ୍ୱାରା ସାମାଜିକ ସୁଖ, ଶାନ୍ତି ବ୍ୟାହତ ହୋଇଥାଏ । ସୁତରାଂ ନୈତିକତା ବା ଉତ୍ତମ ଜୀବନ ସୁଖ, ଶାନ୍ତି ଲକ୍ଷ୍ୟ ପାଇଁ ଉଦ୍ଦିଷ୍ଟ ତେଣୁ ସେ ସବୁର ପରତଃ ମୂଲ୍ୟ ରହିଛି । ତେବେ ସୁଖ, ଆନନ୍ଦର ସ୍ୱତଃ ମୂଲ୍ୟ ରହିଛି ।

ଏହି ପ୍ରସଙ୍ଗ ଉପରେ ନାନା ବିତର୍କ ହୋଇପାରେ । ତେବେ ଏଠାରେ ସୁଖ ଓ ଆନନ୍ଦ ମଧ୍ୟରେ ଏକ ପାର୍ଥକ୍ୟ ଦର୍ଶାଯାଇପାରେ । ସୁଖର ଅନୁଭୂତି ବହୁ ସ୍ତରରୁ ପ୍ରାପ୍ତ ହୋଇପାରେ । ଭଲ ସିନେମାଟିଏ ଦେଖିଲେ, ଭଲ କବିତାଟିଏ ରଚନା କଲେ, ବନ୍ଧୁମାନଙ୍କ ମେଳରେ ଭୋଜି କଲେ, ଏକ ଦର୍ଶନୀୟ ସ୍ଥାନକୁ ବୁଲିଗଲେ ଆମେ ସୁଖକର ଅନୁଭୂତି ପାଇଥାଉ । ଅର୍ଥାତ୍ ସୁଖର ବିଭିନ୍ନ ଉତ୍ସ ରହିପାରେ ଯେଉଁଥିରୁ ଆମେ ସୁଖକର ଅନୁଭୂତି ପାଇଥାଉ । ଆମର ସମସ୍ତ ସୁଖକର ଅନୁଭୂତିର ସମଷ୍ଟିରେ ଜୀବନ ଆନନ୍ଦଦାୟକ ହୋଇଥାଏ । ସୁତରାଂ ଆନନ୍ଦ ଏକ ସାମଗ୍ରିକ ଅବସ୍ଥାକୁ ବୁଝାଏ ଓ ସୁଖକର ଅନୁଭୂତିର ସମାହାର ଦ୍ୱାରା ଏହା ଆସିଥାଏ । ତେବେ ଜୀବନରେ ଜଣେ ଅନେକ ସୁଖକର ଅନୁଭୂତି ପାଇଥାଏ, କିନ୍ତୁ ଜୀବନରେ ଆନନ୍ଦ ନଥାଇପାରେ । ଅପର ପକ୍ଷରେ ଗୋଟିଏ ଆନନ୍ଦର ଜୀବନ ବିନା ସୁଖରେ ସମ୍ଭବ ନୁହେଁ । ବହୁ ସ୍ତରରୁ ପାଉଥିବା ସୁଖକର ଅନୁଭୂତି ଦ୍ୱାରା ହିଁ ଆମେ ଆନନ୍ଦିତ ହୋଇଥାଉ ଓ ଆମର ଜୀବନ ବେଶ୍ ପ୍ରୀତିପୂର୍ଣ୍ଣ ମନେହୁଏ । ମୋଟ ଉପରେ କହିଲେ ସୁଖକର ଅନୁଭୂତି ବିନା କିମ୍ବା ସୁଖ ବ୍ୟତୀତ ଜୀବନରେ ଆନନ୍ଦ ରହିବା ସମ୍ଭବ ନୁହେଁ । କିନ୍ତୁ ସୁଖ ଥାଇ ମଧ୍ୟ ଆନନ୍ଦ ରହିବା ସମ୍ଭବ ନହୋଇପାରେ । ସୁତରାଂ ଆନନ୍ଦ ଏକ ସାମଗ୍ରିକତାକୁ ସୂଚନା ଦେବା ବେଳେ ସୁଖକର ଅନୁଭୂତି ବହୁ ସ୍ତରରୁ ନିତି ଦିନର ଅନୁଭୂତି ମଧ୍ୟ ଦେଇ ଆମେ ପାଇଥାଉ ।

ତେବେ ଏଠାରେ ପ୍ରଶ୍ନ ହେବ ଆନନ୍ଦପ୍ରଦ ଓ ଶାନ୍ତିପୂର୍ଣ୍ଣ ଜୀବନ ଆମ ଜୀବନର ଧ୍ୟେୟ କି ? ଆନନ୍ଦର ସ୍ୱତଃମୂଲ୍ୟ ନିଶ୍ଚୟ ରହିଛି । କୌଣସି ବ୍ୟକ୍ତି ସ୍ୱଇଚ୍ଛାରେ ଦୁଃଖ, ଯନ୍ତ୍ରଣା, ଅଶାନ୍ତି ଜୀବନରେ ଚାହେଁ ନାହିଁ । ଅବଶ୍ୟ କିଛି ସଫଳତା ପାଇଁ ବା ଅଧିକ ଦୁଃଖ ଯନ୍ତ୍ରଣାରୁ ମୁକ୍ତି ପାଇଁ ଜଣେ ନିଜର ସୁଖକର ପରିବେଶ ଠାରୁ ସାମୟିକ ଭାବେ ଦୂରେଇ ଯାଇପାରେ । ପରୀକ୍ଷାରେ ଭଲ ଫଳ ପାଇବା ପାଇଁ ଜଣେ ବିଦ୍ୟାର୍ଥୀ ବହୁ କଷ୍ଟ ବରଣ କରେ, କୌଣସି କ୍ଷେତ୍ରରେ ସଫଳତା ହାସଲ କରିବାକୁ ଜଣେ କେତେକ ଦୁଃସାହସିକ କାର୍ଯ୍ୟରେ ବ୍ରତୀ ହୋଇ କଷ୍ଟ ସ୍ୱୀକାର କରିଥାଏ ବା ରୋଗ ଯନ୍ତ୍ରଣାରୁ ମୁକ୍ତି ପାଇଁ ଜଣେ ଜଟିଳ ଅସ୍ତ୍ରୋପଚାର ଜନିତ କଷ୍ଟକୁ ସହି ନେଇଥାଏ । ତେଣୁ ଜଣେ ନିଜର ସୁଖକର ଆବେଗ ଓ ସୁଖ ଅନୁଭୂତିକୁ ତ୍ୟାଗ କରେ ଏହି ଲକ୍ଷ୍ୟରେ ଯେ ଏହାଦ୍ୱାରା ଏକ ମହତ୍ତର ପ୍ରାପ୍ତି ସମ୍ଭବ ହେବ ଯାହା ଜୀବନକୁ ଅଧିକ ଆନନ୍ଦପ୍ରଦ କରିବା ସହ ସଫଳତାର ନିକଟବର୍ତ୍ତୀ କରିପାରିବ । ଯେହେତୁ କେହି ଆନନ୍ଦ, ଶାନ୍ତିକୁ ପରିହାର କରିବାକୁ ଚାହେଁ ନାହିଁ ଓ ସକଳ କାର୍ଯ୍ୟରେ ଏହାକୁ ଜୀବନ ପାଇଁ ଅପରିହାର୍ଯ୍ୟ ମନେ କରେ ତେଣୁ ଆନନ୍ଦ, ଶାନ୍ତିର ସ୍ୱତଃମୂଲ୍ୟ ରହିବା ମନେ ହୁଏ । ସୁଖବାଦୀ ନୀତିବାଦୀମାନେ (hedonist) ଜୀବନରେ ସୁଖ, ଆନନ୍ଦ ଓ ଶାନ୍ତିକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେଇଥାନ୍ତି । ତେବେ ସେମାନେ କେବଳ ନିଜର ସୁଖ ବା ଆନନ୍ଦକୁ ମୂଲ୍ୟ ଦିଅନ୍ତି ନାହିଁ ବରଂ ସମାଜରେ କେତେ ଅଧିକ ବ୍ୟକ୍ତି କେତେ ଅଧିକ ସୁଖ ଶାନ୍ତିରେ ଜୀବନ ନିର୍ବାହ କରିପାରିବେ ତାହାକୁ ଗୁରୁତ୍ୱ ଦେଇଥାନ୍ତି । 'ମାକ୍ସିମମ୍ ହାପିନେସ୍ ଫର ମାକ୍ସିମମ୍ ନମ୍ବର ଅଫ୍ ପିପୁଲ୍' ତାଙ୍କ ନୈତିକ ଶୃଙ୍ଖଳାର ସର୍ବଶ୍ରେଷ୍ଠ ମାନଦଣ୍ଡ । ପୁନଶ୍ଚ ସେମାନେ ସୁଖକର

ଅନୁଭୂତିର ଗୁଣାତ୍ମକ ମୂଲ୍ୟ ଉପରେ ବି ଗୁରୁତ୍ୱ ଦେଇଥାନ୍ତି । ପ୍ରତ୍ୟେକ ବ୍ୟକ୍ତି ଜୀବନରେ ସୁଖ, ଆନନ୍ଦ ଚାହେଁ, ତେବେ ଆନନ୍ଦ ଓ ସୁଖର ଗୁଣାତ୍ମକ ମୂଲ୍ୟ ଭିତରେ ବି ପାର୍ଥକ୍ୟ ରହିଛି । ଗୋଟିଏ ଖେଳରେ ଜିତି ଖୁସି ହେବା ବା ଭଲ ଘର ଖଣ୍ଡିଏ କରିଥିବାରୁ ସୁଖୀ ହେବା ଆମକୁ ଯେଉଁ ସୁଖକର ଅନୁଭୂତି ଦିଏ ତାହା ଅପେକ୍ଷା ଜଣେ ବ୍ୟକ୍ତିର ଜୀବନ ରକ୍ଷା କରି ପାରିଥିବାର ସୁଖ ବା ଗୋଟିଏ ଉଚ୍ଚମାନର ସାହିତ୍ୟ ସୃଷ୍ଟି କରିଥିବା ଯୋଗୁଁ ପାଉଥିବା ଆନନ୍ଦ ଭିତରେ ପ୍ରାୟତଃ ପାର୍ଥକ୍ୟ ରହିବା ସମ୍ଭବ । ତେବେ ସୁଖବାଦୀ ଦାର୍ଶନିକମାନେ ଗୁଣାତ୍ମକ ସୁଖ, ଆନନ୍ଦ ଓ ଶାନ୍ତି କେତେ ଅଧିକ ବ୍ୟକ୍ତିଙ୍କ ପାଇଁ କେତେ  ଅଧିକ ପରିମାଣରେ ମିଳିପାରିବ ତାହାକୁ ଉତ୍କୃଷ୍ଟ ଜୀବନର ମାନଦଣ୍ଡ ଭାବେ ନେଇଥାନ୍ତି ।

ସୁଖ, ଶାନ୍ତି, ଆନନ୍ଦର ସ୍ୱତଃମୂଲ୍ୟ ତ ନିଶ୍ଚୟ ରହିଛି । ସେହିପରି ଅନ୍ୟ କିଛିର ସ୍ୱତଃମୂଲ୍ୟ ରହିଛି କି ନାହିଁ ? କେତେକଙ୍କ ମତରେ ଅଛି, ଅନ୍ୟ କେତେକଙ୍କ ମତରେ ନାହିଁ । ବିଶେଷ କରି ଯେଉଁମାନେ 'ସୁଖବାଦ' କୁ ସର୍ବଶ୍ରେଷ୍ଠ ଶ୍ରେୟ ବା ମାନଦଣ୍ଡ ଭାବେ ନେବେ ସେମାନଙ୍କ ମତରେ ସୁଖ, ଶାନ୍ତି ଓ ଆନନ୍ଦ ହିଁ ଆମର ସକଳ ନୈତିକ କାର୍ଯ୍ୟର ଭିତ୍ତି ହେବା ଆବଶ୍ୟକ । ତାହା ବ୍ୟତୀତ ଅନ୍ୟ କିଛିର ସ୍ୱତଃମୂଲ୍ୟ ନାହିଁ । ସବୁ କିଛି ସୁଖ, ଶାନ୍ତି ଓ ଆନନ୍ଦ ପାଇଁ ଅଭିପ୍ରେତ । ତେବେ ଯେଉଁମାନେ ନୈତିକ ବହୁତ୍ୱବାଦ (ethical pluralism) ରେ ବିଶ୍ୱାସ କରନ୍ତି, ସେମାନଙ୍କ ମତରେ ସୁଖ, ଶାନ୍ତି ଓ ଆନନ୍ଦ ତ ଆମର ଶ୍ରେୟ, ତାହା ବ୍ୟତୀତ ଅନ୍ୟ କିଛିର ବି ସ୍ୱତଃମୂଲ୍ୟ ରହିଛି ।  ଏଠାରେ ଦୁଇଟି ବିଷୟକୁ ଅବତାରଣା କରାଯାଉ । 'ଜ୍ଞାନ' ର ସ୍ୱତଃମୂଲ୍ୟ ଅଛି  ବୋଲି ନିଆଯାଇପାରେ । ଜ୍ଞାନ ସ୍ୱରୂପରେ ମହନୀୟ ଓ  ଅଜ୍ଞତା ଦୁଃଖ, ଯନ୍ତ୍ରଣାର ପ୍ରତୀକ । ଜ୍ଞାନ କିପରି ମହନୀୟ ଓ ଜୀବନ-ବଞ୍ଚିବାର ମାନରେ ପରିବର୍ତ୍ତନ ଆଣିପାରିଛି ତାହାର ନାନା ଉଦାହରଣ ଦିଆଯାଇପାରେ । ଯେତେବେଳେ ରୋଗମାନଙ୍କର କାରଣ ଓ ନିଦାନ ଜଣା ନଥିଲା କିମ୍ବା ଯେତେବେଳେ ଗମନାଗମନର ଜ୍ଞାନ ନଥିଲା ସେତେବେଳେ ମହାମାରୀ (ହଇଜା, ବସନ୍ତ, ପ୍ଲେଗ ଇତ୍ୟାଦି) ବ୍ୟାପିଲେ ଲକ୍ଷ ଲକ୍ଷ ଲୋକ ପୋକ ମାଛି ପରି ମରି ଯାଉଥିଲେ । ଗମନା ଗମନର ସୁଯୋଗ ନଥିବା ଯୁଗରେ ପ୍ରାକୃତିକ ଦୁର୍ବିପାକ ହେଲେ ଲୋକମାନେ ଅସହାୟ ହୋଇ ମରିଯାଉଥିଲେ । କିନ୍ତୁ ଜ୍ଞାନର ବିକାଶ ଯୋଗୁଁ ଚିକିତ୍ସାର ସୁବିଧା ଉପଲବ୍‌ଧ ହୋଇପାରୁଛି ଓ ପ୍ରାକୃତିକ ବିପର୍ଯ୍ୟୟ ହେଲେ ଉଦ୍ଧାର ଓ ସାହାଯ୍ୟ ଯୋଗୁଁ ଅନେକଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରାଯିବା ସମ୍ଭବ ହେଉଛି । ତେଣୁ କେତେକଙ୍କ ପାଇଁ ଜ୍ଞାନ ହିଁ ସ୍ୱରୂପରେ ଶ୍ରେୟ ହୋଇପାରିବ । ତେବେ ଏ ପ୍ରସଙ୍ଗ ଉପରେ ବି ନାନା ବିତର୍କ ହେବା ସମ୍ଭବ ।

ସେହିପରି କେତେକଙ୍କ ମତରେ କେତେକ ମହନୀୟ ସଦ୍‌ଗୁଣ ସ୍ୱରୂପରେ ମୂଲ୍ୟବାନ । ସଦାଚାର ଓ ସଦ୍‌ଗୁଣଦ୍ୱାରା ପରିଚାଳିତ ହୋଇ ଯେଉଁମାନେ ଜୀବନ ବଞ୍ଚିବାକୁ ପ୍ରୟାସ କରନ୍ତି, ସେମାନେ ସାର୍ଥକ ଜୀବନର ଅଧିକାରୀ । ସେହି ସଦ୍‌ଗୁଣ ହିଁ ମହନୀୟତାର ପ୍ରତୀକ, ସୁତରାଂ ସେ ସବୁର ସ୍ୱତଃମୂଲ୍ୟ ରହିଛି । ସଦ୍‌ଗୁଣ ଦ୍ୱାରା ଜୀବନ ନିର୍ବାହ କରିବାକୁ ମୁଖ୍ୟତଃ କେତେକ ନୀତିବାଦୀ ବ୍ୟକ୍ତି କହିଥାନ୍ତି । ସୁଖ, ଶାନ୍ତି ଆମ ଜୀବନର ଲକ୍ଷ୍ୟ ନୁହେଁ, ବରଂ ସଦ୍‌ଗୁଣର ଅଧିକାରୀ ହେବା ଆମର ଲକ୍ଷ୍ୟ । ସଦ୍‌ଗୁଣର ଅଧିକାରୀ ହେବା ଦ୍ୱାରା ହିଁ ସେଥିରୁ ସୁଖ, ଶାନ୍ତିର ପରିଣାମ ଆସିପାରିବ । ସକ୍ରେଟିସ୍ ସତ୍ୟ ଓ ଜ୍ଞାନକୁ, ବୁଦ୍ଧ କରୁଣାକୁ, ଯୀଶୁ ଖ୍ରୀଷ୍ଟ ପ୍ରେମ ଓ କ୍ଷମାକୁ, କ୍ୟାଣ୍ଟ ଉତ୍ତମ ଇଚ୍ଛାକୁ, ଗାନ୍ଧୀ ଅହିଂସାକୁ ପ୍ରାଥମିକତା ଦେବା ସୁବିଦିତ ।  ଏହି ସଦ୍‌ଗୁଣ ହିଁ ଜୀବନ ପାଇଁ ଶ୍ରେୟ । ସୁଖ ଶାନ୍ତି ଏହାର ପରିଣାମ ମାତ୍ର । ହୁଏତ ସଦାଚାରୀ ହୋଇ ଯଦି ସୁଖ ପରିବର୍ତ୍ତେ କେହି ଦୁଃଖ ଯନ୍ତ୍ରଣା ପାଉଛି ତେବେ ତାହା ହିଁ ସହ୍ୟ କରିବା ଆବଶ୍ୟକ, କିନ୍ତୁ ସଦ୍‌ଗୁଣ ଓ

ସଦାଚାରକୁ ପରିହାର କରିବା ଠିକ୍ ନୁହେଁ । ସୁତରାଂ ସଦ୍‌ଗୁଣ ଓ ସଦାଚାର ହିଁ ଜୀବନର ଶ୍ରେୟ । ଜୀବନର ମୂଲ୍ୟ ସେହିଥିରେ ନିହିତ । ଏ କ୍ଷେତ୍ରରେ ବି ଅନେକ ବିତର୍କ ଉଠିପାରିବ । ସୁଖବାଦୀମାନେ କହିବେ ଯେ ସଦାଚାର ନୈତିକ ଉତ୍କର୍ଷର ପ୍ରତୀକ । ଏହି ଗୁଣ ସାମାଜିକ ଜୀବନରେ ଅଧିକ ପ୍ରତିଫଳିତ ହେଲେ ସମାଜ ଉନ୍ନତ ହୋଇଥାଏ ଓ ଏହାର ଲଂଘନ ସାଧାରଣ ଘଟଣା ହେଲେ ସମାଜ କଳୁଷିତ ବା କ୍ଷୟଶୀଳ ହୋଇପଡ଼େ । ତେବେ ଏସବୁ ସାଧନ ମାତ୍ର, ଲକ୍ଷ୍ୟ ହେଉଛି ସୁଖ, ଶାନ୍ତି ଓ ଆନନ୍ଦ । ତେବେ ଯେଉଁମାନେ ସଦ୍‌ଗୁଣ (ଯଥା, ସତ୍ୟବାଦିତା, କରୁଣା, ସମ୍ବେଦନଶୀଳତା...ଇତ୍ୟାଦି) ଗୁଡ଼ିକୁ ସ୍ୱତଃମୂଲ୍ୟ ଦେଇଥାନ୍ତି ସେମାନଙ୍କ ମତରେ ସଦ୍‌ଗୁଣ ଆମର କାମ୍ୟ, ସୁଖ ଶାନ୍ତି ପରର କଥା । ସଦାଚାରୀ ହୋଇ ଜୀବନ ଅତିବାହିତ କର, ପରିଣାମ ନିଶ୍ଚୟ ସୁଖକର ହେବ । ଅନ୍ୟକୁ ସାହାଯ୍ୟ କରିବା ଏକ ମାନବୀୟ ମହତ୍‌ଗୁଣ ଓ ଏହା କରିବା ଦ୍ୱାରା ଜୀବନର ଗୁଣାତ୍ମକ ମାନରେ ଉତ୍କର୍ଷ ଆସିଥାଏ । ସୁଖ ଶାନ୍ତି ମିଳୁ ବା ନ ମିଳୁ ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ, ବରଂ ସଦ୍‌ଗୁଣର ଅଧିକାରୀ ହେବା ହିଁ ଉତ୍ତମ ଜୀବନର ପ୍ରତୀକ ହୋଇପାରିବ ।

ନୀତିଶାସ୍ତ୍ର (Ethics) ପରିସରରେ ଜୀବନର ମୂଲ୍ୟ ଓ ଶ୍ରେୟ ନେଇ ବିଭିନ୍ନ ମାନଦଣ୍ଡର ଚର୍ଚ୍ଚା ହୋଇଛି ଓ କୌଣସି ମାନଦଣ୍ଡକୁ ସଂପୂର୍ଣ୍ଣ ତ୍ରୁଟିଶୂନ୍ୟ ଭାବେ ବା ସ୍ୱୟଂସଂପୂର୍ଣ୍ଣ ବୋଲି ନିଆଯାଇ ନାହିଁ । ପ୍ରତ୍ୟେକ ନୈତିକ ମାନକର (Moral Standard) ସୀମା ଓ ଦୁର୍ବଳତା ରହିଛି । ତେବେ ଏଠାରେ ଦୁଇଟି ବିଷୟ ଉତ୍ତମ ଜୀବନର ସ୍ୱରୂପ ସହିତ ସଂଶ୍ଳିଷ୍ଟ ହେବା ଯଥାର୍ଥ ମନେହୁଏ । ପ୍ରଥମଟି ହେଉଛି କେତେକ ନୈତିକ ମୂଲ୍ୟଚୟ ବା ସଦ୍‌ଗୁଣ ଓ ଦ୍ୱିତୀୟଟି ହେଉଛି ସାମାଜିକ ସୁଖ, ଶାନ୍ତି ଓ ଆନନ୍ଦ । ଏକ ଉତ୍ତମ ବା ଗୁଣାତ୍ମକ ଜୀବନ ବିଷୟ ବିଚାର କଲାବେଳେ ନୈତିକତା, ସଦାଚାର ଓ ମୂଲ୍ୟବୋଧ ଗୁଡିକୁ ବାଦ୍ ଦେଇ ଏକ ଉତ୍ତମ ଜୀବନର ପରିକଳ୍ପନା କରାଯାଇପାରିବ ନାହିଁ । ସେହିପରି ଆମେ ଯେଉଁ ବୃହତ୍ତର ସମାଜରେ ବାସ କରୁଛେ ସେହି ସମାଜରେ ଶାନ୍ତି, ସୁଖ ଓ ଆନନ୍ଦ କିପରି ଅଧିକରୁ ଅଧିକ ଆମର କାର୍ଯ୍ୟ ଦ୍ୱାରା ପ୍ରତିଫଳିତ ହେବ ତାହା ହିଁ ବିଚାର ସ୍ତରକୁ ଆସିଥାଏ । ଜଣେ ବ୍ୟକ୍ତିର କାର୍ଯ୍ୟ ହେଉ ବା ସାମୂହିକ କାର୍ଯ୍ୟ ହେଉ ଯାହା ସାମାଜିକ ପରିବେଶରେ ଅଶାନ୍ତି, ଅନ୍ୟାୟ ଓ ଦୁଃଖର କାରଣ ହୁଏ ତାହାକୁ ଉତ୍କର୍ଷ ଜୀବନର ଆଧାର ଭାବେ ନିଆଯାଇ ପାରିବ ନାହିଁ । ବସ୍ତୁତଃ ନୈତିକ ସଦ୍‌ଗୁଣ ଓ ସାମାଜିକ ସୁଖ, ଶାନ୍ତି ଜନିତ ଶ୍ରେୟ ଉତ୍ତମ ଜୀବନ ଧାରାର ଅପରିହାର୍ଯ୍ୟ ଆଧାର ମନେ ହୁଏ ।

ନୈତିକ ସଦ୍‌ଗୁଣ ଓ ସାମାଜିକ ଶ୍ରେୟକୁ ଯଦିଓ ଉତ୍ତମ ଜୀବନର ଆଧାର ଭାବେ ନିଆଯାଏ, ତେବେ ଏହି ପୃଷ୍ଠଭୂମିରେ ଧର୍ମରୁ ଏଥିପାଇଁ କେତେ ଅଭିନିବେଶ ମିଳିପାରିବ ତାହାକୁ ବିଚାର କରାଯାଉ । ହିନ୍ଦୁ ଧର୍ମ, ଇସଲାମ ଧର୍ମ, ଖ୍ରୀଷ୍ଟ ଧର୍ମ, ବୌଦ୍ଧ ଧର୍ମ ଇତ୍ୟାଦି ପୃଷ୍ଠଭୂମିରେ ଧର୍ମ ଯେଉଁ ଅର୍ଥରେ ବ୍ୟବହାର ହେଉଛି ଧର୍ମର ସେହି ପ୍ରଚଳିତ ଅର୍ଥକୁ ନେଇ ଉତ୍ତମ ଜୀବନ ଓ ଧର୍ମ ଭିତରେ କଣ ସମ୍ବନ୍ଧ ରହିପାରିବ, ତାହା ଆମେ ଆଲୋଚନା କରିବା । ସମାଜ ଉପରେ ଧର୍ମର ଗଭୀର ପ୍ରଭାବ ରହିଥିବାରୁ ଓ ଧର୍ମ ଶହ ଶହ ବର୍ଷ ଧରି ଜନମାନସ ମଧ୍ୟରେ ଏକ ଅନୁଷ୍ଠାନରେ ପରିଣତ ହୋଇଥିବାରୁ ଜୀବନର ଶ୍ରେୟ କ୍ଷେତ୍ରରେ ଧର୍ମର କ'ଣ ଭୂମିକା ରହିଛି ତାହା ପ୍ରାସଙ୍ଗିକ ମନେହୁଏ । ସଭ୍ୟତାର କ୍ରମ ବିକାଶଧାରାରେ ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ଧର୍ମମାନଙ୍କର ଉତ୍ପତ୍ତି ହୋଇଛି ଓ ଧର୍ମ ସହ ଏକ ସୁନ୍ଦର ଜୀବନର ଭାବନା ପ୍ରାୟତଃ ସଂଶ୍ଳିଷ୍ଟ ହୋଇଛି । ଆଧୁନିକ ବିଜ୍ଞାନର ବିକାଶ ଓ ନବସଂସ୍କାର ଯୁଗର ଅଭ୍ୟୁଦୟ ପର୍ଯ୍ୟନ୍ତ, ପ୍ରତ୍ୟେକ ଧର୍ମ

ତାହାର ଭୌଗୋଳିକ ଭୂଖଣ୍ଡରେ ପ୍ରାଧାନ୍ୟ ବିସ୍ତାର କରି ରହିଥିଲା ଓ ଜନଜୀବନର ପ୍ରତ୍ୟେକ ସ୍ତରକୁ ନିୟନ୍ତ୍ରଣ ବା ପ୍ରଭାବିତ କରିଥିଲା । ସୁତରାଂ ଧର୍ମର ପରିସର ମଧ୍ୟରେ ଜୀବନର ମୂଲ୍ୟ ଓ ଉତ୍ତମ ଜୀବନର ଭାବନା ନେଇ କେତେ କେତେ ଅଭିନବ ବିଚାର ମଣିଷର ମନକୁ ସ୍ପର୍ଶ କରିଥିଲା । ତେଣୁ ଧର୍ମ ଓ ଉତ୍ତମ ଜୀବନର ସମ୍ବନ୍ଧ ପ୍ରସଙ୍ଗରେ ଧର୍ମର ପୃଷ୍ଠଭୂମିରେ ଆଲୋଚନା ପ୍ରାସଙ୍ଗିକ ମନେ ହୁଏ ।

ଅଧିକାଂଶ ଧର୍ମର ମୂଳ ଆଧାର ହେଉଛି ଈଶ୍ୱର ଓ କେତେକ ବିଶ୍ୱାସ । ୟୁରୋପରେ ନବ ସଂସ୍କାର ଓ ବିଜ୍ଞାନର ଯୁଗ ଆରମ୍ଭ ହେବା ପୂର୍ବରୁ ଏହି ବିଶ୍ୱାସ ପ୍ରାୟତଃ ସାଧାରଣ ମାନସିକତାରେ ରହିଥିଲା ଯେ ଈଶ୍ୱର ଏ ବିଶ୍ୱ ଓ ମଣିଷକୁ ସୃଷ୍ଟି କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତିର ଏକ ଅବିନାଶୀ ଆତ୍ମା ରହିଛି ଯାହା ଶରୀର ଭିତରେ ବନ୍ଦୀ ହେବା ଭଳି ରହିଛି । ମୃତ୍ୟୁରେ ଆତ୍ମା ଶରୀରରୁ ମୁକ୍ତ ହୁଏ । ତେବେ ଜୀବନର ଅନ୍ତିମ ଲକ୍ଷ୍ୟ ମୁକ୍ତି ବା ସ୍ୱର୍ଗପ୍ରାପ୍ତି ବୋଲି ଅଧିକାଂଶ ଧର୍ମରେ ବିଶ୍ୱାସ ରହିଛି । କେତେକ ଧର୍ମରେ ଜନ୍ମାନ୍ତରବାଦର ପରିକଳ୍ପନା ରହିଛି ଓ କେତେକ ଧର୍ମରେ ମାତ୍ର ଗୋଟିଏ ଜନ୍ମ ଥିବା ବିଶ୍ୱାସ କରାଯାଇଛି । ଜନ୍ମାନ୍ତରବାଦରେ ବିଶ୍ୱାସ କରୁଥିବା ଧର୍ମମାନେ ଭାବନ୍ତି ଯେ ବ୍ୟକ୍ତିର ଆତ୍ମା ଜନ୍ମ-ମୃତ୍ୟୁର ଚକ୍ରରେ ଘୂରୁଥାଏ ଓ ଶେଷରେ ଏହା ମୁକ୍ତି ପାଏ । ତେବେ ଏଥିରେ ବିଶ୍ୱାସ କରୁଥିବା ଧର୍ମମାନେ ଆତ୍ମାର ସ୍ଥିତି ଓ ସ୍ୱରୂପ ବିଷୟରେ ପରସ୍ପର ବିରୋଧୀ କଥାମାନ କହିଥାନ୍ତି । ଜନ୍ମାନ୍ତରବାଦରେ ବିଶ୍ୱାସ କରୁନଥିବା ଧର୍ମମାନେ ଭାବନ୍ତି ଯେ ସ୍ୱର୍ଗ, ନରକ ରହିଛି ଓ ସୃଷ୍ଟିର ଶେଷରେ ବିଚାର ଦିବସ ହେବ । ସେହି ବିଚାର ଦିବସରେ ଈଶ୍ୱର ବ୍ୟକ୍ତିର ବିଚାର କରି ତାକୁ ସବୁଦିନ ପାଇଁ ସ୍ୱର୍ଗ ବା ନରକକୁ ପଠାଇବେ । ପୁନଶ୍ଚ ପ୍ରତ୍ୟେକ ଧର୍ମର ଏକ ଧର୍ମଗ୍ରନ୍ଥ ରହିଛି ଓ ସେଥିରେ ବର୍ଣ୍ଣିତ ଘଟଣା ମାନ ଈଶ୍ୱର-ପ୍ରଦତ୍ତ ଜ୍ଞାନ ହୋଇଥିବାରୁ ସେ ସବୁ ଅଲଂଘ୍ୟ ଓ ଧ୍ରୁବ ସତ୍ୟ । ନୈତିକତା ଈଶ୍ୱରଙ୍କ ଆଦେଶ । ନୈତିକ ମୂଲ୍ୟଚୟ ଧର୍ମଗ୍ରନ୍ଥରେ ଲିପିବଦ୍ଧ । ଏହି ସବୁ ବିଶ୍ୱାସ ସହ କର୍ମକାଣ୍ଡ ଇତ୍ୟାଦିକୁ ନେଇ ପ୍ରତ୍ୟେକ ଧର୍ମର ଭିତ୍ତିମାନ ଗଢ଼ି ଉଠିଛି ।

ଆଧୁନିକ ଜ୍ଞାନ ବିଜ୍ଞାନର ବିକାଶ ଯୋଗୁଁ ଏହା ଜଣା ପଡିଲା ଯେ ଏ ବିଶ୍ୱ କୋଟି କୋଟି ବର୍ଷ ହେଲା ରହିଛି ଓ ଏହାର କେହି ସ୍ରଷ୍ଟା ନାହାଁନ୍ତି । ପୃଥିବୀ ପୃଷ୍ଠରେ ଜୈବିକ ବିବର୍ତ୍ତନ ଓ ନାନା ପରିବର୍ତ୍ତନ ଦେଇ ମଣିଷର ଉଦ୍ଭବ ହୋଇଛି । ଆମର ସକଳ ନୀତି, ଆଦର୍ଶ, ମୂଲ୍ୟବୋଧ ସାମାଜିକ ବିକାଶ ଓ ପରିବର୍ତ୍ତନ ପ୍ରକ୍ରିୟାରେ ବିକଶିତ ହୋଇଛି । ଏକ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ମଧ୍ୟ ଦେଇ ସମାଜ ଦୃଢ଼ ହୋଇଛି ଓ ସାମାଜିକ ଜୀବନରେ ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଘଟଣା ପ୍ରବାହ ଦେଇ ନୈତିକ ଆଦର୍ଶଗୁଡିକ ପୁଷ୍ଟ ହୋଇଛି ।

ପୁନଶ୍ଚ ସାମ୍ରାଜ୍ୟବାଦର ବିକାଶ ଯୋଗୁଁ ସଂସ୍କୃତି-ସଂସ୍କୃତି ମଧ୍ୟରେ ଯେଉଁ ଆଦାନ ପ୍ରଦାନର ପରିବେଶ ଆସିଲା ଓ ବିଶ୍ୱ ବିଦ୍ୟାଳୟ ଶିକ୍ଷାର ପ୍ରସାର ହେଲା ତାହାର ପରିଣାମ ସ୍ୱରୂପ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ କରାଗଲା । ବିଶ୍ୱ ବିଦ୍ୟାଳୟ ସ୍ତରରେ ଧର୍ମମାନଙ୍କର ଯେଉଁ ତୁଳନାତ୍ମକ ଅଧ୍ୟୟନ ହେଲା ସେଥିରୁ ଧାର୍ମିକ ବିଶ୍ୱାସ ସକଳ ମଧ୍ୟରେ ଥିବା ପାର୍ଥକ୍ୟ ଗୁଡିକ ସ୍ପଷ୍ଟ ହେଲା । ତାତ୍ତ୍ୱିକ ପ୍ରଶ୍ନମାନଙ୍କ ଉପରେ ଯେଉଁ ବିଶ୍ଳେଷଣାତ୍ମକ ଅନୁଶୀଳନ କରାଗଲା ସେଥିରୁ ଧାର୍ମିକ ବିଶ୍ୱାସ ଗୁଡିକ କିପରି କଳ୍ପନା ମାତ୍ର ତାହା ଜଣାପଡିଲା । ଆତ୍ମା, ସ୍ୱର୍ଗ, ନରକ, ଈଶ୍ୱର, ପୁନର୍ଜନ୍ମ, ବିଚାର ଦିବସ ଇତ୍ୟାଦି ବିଶ୍ୱାସ ସ୍ତରରେ ପ୍ରତ୍ୟେକ ଧର୍ମର ଭାବନା କିପରି ଅନ୍ୟ ଧର୍ମଠାରୁ ଭିନ୍ନ ଓ ଏହି ସବୁ ବିଶ୍ୱାସ କିପରି ପ୍ରାଚୀନ ଯୁଗର କଳ୍ପନା ମାତ୍ର ତାହା ଜଣାପଡିଲା । କାଳକ୍ରମେ ଧାର୍ମିକ ଧାରଣା ଗୁଡିକ ଅସତ୍ୟ, ଧର୍ମଗ୍ରନ୍ଥରେ ବର୍ଣ୍ଣିତ ବିଷୟ

ଗୁଡିକର କୌଣସି ଚିରନ୍ତନତା ନଥିବା ବିଷୟ ବେଶ୍ ସ୍ପଷ୍ଟ ହେବାକୁ ଲାଗିଲା । ପୁନଶ୍ଚ ଗଣତାନ୍ତ୍ରିକ ଚେତନାର ବିକାଶ ସହ ଏ ସବୁର ପରିବର୍ତ୍ତନ ହେବାକୁ ଲାଗିଲା । କାଳକ୍ରମେ ଧର୍ମ ଠାରୁ ଶାସନ ବ୍ୟବସ୍ଥା ମୁକ୍ତ ହେଲା ଓ ଏକ ଧର୍ମ ନିରପେକ୍ଷ ମୂଲ୍ୟବୋଧ ସଭ୍ୟ ଜୀବନର ମାପକାଠି ହେଲା । ଧର୍ମତନ୍ତ୍ର ବା ଥିଓକ୍ରାସି ପରିବର୍ତ୍ତେ ସାମାଜିକ ବ୍ୟବସ୍ଥାରେ ଗଣତନ୍ତ୍ର ଓ ଧର୍ମନିରପେକ୍ଷତା ରାଜନୈତିକ ଆଦର୍ଶ ଭାବେ ସ୍ୱୀକୃତ ହେଲା ।

ପୁନଶ୍ଚ ସମାଜରେ ରହିଥିବା ଅସଂଖ୍ୟ ଦୁଃଖ, ଯନ୍ତ୍ରଣା, ମନ୍ଦ ବା ଇଭିଲ ମଣିଷ ମନରେ ଈଶ୍ୱରୀୟ ଭାବନା ନେଇ ଅନେକ ସନ୍ଦେହ ସୃଷ୍ଟି କଲା । ସଂସାରରେ ଏତେ ମନ୍ଦ, ଦୁଃଖ କଷ୍ଟ, ପ୍ରାକୃତିକ ବିପର୍ଯ୍ୟୟ ଜନିତ ଇଭିଲ (evil) କାହିଁକି ରହିଛି ? ଈଶ୍ୱର ଯଦିଓ ସର୍ବଶକ୍ତିମାନ ତେବେ ସେ ସକଳ ମନ୍ଦକୁ ଦୂର କରିପାରନ୍ତେ । ଈଶ୍ୱର ଯଦି କରୁଣାମୟ ତେବେ ଅନ୍ୟାୟ, ଅତ୍ୟାଚାରରେ ଜର୍ଜରିତ ହୋଇ ଜୀବନ ବଞ୍ଚୁଥିବା ମଣିଷମାନଙ୍କୁ ସୁରକ୍ଷା ଦେଇପାରନ୍ତେ । ଯୁଦ୍ଧ, ବିଭୀଷିକା, ପ୍ରାକୃତିକ ବିପର୍ଯ୍ୟୟରେ ଯନ୍ତ୍ରଣା ଜର୍ଜରିତ ହେଉଥିବା ସାଧାରଣ ନିରୀହ ଲୋକଙ୍କର ଦୁଃଖ ଓ ଏସବୁ ଇଭିଲ କରୁଣାମୟ ଈଶ୍ୱର କାହିଁକି ଦୂର କରୁନାହାଁନ୍ତି ? ଏକ କରୁଣାମୟ ଓ ସର୍ବଶକ୍ତିମାନ ଈଶ୍ୱର ସଂସାରକୁ କ'ଣ ଦୁଃଖରହିତ ଓ ଅନ୍ୟାୟରହିତ କରିପାରନ୍ତେ ନାହିଁ ? ଯେହେତୁ ସଂସାରରେ ଦୁଃଖ, ଅନ୍ୟାୟ, ବିପର୍ଯ୍ୟୟ ଜନିତ ନାନା ମନ୍ଦ ଓ ଇଭିଲ ରହିଛି ତେଣୁ ଈଶ୍ୱର କରୁଣାମୟ ନୁହଁନ୍ତି କିମ୍ବା ସର୍ବଶକ୍ତିମାନ ନୁହଁନ୍ତି । ଏପରି ଅନେକ ପ୍ରସଙ୍ଗର ଉତ୍ତର ଧାର୍ମିକ ବିଚାର ଆଧାରରେ ଦେବା ସମ୍ଭବ ନ ହେବାରୁ ଧର୍ମ, ଈଶ୍ୱର ପ୍ରତି ଦର୍ଶନ ପରିସରରେ ମଣିଷର ସନ୍ଦେହ କାଳକ୍ରମେ ଦୃଢ଼ୀଭୂତ ହେବାକୁ ଲାଗିଲା । ଈଶ୍ୱର ଯେ ମଣିଷ ମନର ଏକ କଳ୍ପନା ଓ ଏହା ପଛରେ କୌଣସି ସତ୍ୟତା ନାହିଁ ଏହାହିଁ ଚିନ୍ତା ରାଜ୍ୟରେ କାଳକ୍ରମେ ବ୍ୟକ୍ତ ହେଲା । ଆଧୁନିକ ଦର୍ଶନ ଓ ବିଜ୍ଞାନ ଜ୍ଞାନର ବହୁ ଦିଗକୁ ଯେତେ ଅଧିକ ପରିବ୍ୟାପ୍ତ ହେଲା, ଈଶ୍ୱର ବିଶ୍ୱାସ ସେତିକି ଆଧାରହୀନ, କାଳ୍ପନିକ, ଅଯୌକ୍ତିକ ଓ ମନସ୍ତାତ୍ତ୍ୱିକ ବୋଲି ସ୍ପଷ୍ଟ ହେବାକୁ ଲାଗିଲା ।

ଏସବୁ ବୌଦ୍ଧିକ ବିକାଶ ଓ ଆଲୋଚନା ସତ୍ତ୍ୱେ ତଥାପି ଧର୍ମ, ଈଶ୍ୱର ଭାବନା ବ୍ୟକ୍ତି ଓ ସମାଜର ନୈତିକ ଶୃଙ୍ଖଳା କ୍ଷେତ୍ରରେ ବେଶ୍ ପ୍ରଭାବଶାଳୀ ହୋଇ ରହିବା ଦେଖାଯାଏ । ଜୀବନରେ ନୈତିକ ଶୃଙ୍ଖଳା ଅପରିହାର୍ଯ୍ୟ ମନେ ହେଉଥିବାରୁ ଓ ନୈତିକ ଶୃଙ୍ଖଳାର ଆଧାର ଧର୍ମ ବୋଲି ବିଶ୍ୱାସ ରହିଥିବାରୁ ଧର୍ମ, ଈଶ୍ୱର ଭାବନା ସମାଜରେ ଯଥେଷ୍ଟ ପ୍ରଭାବଶାଳୀ ରହିବା ମନେ ହୁଏ । ଈଶ୍ୱର ବିଶ୍ୱାସ ନୈତିକ ଜୀବନ ପାଇଁ ପ୍ରେରଣାର ଉତ୍ସ ବୋଲି ସାଧାରଣତଃ ଗ୍ରହଣ କରାଯାଏ । ତେବେ ଈଶ୍ୱର ଓ ନୈତିକତାର ସମ୍ବନ୍ଧ ନେଇ ବହୁ ଚର୍ଚ୍ଚା ଦର୍ଶନ ପରିସରରେ ହେବା ଦେଖାଯାଏ । ଦର୍ଶନର ଯୁକ୍ତିଶୀଳ ବିଚାର ହେଉଛି, ଈଶ୍ୱର ଓ ନୈତିକତା ଭିତରେ କୌଣସି ସଂପର୍କ ନାହିଁ । ଈଶ୍ୱର ବିଶ୍ୱାସ ସ୍ଥଳ ବିଶେଷରେ ନୈତିକ ଆଚରଣ ପାଇଁ ହୁଏତ ମନସ୍ତାତ୍ତ୍ୱିକ ପ୍ରେରଣା କାହାକୁ ଦେଇପାରେ, କିନ୍ତୁ ଈଶ୍ୱର ଓ ନୈତିକତା ପରସ୍ପର ଠାରୁ ପୃଥକ୍ ଅଟେ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ, ନୈତିକ ଶୃଙ୍ଖଳା ସାମାଜିକ ପରିବେଶରେ ଉଦ୍ଭବ ହୋଇଛି । ଈଶ୍ୱର ବିଶ୍ୱାସୀ ପ୍ରତ୍ୟେକ ବ୍ୟକ୍ତି ନୀତିବାନ ନୁହଁନ୍ତି । କିମ୍ବା ପ୍ରତ୍ୟେକ ନୀତିବାନ, ଆଦର୍ଶବାଦୀ ବ୍ୟକ୍ତିମାନେ ଈଶ୍ୱର ପ୍ରେରଣାରୁ ନୀତିବାନ ହୋଇ ନାହାଁନ୍ତି । ଧର୍ମ ବା ଈଶ୍ୱରରେ ସଂପୂର୍ଣ୍ଣ ଆସ୍ଥା ରଖିଥିବା ବ୍ୟକ୍ତି ନାନା ଜଘନ୍ୟ କାର୍ଯ୍ୟ କରିବା ସମ୍ଭବ । ପୁନଶ୍ଚ ଧର୍ମ ନାମରେ ଆମ ସଂସାରରେ ବହୁ ଯୁଦ୍ଧ ଓ ବିଭୀଷିକା ସୃଷ୍ଟି ହୋଇଛି । ଧର୍ମରୁ ସାଂପ୍ରଦାୟିକ ମନୋଭାବ ଆସି ସମାଜକୁ ଭାଗ ଭାଗ କରିବାର କାହାଣୀ ସୁବିଦିତ । ଧର୍ମ ନାମରେ ନାନା ଘୃଣା, ବିଦ୍ୱେଷ ଓ ତିକ୍ତତା ସମାଜକୁ ଭାଗ ଭାଗ

ବି କରିଛି । ସୁତରାଂ ଧର୍ମ ଓ ଈଶ୍ୱର ବିଶ୍ୱାସ କେତେକଙ୍କୁ ହୁଏତ ମହାନ ମୂଲ୍ୟବୋଧ ପାଇଁ କିମ୍ବା ଦୁଃସ୍ଥ ମଣିଷର ସେବାପାଇଁ ପ୍ରେରଣା ଦେଇଥାଇପାରେ, ତେବେ ଏହା ମନସ୍ତାତ୍ତ୍ୱିକ ମାତ୍ର । ଈଶ୍ୱର ଭାବନା ଓ ନୈତିକତା ଭିତରେ ମନସ୍ତାତ୍ତ୍ୱିକ ସଂପର୍କ ବ୍ୟତୀତ କୌଣସି ତର୍କଶୀଳ ସମ୍ବନ୍ଧ ନାହିଁ ।

ଧର୍ମ ସମାଜ ପାଇଁ ହିତକର କି ହାନିକର- ଏକ ମୁକ୍ତ ପ୍ରଶ୍ନ । ତେବେ ଧାର୍ମିକ ଭାବାବେଗ ଯଦି ବ୍ୟକ୍ତିକୁ ନୈତିକ ଜୀବନ ପାଇଁ ପ୍ରେରଣା ଦିଏ, ମହତ୍ତର ଜୀବନଦୃଷ୍ଟି ଦିଏ ଓ ସମ୍ବେଦନଶୀଳ ହୃଦୟ ଦିଏ ତେବେ ସେହି ଧର୍ମର ଜୟଗାନ କରାଯିବା ଆବଶ୍ୟକ । ଯାହା ବ୍ୟକ୍ତି ବା ଗୋଷ୍ଠୀ ଜୀବନରେ ସାଧୁତା, ନ୍ୟାୟ, ସଦାଚାର, ମାନବିକତା ଓ ସମ୍ବେଦନଶୀଳତା ସୃଷ୍ଟି କରିବାର ମାନସିକତା ଆଣେ ତାହା ସ୍ୱାଗତଯୋଗ୍ୟ । ଯେଉଁ କ୍ଷେତ୍ରରେ ଧାର୍ମିକ ବିଶ୍ୱାସ ବ୍ୟକ୍ତି ଚେତନାକୁ ମହତ୍ତର କରେ ସେହି ଧର୍ମକୁ କେହି ବିରୋଧ କରିବେ ନାହିଁ । କିନ୍ତୁ ପରିତାପର ବିଷୟ ଧାର୍ମିକ ବିଶ୍ୱାସ ପରିସରରେ ଏହା ଗୁରୁତ୍ୱ ପାଇନାହିଁ । ପରନ୍ତୁ ଧାର୍ମିକ ବିଶ୍ୱାସ ସହ ନାନା ଉଗ୍ରବାଦ, ପ୍ରତିହିଂସା, ବିଜ୍ଞାନ-ବିରୋଧୀ ଭାବନା, କୁସଂସ୍କାର, ଭେଦଭାବମୂଳକ ବିଶ୍ୱାସ ଓ ସାଂପ୍ରଦାୟିକତା ମଧ୍ୟ ସଂଶ୍ଳିଷ୍ଟ ହେବା ଦେଖାଯାଏ । କହିବା ନିଷ୍ପ୍ରୟୋଜନ ଯେ ଏହି ପ୍ରକାରର ଧର୍ମ ଚେତନା ସଭ୍ୟତାର ପରିପନ୍ଥୀ ଓ ମାନବିକତାର ବିରୋଧୀ ।

ଏହା ପରେ ଆମେ ହେତୁବାଦୀ ଦୃଷ୍ଟିଭଙ୍ଗୀରେ ଜୀବନର ମୂଲ୍ୟ ପ୍ରସଙ୍ଗଟିକୁ ଆସିବା । ଯେକୌଣସି ସମାଜ ବା ସଭ୍ୟତାର କ୍ରମବିକାଶର ଇତିହାସକୁ ଦେଖିଲେ ଏହା ସ୍ପଷ୍ଟ ହୋଇଥାଏ ଯେ ହଜାର ହଜାର ବର୍ଷର କ୍ରମବିକାଶ ଧାରାରେ ମଣିଷ ଆଦିମ ଅବସ୍ଥାରୁ ଆଜିର ପରିସ୍ଥିତି ସ୍ତରକୁ ଆସିପାରିଛି । ନିଆଁର ବ୍ୟବହାର, କୃଷିର ଉଦ୍ଭାବନ, ଭାଷା ଓ ଲିପିର ଜ୍ଞାନ ଠାରୁ ଧୀରେ ଧୀରେ ଗୋଷ୍ଠୀ ଜୀବନ ଆଗକୁ ଯାଇଛି । ଏକଦା ମଣିଷ ଆଦିମ ସ୍ତରରେ ଉଲଗ୍ନ ରହୁଥିଲା, ପାହାଡ଼ ପର୍ବତ ଗୁହାରେ ବାସ କରୁଥିଲା । ପଶୁ ଭଳି ଜୀବନ ବଞ୍ଚୁଥିଲା ଓ ସଭ୍ୟତା ମଣିଷକୁ ସ୍ପର୍ଶ କରିନଥିଲା । ଆଦିମାନବର ସଭ୍ୟତା ଧୀର ମନ୍ଥର ଗତିରେ ବିକାଶ ଲାଭ କରି ଆଜିର ସ୍ଥିତିକୁ ଆସିଛି । ମାତ୍ର ତିନି ଶହ ବର୍ଷ ତଳେ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ବାଷ୍ପ-ଶକ୍ତିର ବ୍ୟବହାର ଦୁଇ ଶହ ବର୍ଷ ତଳେ ଜାଣିବା ପରେ ରେଳଗାଡ଼ିର ଉଦ୍‌ଭାବନ ହେଲା । ମାତ୍ର ଶହେ ବର୍ଷ ତଳେ ବେତାର ପ୍ରେରଣ ଜନିତ ଜ୍ଞାନରୁ ରେଡିଓ, ଟେଲିଫୋନ୍‌ର ଉଦ୍‌ଭାବନ ହେଲା । ଆଜିର ମୋବାଇଲ ଟେଲିଫୋନ୍, ଟେଲିଭିଜନ, ଇଣ୍ଟରନେଟ, କୃତ୍ରିମ ଅଙ୍ଗରୋପଣ, ରଂଜନ ରଶ୍ମି, ଅତ୍ୟାଧୁନିକ ବିଭିନ୍ନ ରୋଗର ଚିକିତ୍ସା, ଜେରକ୍ସ ମେସିନ୍ ସବୁ ସ୍ଥାନରେ ଉପଲବ୍ଧ ହୋଇପାରୁଛି । ଯାହା ପଚାଶ, ଶହେ ବର୍ଷ ତଳେ ଅଚିନ୍ତନୀୟ ଥିଲା । ତେବେ ଏସବୁ ମଣିଷର ପ୍ରୟାସ ଓ ମସ୍ତିଷ୍କ ଚାଳନାରୁ ସମ୍ଭବ ହୋଇଛି । ଏହା କେଉଁ ଦିଅଁ, ଦେବତା, ବା ଈଶ୍ୱର ମଣିଷକୁ ଦେଇ ନାହାଁନ୍ତି । ବରଂ ସଭ୍ୟତାର ବିକାଶ ଧାରାରେ ମଣିଷ କେତେ ଦିଅଁ ଦେବତା ଈଶ୍ୱରର ପରିକଳ୍ପନା କରିଛି । ଦାର୍ଶନିକ ଚିନ୍ତନର ବିକାଶ ଦେଇ ବହୁ ଈଶ୍ୱରବାଦରୁ ଏକେଶ୍ୱରବାଦର ଭାବନା ସୃଷ୍ଟି ହୋଇଛି । ସେହିପରି କ୍ଷୁଦ୍ର ଗୋଷ୍ଠୀ ଠାରୁ ବୃହତ୍ତର ଗୋଷ୍ଠୀ, ରାଜ୍ୟ, ରାଜତନ୍ତ୍ର, ରାଷ୍ଟ୍ର, ସରକାର ଇତ୍ୟାଦି ରାଜନୈତିକ ସଂଗଠନମାନ କାଳକ୍ରମେ ବିକାଶ ଲାଭ କରିଛି । ଡଙ୍ଗା, ଘୋଡା, ହାତୀ ଉପରେ ବସି ଦୂର ଯାଗାକୁ ଯାଉଥିବା ମଣିଷ ଆଜି ଉଡାଜାହାଜରେ ଉଡ଼ି ପାରୁଛି ଓ ପୃଥିବୀର ଦୂରତାକୁ କମାଇ ଦେଇଛି । ଏ ସବୁ ମଣିଷର ପ୍ରୟାସ ଦ୍ୱାରା ସମ୍ଭବ ହୋଇଛି ।

ଏହି ଐତିହାସିକ ବିକାଶର ବାସ୍ତବ ଭିତ୍ତି ଉପରେ ହେତୁବାଦ ବୌଦ୍ଧିକ କୌତୂହଳତା, ମୁକ୍ତ ମନ ଓ ବୈଜ୍ଞାନିକ ଅନୁସନ୍ଧାନକୁ ପ୍ରାଧାନ୍ୟ ଦେଇଛି । ହେତୁବାଦୀମାନେ ମୁକ୍ତ ମନ ପୋଷଣ କରନ୍ତି ଓ ମଣିଷର ପ୍ରୟାସକୁ ଗୁରୁତ୍ୱ ଆରୋପ

କରନ୍ତି । ସେହିପରି ଉତ୍ତମ ଜୀବନ କିପରି ବଞ୍ଚି ହେବ ତାହା ବି ହେତୁବାଦୀଗଣ ଚିନ୍ତା କରିଛନ୍ତି । କେଉଁ ନୀତି, ଆଦର୍ଶ ସଭ୍ୟ ଜୀବନର ମାନଦଣ୍ଡ ଏହି ପ୍ରସଙ୍ଗ ଉପରେ ହେତୁବାଦୀମାନେ ମଧ୍ୟ ଗମ୍ଭୀର ଚିନ୍ତା ପ୍ରକଟ କରି ଆସିଛନ୍ତି । ଆମର ଅନୁଭୂତି, ଚିନ୍ତନ ଓ ବୌଦ୍ଧିକ ମନନ (reflection) ମଧ୍ୟ ଦେଇ ମଣିଷ ସଭ୍ୟ ଜୀବନର ମୂଲ୍ୟବୋଧ ଗୁଡିକର ବିକାଶ କରାଇଛି । ସେହିପରି ଆମର ରାଜନୈତିକ ଆଦର୍ଶ, ଅର୍ଥନୈତିକ ବ୍ୟବସ୍ଥା, ସାଂସ୍କୃତିକ ମୂଲ୍ୟଚୟ ଓ ଶିକ୍ଷାର ପ୍ରସାର ମଣିଷର ପ୍ରୟାସ ମଧ୍ୟ ଦେଇ ବିକଶିତ ହୋଇଛି । ସଭ୍ୟ ଜୀବନ ଧାରାର ଅଭିବୃଦ୍ଧି କ୍ଷେତ୍ରରେ ଏ ସବୁର ବି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି । ମୋଟ ଉପରେ କହିଲେ ଆମର ଚିନ୍ତନ ଓ ବିଚାରଶୀଳତା ଯୋଗୁଁ ସଭ୍ୟତା ଆଗକୁ ଯାଇଛି ଓ ମଣିଷ ନିଜର ବୁଦ୍ଧି ପ୍ରୟୋଗ କରି ଯେକୌଣସି ସଂକଟରୁ ରକ୍ଷା ପାଇଁ ଉପାୟ ଚିନ୍ତା କରୁଛି ।

ମଣିଷ ଭିତରେ ରହିଥିବା ବୁଦ୍ଧି ଓ ବିଚାରଶୀଳତା ଯୋଗୁଁ ମଣିଷ ହିଁ ବିକାଶ ଓ ସଭ୍ୟ ଜୀବନର ପାହାଚ ଉଠି ଉଠି ଚାଲିଛି । ପଶୁମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ଜୀବନ ବଞ୍ଚୁଥିଲେ ଆଜି ବି ସେହି ସ୍ତରରେ ରହିଛନ୍ତି । କିନ୍ତୁ ମଣିଷ ? ହେ ବର୍ଷ ତଳର ସାମାଜିକ ସ୍ଥିତି ଓ ଜୀବନ ଧାରଣର ମାନ ଓ ଆଜିର ସ୍ଥିତି ଓ ମାନ ଭିତରେ ଅନେକ ପ୍ରଭେଦ ରହିଛି । ପଶୁ ହେଉ, ମନୁଷ୍ୟ ହେଉ ସମସ୍ତେ ଭୋକର ଅନୁଭୂତିରୁ ଖାଦ୍ୟ ସନ୍ଧାନ କରିଛନ୍ତି । କିନ୍ତୁ ପଶୁମାନେ ପରିବେଶରେ ଯାହା ପାଆନ୍ତି ତାହା ଖାଆନ୍ତି । ମଣିଷ କିନ୍ତୁ ଖାଦ୍ୟ କିପରି ଉତ୍ପାଦନ କରିବ, ଆଗାମୀ ସମୟ ପାଇଁ ସଞ୍ଚୟ କରି ରଖିବ ସେ ବିଷୟ ଚିନ୍ତା କରେ । କେବଳ ଅନୁଭୂତି ଓ ପ୍ରବୃତ୍ତି ମଣିଷ ପାଇଁ ଯଥେଷ୍ଟ ହୋଇନାହିଁ । ବରଂ ତାହାରି ଆଧାରରେ ମଣିଷ ଚିନ୍ତା କରିଛି । ସେହି ଚିନ୍ତା ଭିତରୁ ସେ ରାତିକୁ ଆଲୋକିତ କରିପାରିଛି, ଶୀତ ଓ ଗ୍ରୀଷ୍ମରୁ ନିଜକୁ ରକ୍ଷା କରିବା ପାଇଁ ପନ୍ଥା ବାହାର କରିଛି, ବିଭିନ୍ନ ରୋଗ-ଯନ୍ତ୍ରଣାରୁ ମୁକ୍ତି ପାଇଁ ଚିକିତ୍ସା ବିଜ୍ଞାନର ବିକାଶ କରିଛି ଇତ୍ୟାଦି ଇତ୍ୟାଦି । ଏ ସବୁ ସମ୍ଭବ ହୋଇଛି ମଣିଷର ବିଚାରଶୀଳତାରୁ । ସୁତରାଂ ହେତୁବାଦୀ ଦର୍ଶନର ମୂଳ ଆଧାର ହେଉଛି ବିଚାରଶୀଳ ଦୃଷ୍ଟି । ବିଚାରଶୀଳତାର ପ୍ରୟୋଗ ଓ ପ୍ରସାର ଏକ ବଡ ମୂଲ୍ୟବୋଧ । ଯେଉଁଠି ବିଚାରଶୀଳତା ନାହିଁ କିମ୍ବା ଚିନ୍ତା କରିବାର ଅବକାଶ ନାହିଁ ବା ଚିନ୍ତା କରିବାକୁ ମଣିଷ ଅସ୍ୱୀକାର କରିଛି ତାହା ଦ୍ୱାରା ସେ ଅନୁନ୍ନତ ଓ ଅସଭ୍ୟ ହୋଇରହିଛି । ଜଣେ ଦାର୍ଶନିକଙ୍କ ମତରେ "Rationality is man's foremost virtue. Evasion, suspension or refusal to think is man's basic vice".

ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ମଣିଷ ସମାଜରେ ସବୁବେଳେ ଦୁଃଖ, ଯନ୍ତ୍ରଣା ରହିଛି । ପ୍ରକୃତି ଭିତରୁ ଆମେ ଆମର ସମସ୍ତ ସାଧନ ପାଉଥିଲେ ବି ପ୍ରକୃତି ବେଳକେ ବହୁ ପ୍ରତିକୂଳ ହୋଇଥାଏ । ପ୍ରାକୃତିକ ବିପର୍ଯ୍ୟୟ ହେଉ କିମ୍ବା ରୋଗବାଧକ ହେଉ ଏସବୁ ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାକୁ ମଣିଷ ପ୍ରୟାସ କରିଛି । ତେବେ ଦୁଃଖ ଯନ୍ତ୍ରଣା ଧାର୍ମିକ ବିଚାର ସ୍ତରରେ ପୂର୍ବନିର୍ଦ୍ଦିଷ୍ଟ, ଦୈବୀ କୃତ ବୋଲି ଭାବନା ରହିଛି । ଦୁଃଖ ଓ ପ୍ରତିକୂଳ ସ୍ଥିତିରୁ ଉଦ୍ଧାର ପାଇଁ ଧର୍ମ ଦେବତାର ଆରାଧନା, ପ୍ରାର୍ଥନା କଥା କହିଛି । କିନ୍ତୁ ହେତୁବାଦୀମାନେ ପ୍ରାକୃତିକ ବିପର୍ଯ୍ୟୟ ଓ ଦୁଃଖ ଯନ୍ତ୍ରଣାରୁ ମୁକ୍ତି ପାଇଁ ଉପାୟ ବାହାର କରିବାକୁ ପ୍ରୟାସ କରିଛନ୍ତି । ତେବେ ବିଡମ୍ବନାର ବିଷୟ ମଣିଷର ଦୁଃଖ ଯନ୍ତ୍ରଣା ଯେତେ ପ୍ରାକୃତିକ କାରଣ ଯୋଗୁ ନୁହେଁ, ସେତେ ମନୁଷ୍ୟକୃତ କାରଣରୁ ହିଁ ହୋଇଥାଏ । ଅର୍ଥାତ୍ କେତେକଙ୍କର ଦୁର୍ବୁଦ୍ଧି, ଶୋଷଣ, ଅତ୍ୟାଚାର ଓ ସ୍ଥଳ ବିଶେଷରେ ଅଜ୍ଞତା ଯୋଗୁଁ ସମାଜରେ ଅନେକ ମଣିଷ ଦୁଃଖରେ ଜୀବନ ଅତିବାହିତ କରନ୍ତି । ମଣିଷ

ସମାଜରେ ରହିଥିବା ଏହି ମାନବକୃତ ଶୋଷଣ ଓ ଦୁର୍ବୁଦ୍ଧିକୁ ଦୂର କରାଯାଇ ପାରିଲେ ସମ୍ଭବତଃ ଜୀବନ ଅଧିକ ପ୍ରୀତିମୟ ହୋଇପାରନ୍ତା । ମଣିଷ ଭିତରେ ରହିଥିବା ଏହି ମାନବକୃତ ଅନ୍ୟାୟ, ଦୁର୍ବୁଦ୍ଧି ଓ ଅମାନବିକତାକୁ ଦୂର କରିବା ହିଁ ହେତୁବାଦୀ ଜୀବନଦର୍ଶନର ମୌଳିକ ଆଭିମୁଖ୍ୟ ।

ଜୀବନର ମୂଲ୍ୟାୟନ ସୁତରାଂ ନୈତିକ ଆଚରଣ ଓ ବୃହତ୍ତର ସମାଜ ପ୍ରତି ଦୃଷ୍ଟିଭଙ୍ଗୀ ଆଧାରରେ କରାଯାଇପାରିବ । ନୈତିକ ଔଚିତ୍ୟବୋଧ, ସମାଜପ୍ରତି ଅଙ୍ଗୀକାରବଦ୍ଧତା, କର୍ତ୍ତବ୍ୟଜ୍ଞାନ ଓ ସମ୍ବେଦନଶୀଳତା ଜୀବନଦୃଷ୍ଟିର ମୂଳମନ୍ତ୍ର ହେଲେ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଥାଏ । ସାମାଜିକ ଜୀବନ ପ୍ରବାହରେ ଏହି ଆଦର୍ଶ ଗୁଡ଼ିକ ଯଦି ମାନବିକ ସମ୍ବନ୍ଧ କ୍ଷେତ୍ରରେ ଅଧିକରୁ ଅଧିକ ପ୍ରତିଫଳିତ ହୁଏ ତେବେ ଜୀବନର ମାନ ଓ ମୂଲ୍ୟ ଉନ୍ନତ ହୋଇଥାଏ । ଏହା ସହିତ ହେତୁବାଦୀ ଜୀବନଦର୍ଶନ ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମର୍ଯ୍ୟାଦାକୁ ପ୍ରାଧାନ୍ୟ ଦେଇଥାଏ । ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମର୍ଯ୍ୟାଦାକୁ ସ୍ୱୀକାର କରିବାର ପରିଣାମ ସ୍ୱରୂପ "ମାନବିକ ଅଧିକାରର ବିଶ୍ୱ ଘୋଷଣା" ଆନ୍ତର୍ଜାତିକ ସ୍ତରରେ ବ୍ୟକ୍ତ ହୋଇପାରିଛି । ହେତୁବାଦୀ ଜୀବନ-ଦର୍ଶନର ବିକାଶ ମାଧ୍ୟମରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସର୍ବଜନହିତୈଷୀ ମାନସିକତା ବୃଦ୍ଧି ପାଇବାରେ ଲାଗିଛି । ହେତୁବାଦୀମାନେ ସବୁ ସଭ୍ୟତାରେ ଏକ ମହତ୍ତର ବିଶ୍ୱର ପରିକଳ୍ପନା କରିଛନ୍ତି, ଯେଉଁଠି ଭ୍ରାତୃତ୍ୱବୋଧ, ସଂପ୍ରୀତି, ମାନବିକ ସମ୍ବେଦନଶୀଳତା, ନ୍ୟାୟବୋଧ ପରି ମୂଲ୍ୟଚୟ ଜୀବନ ପ୍ରବାହର ଆଦର୍ଶ ହୋଇରହିବ । ଏହି ସବୁ ମୂଲ୍ୟବୋଧ ଯେତେ ଅଧିକରୁ ଅଧିକ ସାର୍ବଜନୀନ ଭାବେ ଜୀବନରେ ଓ ସକଳ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ପ୍ରତିଫଳିତ ହେବ ଜୀବନର ଗୁଣାତ୍ମକ ମାନ ସେତେ ଅଧିକ ବୃଦ୍ଧି ପାଇବ ।

ହେତୁବାଦର ବିଶ୍ୱାସାନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ଉପଯୁକ୍ତ ସାମାଜିକ ପରିବେଶରେ ନୈତିକ ଉତ୍କର୍ଷର ଅଧିକାରୀ ହେବା ସହ ଏକ ଗୁଣାତ୍ମକ ଜୀବନ ନିର୍ବାହ କରିପାରିବ । ତାହାର ସକଳ ସାମାଜିକ ସଂପର୍କ ଭିତରେ ସେ ମାନବିକ ମୂଲ୍ୟବୋଧକୁ ଗୁରୁତ୍ୱ ଦେଇପାରିବ । ତାହା ଦ୍ୱାରା ଜୀବନର ମୂଲ୍ୟ ଓ ମାନ ଉନ୍ନତ ହୋଇପାରିବ । ଏହା ସମ୍ଭବ, କିନ୍ତୁ ବାସ୍ତବ ପକ୍ଷେ ସମାଜକୁ ଏହି ସ୍ଥିତିକୁ ନେବା ସମ୍ଭବ ହୋଇନାହିଁ । ମଣିଷର ସ୍ୱଭାବ, ପ୍ରକୃତି ଓ ସାମାଜିକ ସ୍ଥିତି ଯାହା ରହିଛି, ସେଥିରେ ଜୀବନ ପ୍ରବାହରେ କେତେକ ଦ୍ୱନ୍ଦ୍ୱ, ସଂଘର୍ଷ, ସଂକଟ, ବିରୋଧାଭାସ ରହିବା ଅସମ୍ଭବ ନୁହେଁ । ସମାଜରୁ ସକଳ ଦ୍ୱନ୍ଦ୍ୱ ଓ ବିରୋଧାଭାସ ଯେ ବିଲୋପ ହୋଇଯିବ ତାହା ଭାବିବା ଯଥାର୍ଥ ନୁହେଁ । ତେବେ ବିଚାରଶୀଳତା ଓ ମାନବିକତାର ପ୍ରସାର ଦ୍ୱାରା ସମାଜରେ ସଂହତି ବହୁ ଭାବରେ ବୃଦ୍ଧି ପାଇପାରିବ ଓ ଦ୍ୱନ୍ଦ୍ୱ ଓ ବିରୋଧାଭାସର ଅନେକ ହ୍ରାସ ହୋଇପାରିବ ।

ବସ୍ତୁତଃ ଏକ ଉତ୍ତମ ଜୀବନର ମୂଳ ଭିତ୍ତି ଦୁଇଟି ସ୍ତମ୍ଭ ଉପରେ ଗଢ଼ି ଉଠିପାରିବ ତାହା ହେଲା ବିଚାରଶୀଳ ଦୃଷ୍ଟି ଓ ନୈତିକ ଆଦର୍ଶବୋଧ । ବିଚାରଶୀଳତା ଓ ନୈତିକ ଆଦର୍ଶବୋଧ ଜନିତ ମାନବିକତା ହିଁ ଏକ ଉନ୍ନତ ଜୀବନର ମୂଲ୍ୟ ବହନ କରେ । ତେବେ ଯେଉଁମାନେ ଉତ୍ତମ ଜୀବନର ଅଧିକାରୀ ସେମାନେ ଯେ ଜୀବନରେ ସଫଳ ଓ ସୁଖୀ ମଣିଷ ଏହା କୁହାଯାଇପାରିବ ନାହିଁ । ସଭ୍ୟତାକୁ ଓ ବିଜ୍ଞାନରାଜ୍ୟକୁ ଅମୂଲ୍ୟ ଅବଦାନ ଦେଇଥିବା କେତେକ ମାନବବାଦୀ ବ୍ୟକ୍ତି ଜୀବନରେ ବହୁ ଯନ୍ତ୍ରଣା ଜର୍ଜରିତ ହୋଇ ଜୀବନ ନିର୍ବାହ କରିଛନ୍ତି । ସେମାନଙ୍କର ମହନୀୟ ଅବଦାନ ସତ୍ତ୍ୱେ ସେମାନେ ସେମାନଙ୍କର ସମସାମୟିକ ସମାଜରେ ବହୁ କଟାକ୍ଷ ଓ ବିରୋଧର ସମ୍ମୁଖୀନ ହୋଇଛନ୍ତି । ସକ୍ରେଟିସ୍ (ମୃତ୍ୟୁ ଦଣ୍ଡରେ

ଦଣ୍ଡିତ), ଯୀଶୁଖ୍ରୀଷ୍ଟ, ବ୍ରୁନୋ (ଅମାନୁଷିକ ଭାବେ ସେମାନଙ୍କୁ ହତ୍ୟା କରାଯାଇଛି), ସ୍ପିନୋଜା (ଦାର୍ଶନିକ, ଯେ ସମାଜଚ୍ୟୁତ ହୋଇ ବଞ୍ଚିଛନ୍ତି), ଗାଲିଲିଓ (ବନ୍ଦୀ ଜୀବନ ବିତାଇଛନ୍ତି), ମହାତ୍ମା ଗାନ୍ଧୀ, ମାର୍ଟିନ ଲୁଥର କିଙ୍ଗ ଜୁନିୟର (ଉଭୟ ଆତତାୟୀଙ୍କ ଗୁଳିରେ ମୃତ୍ୟୁ ବରଣ କରିଛନ୍ତି) ପରି ବହୁ ବ୍ୟକ୍ତି ସେମାନଙ୍କ ସମସାମୟିକ ସମାଜରେ ବହୁ ଅମାନବିକ ବ୍ୟବହାରର ଶରବ୍ୟ ହୋଇଛନ୍ତି । ଯେଉଁମାନେ ସମାଜରେ କ୍ଷମତାଧର ବା ପ୍ରଭାବଶାଳୀ ବ୍ୟକ୍ତି ସେମାନେ ଯଦି ମତାନ୍ଧ, ଅନ୍ଧବିଶ୍ୱାସୀ ଓ ଅଜ୍ଞ ରହିବେ ତେବେ ତାହାର ନାନା କୁପ୍ରଭାବ ସମାଜରେ ପ୍ରତିଫଳିତ ହେବ । ଇତିହାସ ପୃଷ୍ଠାରେ ଆମେ କେତେକ ସଂସ୍କାରିତ ବ୍ୟକ୍ତି, ମାନବଦରଦୀ ଦାର୍ଶନିକ, ସଂସ୍କାରକ, ଜ୍ଞାନପିପାସୁ ବୈଜ୍ଞାନିକ ମାନଙ୍କୁ ଦେଖୁ ଯେଉଁମାନେ ହେତୁବାଦୀ ମୂଲ୍ୟବୋଧର ପ୍ରସାର କରିବାକୁ ଯାଇ ଜୀବନରେ ବହୁମୂଲ୍ୟ ଦେଇଛନ୍ତି । ଯେକୌଣସି ମାନଦଣ୍ଡରେ ସେମାନେ ଉତ୍ତମ ଜୀବନର ଅଧିକାରୀ ହେଲେ ମଧ୍ୟ ସେମାନେ ଜୀବନ ଯାତ୍ରାରେ ବହୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ସାମାଜିକ ଅନ୍ୟାୟ, ଅହେତୁକ ପରିବେଶ, ଅମାନବିକତା ଓ ଅନ୍ଧବିଶ୍ୱାସକୁ ବିରୋଧ କରୁଥିବା ବୁଦ୍ଧିଦୀପ୍ତ ହେତୁବାଦୀମାନେ ଜୀବନରେ ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ଏହି ମୁକ୍ତଚିନ୍ତକ ଓ ମାନବବାଦୀ ବ୍ୟକ୍ତିମାନେ ବିବେକର ବାର୍ତ୍ତା ଦେବାକୁ ଯାଇ ସମାଜ ଦ୍ୱାରା ନିନ୍ଦିତ ହୋଇଛନ୍ତି, କାରଣ ସେମାନେ ନିଜ ସମୟଠାରୁ ବହୁ ଆଗକୁ ଦେଖିବାକୁ ସମର୍ଥ । ସଭ୍ୟତାର ପଥଦ୍ରଷ୍ଟା ଭାବେ ସେମାନେ ଆଗକୁ ଚିନ୍ତା କରିଛନ୍ତି । ସମାଜର ଅଗଣିତ ମଣିଷ ଓ କ୍ଷମତାଧର ବ୍ୟକ୍ତିମାନେ ଯଦି ଅନ୍ଧବିଶ୍ୱାସୀ ଓ ସ୍ୱାର୍ଥପର ହୁଅନ୍ତି, ତେବେ ତାର କୁପରିଣାମ ଜ୍ଞାନଲିପ୍ସୁ, ବିବେକୀ ଲୋକମାନଙ୍କୁ ସହିବାକୁ ହୁଏ । ତାହାହିଁ ଏକ ବିଡମ୍ବନା । ତେବେ ସେହି ଜ୍ଞାନଲିପ୍ସୁ; ଦରଦୀ ମୁଷ୍ଟିମେୟ ମଣିଷଙ୍କର ଅବଦାନ ଯୋଗୁଁ ହିଁ ସଭ୍ୟ ଜୀବନଦୃଷ୍ଟି ଓ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି ।

ଏକ ସଫଳ ବା ଉତ୍ତମ ଜୀବନ ହେଉଛି ଏକ ନୀତିବାଦୀ ଓ ବିଚାରଶୀଳ ଜୀବନ । ନୈତିକତା ହିଁ ସଭ୍ୟ ଜୀବନଧାରାର ମୌଳିକ ଲକ୍ଷଣ । ନୈତିକତାବିହୀନ ଜୀବନ ପଶୁତୁଲ୍ୟ । ନୈତିକତାର ମୂଳ ଲକ୍ଷ୍ୟ ହେଉଛି ସମାଜରେ ନ୍ୟାୟ, ସମତା, ମାନବିକ ମର୍ଯ୍ୟାଦା, ସାଧୁତା ପରି ମୂଲ୍ୟଚୟର ବିକାଶ ଘଟାଇବା । ଏହି ମୂଲ୍ୟଚୟର ବିକାଶ ଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇବ । ବ୍ୟକ୍ତି ଜୀବନରେ ଓ ଗୋଷ୍ଠୀ ଜୀବନରେ ଏହି ମୂଲ୍ୟଚୟର ପ୍ରତିଫଳନ ସଫଳ ଓ ସଂସ୍କୃତିସମ୍ପନ୍ନ ଜୀବନର ମାନଦଣ୍ଡ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ବିଚାରଶୀଳତା ଜନିତ ମୁକ୍ତ ମାନସିକତା ଉତ୍ତମ ଜୀବନର ଅନ୍ୟ ଏକ ଲକ୍ଷଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦୃଷ୍ଟିଭଙ୍ଗୀ ମଣିଷକୁ ଚିନ୍ତା କରିବାକୁ ପ୍ରେରଣା ଦେଇଛି । ତାହାର ଫଳ ସ୍ୱରୂପ ମଣିଷ ଉନ୍ନତରୁ ଉନ୍ନତତର ସ୍ଥିତିକୁ ଯିବାରେ ସମର୍ଥ ହୋଇଛି । କେତେକ ବ୍ୟକ୍ତିଙ୍କର ଚିନ୍ତା, ଅନୁସନ୍ଧିତ୍ସା ଓ ଜ୍ଞାନପିପାସା ଯୋଗୁଁ ସଭ୍ୟତାର ବିକାଶ ସହ ଜୀବନ ଅଧିକରୁ ଅଧିକ ସୁଖପ୍ରଦ ହୋଇପାରିଛି । ବସ୍ତୁତଃ ନୈତିକତା ଓ ବିଚାରଶୀଳତା ଜୀବନଧାରାର ଦୁଇଟି ପ୍ରମୁଖ ଆଦର୍ଶ ଯାହା ଜୀବନର ଗୁଣାତ୍ମକ ମୂଲ୍ୟ ବୃଦ୍ଧି ଦିଗରେ ନିର୍ଣ୍ଣାୟକ ମନେହୁଏ ।

ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ସମାଜ ଦୀର୍ଘସ୍ଥାୟୀ । ହେତୁବାଦୀ ଜୀବନ ଦର୍ଶନ ବ୍ୟକ୍ତିର ମରଣଶୀଳତାକୁ ଏକ ଚିରନ୍ତନ ସତ୍ୟ ଭାବରେ ଗ୍ରହଣ କରେ । ବ୍ୟକ୍ତି ମରଣଶୀଳ ହେଲେ ବି ବ୍ୟକ୍ତିର ଜୀବନକାଳର ଶୃଙ୍ଖଳିତ ଆଚରଣ, କର୍ତ୍ତବ୍ୟବୋଧ, ସମାଜ ପ୍ରତି ଉତ୍ତରଦାୟିତ୍ୱ ସାମାଜିକ ବିକାଶଧାରାକୁ ଉନ୍ନତ କରିଥାଏ । ଧର୍ମମାନଙ୍କରେ ଜୀବନର ଅନ୍ତିମ

ଲକ୍ଷ୍ୟ ମୋକ୍ଷ, ସ୍ୱର୍ଗପ୍ରାପ୍ତି, ନିର୍ବାଣ ପରି କେତେ କେତେ କାଳ୍ପନିକ ସିଦ୍ଧାନ୍ତର ଅବତାରଣା କରାଯାଇଛି । ଯେହେତୁ ମୃତ୍ୟୁ ପରେ ବ୍ୟକ୍ତିର ସଚେତନ ଅସ୍ତିତ୍ୱ ରହିବାର କୌଣସି ଆଧାର ନାହିଁ ତେଣୁ ଏହି କଳ୍ପନାବିଳାସର କିଛି ଅର୍ଥ ହିଁ ନାହିଁ । ବରଂ ଆମେ ଯେଉଁ ସଂସାରଟିରେ ରହିଛେ ସେଠିକାର ଜୀବନ ପ୍ରବାହ କିପରି ଅଧିକ ଉନ୍ନତ, ପ୍ରୀତିପଦ ଓ ମାନବିକ ହେବ ସେ ଦିଗରେ ଆମେ ଆମର ଆଚରଣ ଦ୍ୱାରା ଏହାକୁ ଋଦ୍ଧିମନ୍ତ କରିପାରିବା । ମାନବଜାତି ଏକ ସିନ୍ଧୁ, ବ୍ୟକ୍ତି ଏକ ବିନ୍ଦୁ । ବିନ୍ଦୁମାନଙ୍କ ସମଷ୍ଟିରେ ହିଁ ସିନ୍ଧୁ । ତେବେ ବ୍ୟକ୍ତି ସତ୍ତାଟି ନିଜ ଜୀବନର ସାମର୍ଥ୍ୟ ଓ ସମ୍ଭାବନାକୁ ବିକଶିତ କରାଇ ନିଜର କର୍ତ୍ତବ୍ୟ କରିଗଲେ ଜୀବନର ସାର୍ଥକତା ରହିପାରିବ । ବ୍ୟକ୍ତି ଫୁଲଟିଏ ପରି ଉଦ୍ୟାନର ଶୋଭାକୁ ପଲ୍ଲବିତ କରିପାରିବ ।

ସେହିପରି ବ୍ୟକ୍ତିର ଜନ୍ମ ଉପରେ ବ୍ୟକ୍ତିର ନିୟନ୍ତ୍ରଣ ନଥାଏ । ବାପା, ମା'ଙ୍କର ଦୈହିକ ସଂପର୍କରୁ ବ୍ୟକ୍ତିର ଜନ୍ମ । କିନ୍ତୁ ବ୍ୟକ୍ତି ପରିବାର, ଶିକ୍ଷା, ବୃହତ୍ତର ସମାଜ ଦ୍ୱାରା ପ୍ରଭାବିତ ହୋଇ ଏକ ବ୍ୟକ୍ତିତ୍ୱର ଅଧିକାରୀ ହୁଏ । ସେହି ବ୍ୟକ୍ତିସତ୍ତାଟି ବିକଶିତ ହେବା ପରେ ସେ ନିଜର ସ୍ୱତନ୍ତ୍ରତାର ଅଧିକାରୀ ହୁଏ ଓ ସମାଜରେ ନିଜର ସ୍ଥାନ ନିଏ । ସେ ଯେଉଁ ଜୀବନଟି ବଞ୍ଚେ ତାହାର ଗୁଣାତ୍ମକ ମାନ ତା ଜୀବନକୁ ଅର୍ଥପୂର୍ଣ୍ଣ କରିବା ସହ ସମାଜର ଅଙ୍ଗ ହୋଇଯାଏ । ସେ ସମାଜ ଠାରୁ ଅନେକ କିଛି ପାଏ, ତାର ଶିକ୍ଷା, ନିରାପତ୍ତା, ସ୍ୱାସ୍ଥ୍ୟ ସେବା, ଚିତ୍ତବିନୋଦନ ଇତ୍ୟାଦି ସମାଜ ଯୋଗାଏ । ପ୍ରତିବଦଳରେ ସେ ସମାଜକୁ ତାର ଅବଦାନ ଦିଏ । ନିଜର ଶକ୍ତି, ସାମର୍ଥ୍ୟ ଓ ଯୋଗ୍ୟତା ଅନୁଯାୟୀ ସେ ସମାଜର ଜୀବନଧାରାକୁ ପୁଷ୍ଟ କରିଥାଏ । ଏହି ପାରସ୍ପରିକତା ସମାଜ ଓ ବ୍ୟକ୍ତିର ସମ୍ବନ୍ଧକୁ ଦୃଢ଼ କରିଥାଏ ।

ଜଣେ ଯଶସ୍ୱୀ ଚିନ୍ତାନାୟକଙ୍କ ମତରେ ଦାର୍ଶନିକମାନେ ଆମ ପୃଥିବୀକୁ ନାନା ଭାବରେ ବ୍ୟାଖ୍ୟା କରିଛନ୍ତି, କିନ୍ତୁ ଆବଶ୍ୟକ ଏକ ଶ୍ରେଣୀମୁକ୍ତ ଓ ଶୋଷଣମୁକ୍ତ ସମାଜ ଗଠନ । ସେହିପରି ଉତ୍ତମ ଜୀବନ ବିଷୟରେ, ଦର୍ଶନ, ଧର୍ମ ଓ ସାହିତ୍ୟରେ ଶଗଡ଼ ଶଗଡ଼ ଗ୍ରନ୍ଥ ରହିଛି । ତେବେ 'ଉତ୍ତମ ଜୀବନ' ବଞ୍ଚିବା ହିଁ ଜୀବନର ସାର୍ଥକତା । କାର୍ଯ୍ୟ ହିଁ ତାହାର ମାନଦଣ୍ଡ । ଇଂରାଜୀରେ ସେଥିପାଇଁ କୁହାଯାଇଛି, - "Actions speak louder than words".



# ମାନବୀୟ ସଂକଟ ଓ ହେତୁବାଦ

ସଭ୍ୟତାର କ୍ରମବିକାଶ ଧାରାରେ ମଣିଷ ସବୁ ସମୟରେ କିଛି ନା କିଛି ସମସ୍ୟା ଓ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଆସିଛି । ସଭ୍ୟତା ଯେତେବେଳେ ଆଦିମ ସୋପାନରେ ରହିଥିଲା ବା ଆଜି ଯେତେବେଳେ ଜ୍ଞାନ ବିଜ୍ଞାନ ଦ୍ୱାରା ଅତ୍ୟାଧୁନିକ ସ୍ତରକୁ ଆସିପାରିଛି କୌଣସି ସମୟରେ ମଣିଷକୁ ସମସ୍ୟା ଛାଡି ନାହିଁ । ତେବେ ମାନବିକ ସମସ୍ୟା ବ୍ୟକ୍ତିଗତ, ଗୋଷ୍ଠୀଗତ, ଆଞ୍ଚଳିକ, ରାଷ୍ଟ୍ରୀୟ ସ୍ତରର ହୋଇପାରେ କିମ୍ବା ସମଗ୍ର ମଣିଷ ସମାଜ ପାଇଁ ବି ହୋଇପାରେ । ଆଧୁନିକ ବିଜ୍ଞାନ ମତରେ ଆମ ଗ୍ରହ ପୃଥିବୀ ପ୍ରାୟ ଚାରି ଶହ ପଚାଶ କୋଟି ବର୍ଷ ତଳେ ଉତ୍ପତ୍ତି ହୋଇଥିଲା ଓ ପୃଥିବୀ ପୃଷ୍ଠରେ ପ୍ରାୟ ଶହେ କୋଟି ବର୍ଷ ତଳେ ଜୀବନର ଉଦ୍‌ଭବ ହେଲା । ଜୀବନର ଉତ୍ପତ୍ତି ପରଠାରୁ ନାନା ପାରିବେଶିକ ଓ ପ୍ରାକୃତିକ ବିବର୍ତ୍ତନ ମଧ୍ୟ ଦେଇ ମଣିଷ ଭଳି ଜୀବ ମାନଙ୍କର ଆବିର୍ଭାବ ପ୍ରାୟ ଏକ ଲକ୍ଷ ବର୍ଷ ତଳେ ହୋଇଥିଲା । ତେବେ ପୃଥିବୀ ପୃଷ୍ଠରେ ଜଙ୍ଗଲରେ ଯାଯାବର ଜୀବନ ବଞ୍ଚୁଥିବା ମଣିଷ ପ୍ରାୟ ପାଞ୍ଚହଜାର ବର୍ଷ ତଳେ ସ୍ଥାୟୀ ଭାବେ କୃଷି କରି ବଞ୍ଚିବା ଆରମ୍ଭ କରିଥିବା ନାନା ବୈଜ୍ଞାନିକ ଅନୁଶୀଳନରୁ ଜଣାପଡ଼େ । ଏହି ପାଞ୍ଚ ହଜାର ବର୍ଷ ଭିତରେ ଧୀର ମନ୍ଥର ଗତିରେ ନାନା ବିକାଶର ସୋପାନ ଦେଇ ମଣିଷ ଆଜିର ସ୍ତରକୁ ଆସିପାରିଛି । ତେବେ ସବୁ ସମୟରେ ନାନା ଆହ୍ୱାନ ଓ ପ୍ରତିକୂଳ ସମସ୍ୟା ଭିତରେ ମଣିଷ ଆଗକୁ ଆଗକୁ ଚାଲିଛି । ସ୍ଥାୟୀ ଗୋଷ୍ଠୀ ଜୀବନ, ଭାଷାର ବ୍ୟବହାର ଓ ବୁଦ୍ଧିର ପ୍ରୟୋଗ ମଧ୍ୟ ଦେଇ ବିଭିନ୍ନ ଭୂଖଣ୍ଡରେ ସଭ୍ୟତାର କ୍ରମ ବିକାଶ ହୋଇଛି । କାଳକ୍ରମେ ବିଭିନ୍ନ ଗୋଷ୍ଠୀର ବିଭିନ୍ନ ପରମ୍ପରା, ଭାଷା, ନୀତିବୋଧ, ଚଳଣି ଇତ୍ୟାଦି ସୃଷ୍ଟି ହୋଇଛି । ପରିଣାମତଃ ବିଭିନ୍ନ ଗୋଷ୍ଠୀ ଭିତରେ ପାର୍ଥକ୍ୟକୁ ନେଇ ବହୁ ଅତୀତରୁ ଗୋଷ୍ଠୀ-ବିଦ୍ୱେଷ ସମାଜରେ ରହିଆସିଛି । ସଭ୍ୟତା ଏବେ ବହୁ ଆଗକୁ ଯାଇଥିଲେ ମଧ୍ୟ ମଣିଷ ସମାଜରୁ ଜାତି, ଭାଷା, ଜାତୀୟତା, ଧର୍ମକୁ ନେଇ ରହିଥିବା ଗୋଷ୍ଠୀ କନ୍ଦଳର ବିଲୋପ ହୋଇନାହିଁ । ଏହା ସହିତ ସାମଗ୍ରିକ ଭାବେ ମଣିଷ ସମାଜ ବିଭିନ୍ନ ସମସ୍ୟା ଓ ସଂକଟର ସମ୍ମୁଖୀନ ହୋଇଆସିଛି । ଶଂସିତ ପ୍ରବନ୍ଧରେ ଜୀବନ ସହିତ ଯେଉଁ ସବୁ ସମସ୍ୟା ସନ୍ନିହିତ ହୋଇରହିଛି ତାହାର ସଂକ୍ଷିପ୍ତ ଆଲୋଚନା ସହ ହେତୁବାଦୀ ଜୀବନଦର୍ଶନ କିପରି ମଣିଷକୁ ସର୍ବଦା ଆଗକୁ ଯିବାକୁ ବାଟ ଦେଖାଇବା ସହ ସଭ୍ୟ ଜୀବନ ପାଇଁ ପ୍ରେରଣା ଯୋଗାଇଛି, ତାହାର କିଞ୍ଚିତ ଆଲୋଚନା କରାଯିବାକୁ ଲକ୍ଷ୍ୟ ରଖାଯାଇଛି ।

ସବୁ ସମାଜରେ ଓ ସବୁ ଯୁଗରେ ମଣିଷ ପାଇଁ ବଡ଼ ସଙ୍କଟ ହେଉଛି 'ସୀମିତ ସମ୍ବଳ' । ଏକ ସୁସ୍ଥ ଜୀବନ ଯାପନ ପାଇଁ ମଣିଷର ସର୍ବନିମ୍ନ ଆବଶ୍ୟକତା ହେଉଛି ଖାଦ୍ୟ, ବସ୍ତ୍ର, ବାସସ୍ଥାନ ଓ ଚିକିତ୍ସା । ସଭ୍ୟତାର ଆଦିକାଳରେ ମଣିଷକୁ ଖାଦ୍ୟ ପାଇଁ ନାନା ପ୍ରୟାସ କରିବାକୁ ପଡୁଥିଲା ଓ ଦୁର୍ଭିକ୍ଷ ଜନିତ ପରିସ୍ଥିତିରେ ଅନେକ ବ୍ୟକ୍ତି ମୃତ୍ୟୁବରଣ କରୁଥିଲେ । ଆଜି ଏତେ ବିକାଶ ପରେ ମଧ୍ୟ ତୃତୀୟ ବିଶ୍ୱର ଅନେକ ଦେଶରେ କେତେ ମଣିଷ ବୁଭୁକ୍ଷୁ ହୋଇ ରହୁଛନ୍ତି ।

ଅନେକ ବ୍ୟକ୍ତି ଚିକିତ୍ସାର ସୁଯୋଗ ପାଉନାହାଁନ୍ତି । ସମାଜରେ ଅପପୁଷ୍ଟିରେ କେତେ ଶିଶୁ ଶିକାର ହେଉଛନ୍ତି । ଅନେକ ବ୍ୟକ୍ତି ନିରକ୍ଷର ରହିଛନ୍ତି ବା ମାଧ୍ୟମିକ ଶିକ୍ଷା ସ୍ତରରୁ ଅଭାବ ଓ ଅନାଟନ ଯୋଗୁଁ ଶିକ୍ଷା ଛାଡୁଛନ୍ତି । ଆମ ଦେଶର ସହରମାନଙ୍କରେ ଅଗଣିତ ମଣିଷ ସ୍ଲମ ବା ଝୁମ୍ପୁଡିରେ ଅମାନବୀୟ ସ୍ତରରେ ଜୀବନ ବଞ୍ଚୁଛନ୍ତି । ଯେଉଁ ଆବଶ୍ୟକତା ପୂରଣ ହେଲେ ଏକ ସୁସ୍ଥ ଜୀବନ ବଞ୍ଚିହୁଅନ୍ତା ସେଥିରୁ ସେମାନେ ବଞ୍ଚିତ ହୋଇ ରହୁଛନ୍ତି । ସୀମିତ ସମ୍ବଳ ଯୋଗୁଁ ସବୁ ମଣିଷଙ୍କର ଆବଶ୍ୟକତା ପୂରଣ କରିବା ସମ୍ଭବ ନୁହେଁ ବୋଲି କୁହାଯାଉଛି ।

ସେହିପରି ପ୍ରକୃତି ସଂପର୍କରେ ଓ ଜୀବନ ସମ୍ବନ୍ଧରେ ମଣିଷର ଜ୍ଞାନ ସର୍ବଦା ସୀମିତ ଥିବା ମନେହୁଏ । ପ୍ରକୃତି ଭିତରୁ ମଣିଷ ତାର ଆବଶ୍ୟକତା ପୂରଣ କରେ, ପ୍ରକୃତି ସମ୍ବନ୍ଧରେ ମଣିଷର ଜ୍ଞାନ ଯେତେ ବୃଦ୍ଧି ହୋଇଥିଲେ ବି ପ୍ରକୃତି ମଣିଷ ପାଇଁ ରହସ୍ୟମୟ ହୋଇରହିବା ମନେହୁଏ । ପ୍ରକୃତିର ଜଟିଳତା ଓ ବିଶାଳତା ପରିପ୍ରେକ୍ଷୀରେ ପ୍ରକୃତି ଉପରେ ମଣିଷର ସଂପୂର୍ଣ୍ଣ କର୍ତ୍ତୃତ୍ୱ ପ୍ରାୟ ସମ୍ଭବ ନୁହେଁ ବୋଲି କୁହାଯାଏ । ଏତଦ୍‌ବ୍ୟତୀତ ଯେଉଁ ପ୍ରକୃତିଠାରୁ ଆମ ଜୀବନର ସମସ୍ତ ସଂସାଧନ ଆମେ ପାଇଥାଏ ସେହି ପ୍ରକୃତିର ଉଗ୍ର ରୂପରେ ସମୟରେ କୌଣସି ଅଂଚଳରେ ଧ୍ୱଂସର ତାଣ୍ଡବ ସୃଷ୍ଟି ହୁଏ । ବାତ୍ୟା, ବନ୍ୟା, ଭୂକମ୍ପ, ସୁନାମି ଇତ୍ୟାଦି ପ୍ରାକୃତିକ ଦୁର୍ବିପାକରେ ମଣିଷ ଯନ୍ତ୍ରଣା  ଜର୍ଜରିତ ହୁଏ । ସେହିପରି ପ୍ରାକୃତିକ କାରଣ ଯୋଗୁଁ ମଣିଷ ନାନା ରୋଗ, ମହାମାରୀରେ ଆକ୍ରାନ୍ତ ହୁଏ । ଆଧୁନିକ ଚିକିତ୍ସା ବିଜ୍ଞାନ ସତ୍ତ୍ୱେ ଏବେ ବି ସଂସାରରେ ବହୁ ମଣିଷ ନାନା ରୋଗରେ ଶିକାର ହୋଇଥାନ୍ତି । ପୁନଶ୍ଚ  ପ୍ରକୃତି ଯେଉଁପରି ପ୍ରଦୂଷିତ ହୋଇଚାଲିଛି ଓ ବାୟୁମଣ୍ଡଳର ଉତ୍ତାପ ବଢ଼ିଚାଲିଛି ତାହା ମଧ୍ୟ ଜୀବନ ପାଇଁ ଆହ୍ୱାନ ସୃଷ୍ଟି କରିଚାଲିଛି । ପରିବେଶବିତ୍‌ମାନେ ଭବିଷ୍ୟତ ନେଇ ଅନେକ ଆଶଙ୍କା ବ୍ୟକ୍ତ କରୁଛନ୍ତି ଯେ ଯଦି ଭୂମଣ୍ଡଳର ପରିବେଶ ଏହି ଧାରାରେ ପ୍ରଦୂଷିତ ହୋଇଚାଲେ ତେବେ ଭବିଷ୍ୟତରେ ପୃଥିବୀ ଗ୍ରହରୁ ମଣିଷର ସତ୍ତା ଲୋପ ପାଇଯିବ । ଭୂମଣ୍ଡଳରେ ଜୀବନର ସ୍ଥାୟିତ୍ୱ ନେଇ ମଣିଷର ଜ୍ଞାନ ଯେ ସୀମିତ ଏହା କୁହାଯାଇପାରେ ।

ସୀମିତ ସମ୍ବଳ, ସୀମିତ ଜ୍ଞାନ ସହ ସୀମିତ ବିଚାରଶୀଳତା ହିଁ ମାନବୀୟ ସଂକଟର ଅନ୍ୟ ଏକ ଦିଗନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ମଣିଷ ବୁଦ୍ଧିମାନ ଓ ବିଚାରଶୀଳ, ମଣିଷ ନିଜର ବୁଦ୍ଧି ଯୋଗୁଁ ଏକ ଆଦିମ  ଅବସ୍ଥାରୁ  ଆଜି ଏକ ଉନ୍ନତ ସ୍ଥିତିକୁ ଆସିପାରିଛି । ଇତର ପ୍ରାଣୀମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ସ୍ତରରେ ରହିଥିଲେ ଆଜି ମଧ୍ୟ ସେହି ସ୍ତରରେ ବଞ୍ଚୁଛନ୍ତି । ଗାଈ, କୁକୁର, ମାଙ୍କଡ଼, କାଉ ଇତ୍ୟାଦି ଇତର ଜୀବଙ୍କ ଜୀବନଶୈଳୀରେ କିଛି ପରିବର୍ତ୍ତନ ହୋଇନାହିଁ । କିନ୍ତୁ ମଣିଷ ? ମଣିଷ ନିଜର ବୁଦ୍ଧି ପ୍ରୟୋଗ କରି ଉନ୍ନତିର ସୋପାନରେ ସର୍ବଦା ଅଗ୍ରସର ହୋଇଚାଲିଛି । ଖାଦ୍ୟ, ପୋଷାକ, ଗୃହ, ରୁଚିବୋଧ, ସାମାଜିକ ବ୍ୟବସ୍ଥା ଇତ୍ୟାଦି ପ୍ରତ୍ୟେକ ସ୍ତରରେ ମଣିଷର ଜୀବନଶୈଳୀରେ ପରିବର୍ତ୍ତନ ସର୍ବଦା ସଂଘଟିତ ହୋଇଚାଲିଛି । ମଣିଷର ଏହି ଅନ୍ତର୍ନିହିତ ସାମର୍ଥ୍ୟକୁ ଲକ୍ଷ୍ୟ କରି ବିଶିଷ୍ଟ ଗ୍ରିକ୍ ଦାର୍ଶନିକ ଆରିଷ୍ଟଟଲ (ଖ୍ରୀ.ପୂ.୩୮୪ରୁ ୩୨୨) ମଣିଷର ସଂଜ୍ଞା ଦେବାକୁ ଯାଇ କହିଥିଲେ, 'ମଣିଷ ହେଉଛି ଏକ ବିଚାରଶୀଳ ପ୍ରାଣୀ' । ତେବେ ମଣିଷ ସମାଜରେ ରହିଥିବା ରାଶି ରାଶି କୁସଂସ୍କାର, ଅହେତୁକ ଭାବନା, ଅନ୍ୟାୟ ଓ ଅମାନବିକତାକୁ ଲକ୍ଷ୍ୟ କରି ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ (୧୮୭୨-୧୯୭୦) ସବୁ ମଣିଷ ଯେ ବିଚାରଶୀଳ ଏଥିରେ ପ୍ରଶ୍ନ ଉଠାଇଥିଲେ । ତାଙ୍କର ମତରେ ଯଦି ପ୍ରକୃତରେ ମଣିଷମାନେ ବିଚାରଶୀଳ ହୋଇପାରନ୍ତେ ଆମ ସଂସାର ଅଧିକ

ସୁନ୍ଦର ଓ ପ୍ରୀତିମୟ ହୋଇଉଠନ୍ତା । କିନ୍ତୁ ପରିତାପର ବିଷୟ ଯେ ମଣିଷ ସମାଜରେ ବହୁ ଅନ୍ୟାୟ, ଯୁଦ୍ଧ, ବିଭୀଷିକା ରହିଛି ଓ ତାହାର ମୁଖ୍ୟ କାରଣ ହେଉଛି ମଣିଷର ବିଚାରଶୂନ୍ୟ ଆଚରଣ । ଦୁଇ ଦୁଇଟି ବିଶ୍ୱ ଯୁଦ୍ଧର ଭୟାନକ ସ୍ଥିତିକୁ ଅନୁଭବ କରି ମାନବ ଦରଦୀ ରସେଲ ମଣିଷର ବିଚାରଶୀଳତା ନେଇ ପ୍ରଶ୍ନ ଉଠାଇଥିଲେ । ଏହି ପୃଷ୍ଠଭୂମିରେ ଜଣେ ଆମେରିକୀୟ ଦର୍ଶନ ଅଧ୍ୟାପକ ବାରୋସ ଡନ୍‌ହାମ୍ 'କାଳ୍ପନିକ କାହାଣୀ ବିରୁଦ୍ଧରେ ମଣିଷ' **(Man against Myth)** ନାମରେ ଏକ ପୁସ୍ତକ ଲେଖିଛନ୍ତି । ଡନହାମ୍ ଗୁଡିଏ କାଳ୍ପନିକ କାହାଣୀ ବା ମିଥ୍ କିପରି ସମାଜରେ ବହୁ ଦୁଃଖର କାରଣ ହୋଇଛି ତାହାର ବର୍ଣ୍ଣନା ଦେଇଛନ୍ତି । ନାନା ମିଥ୍ ଭିତରୁ ଗୋଟିଏ ମିଥ୍ ହେଉଛି କେତେକ ନୃବଂଶୀୟ ଜାତି ଉତ୍କୃଷ୍ଟ ଓ ଅନ୍ୟ ଜାତିଗୁଡ଼ିକ ନିକୃଷ୍ଟ । ଏହି ଭାବନା ବହୁ ସମାଜରେ ରହିଛି ଓ ବହୁ ଦୁଃଖର କାରଣ ହେଉଛି । ଜର୍ମାନୀର ଏକଛତ୍ରବାଦୀ ଶାସକ ହିଟଲର ବିଶ୍ୱାସ କଲେ ଯେ ଜର୍ମାନ ଜାତି ହେଉଛି ଶୁଦ୍ଧ ଆର୍ଯ୍ୟ ଓ ସେମାନଙ୍କ ରକ୍ତରେ ଶୁଦ୍ଧତା ରହିଛି । ସେମାନେ ଏକ ଉତ୍କୃଷ୍ଟ ଜାତି ହୋଇଥିବାରୁ ଅନ୍ୟମାନଙ୍କ ଉପରେ ଶାସନ କରିବାର ଅଧିକାର ସେମାନଙ୍କର ରହିଛି । ଏହିପରି ଏକ ମିଥ୍ ଦ୍ୱାରା ପରିଚାଳିତ ହୋଇ ଏକ ବିଶ୍ୱଯୁଦ୍ଧ ସେ ପୃଥିବୀ ଉପରେ ଲଦି ଦେଇଥିଲେ । ସେହି ଯୁଦ୍ଧର ଭୟାନକ ପରିଣତି କେତେ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଛି ତାହା କହିବା ନିଷ୍ପ୍ରୟୋଜନ । ସେହିପରି ଏକଦା ଗୋରା ଆମେରିକୀୟମାନେ ବିଶ୍ୱାସ କରୁଥିଲେ ଯେ ସେମାନେ କଳା ନିଗ୍ରୋଙ୍କ ତୁଳନାରେ ଉତ୍କୃଷ୍ଟ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଗୋରା ଆମେରିକୀୟମାନେ ନିଗ୍ରୋମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଛନ୍ତି ଓ ସେହି ସଂଖ୍ୟାଲଘୁ ଶ୍ରେଣୀକୁ ଦାସତ୍ୱର ବେଡ଼ି ପିନ୍ଧାଇଛନ୍ତି । ଭାରତବର୍ଷରେ ତଥାକଥିତ ଉଚ୍ଚ ଜାତିର ଲୋକମାନେ ଦଳିତ ଓ ଶୂଦ୍ରମାନଙ୍କୁ ଶହ ଶହ ବର୍ଷ ଧରି ପଦ ଦଳିତ କରି ରଖିଛନ୍ତି ଓ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ କରିଛନ୍ତି । ଗୁଡ଼ିଏ ଆଧାରହୀନ ବିଶ୍ୱାସ ବା ମିଥ୍ ଦ୍ୱାରା ପରିଚାଳିତ ହୋଇ ଗୋଟିଏ ଶକ୍ତିଶାଳୀ ଗୋଷ୍ଠୀ ଅନ୍ୟ ଗୋଷ୍ଠୀ ଉପରେ ଅକଥନୀୟ ନିର୍ଯ୍ୟାତନା ଲଦି ଦେଇଛନ୍ତି । ମଣିଷ ନିଜର କେତେକ ଆଧାରହୀନ ବିଶ୍ୱାସକୁ ସତ୍ୟ ବୋଲି ଧରି ନେଇ ସଂସାରରେ ନାନା ଦୁଃଖର ପରିବେଶ ସୃଷ୍ଟି କରିଛି । ସୀମିତ ବୁଦ୍ଧି ଓ ସୀମିତ ବିଚାରଶୀଳତା ହିଁ ଅନେକ ମାନବୀୟ ସଂକଟକୁ ସମାଜରେ ସୃଷ୍ଟି କରାଇଛି ।

ମାନବୀୟ ସଂକଟର ଅନ୍ୟ ଏକ ଦିଗ ହେଉଛି ମଣିଷର ସୀମିତ ସମ୍ବେଦନଶୀଳତା । ପ୍ରତ୍ୟେକ ବ୍ୟକ୍ତି ଭିତରେ ସ୍ୱାର୍ଥପରତା ରହିଛି ଓ ସାମାଜିକ ପ୍ରବୃତ୍ତି ମଧ୍ୟ ରହିଛି । ତେବେ ସମାଜର ସାଧାରଣ ମଣିଷ ନିଜର ପରିବାରର ଭଲ ମନ୍ଦ ଭିତରେ ଆବଦ୍ଧ ରହେ । ସମାଜର ମୁଷ୍ଟିମେୟ ବ୍ୟକ୍ତି ଅନ୍ୟର ଦୁଃଖ, ଦୁର୍ଦ୍ଦଶାରେ ବ୍ୟଥିତ ହୁଅନ୍ତି ଓ ଅନ୍ୟର ଦୁଃଖ ଦୂର ପାଇଁ ସହାନୁଭୂତିର ହାତ ବଢ଼ାଇଥାନ୍ତି । ତେବେ ପରିତାପର ବିଷୟ ସମାଜରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହାର ଅନେକ କାରଣ ମଣିଷ ଯୋଗୁଁ ହିଁ ହେଉଛି । ପ୍ରକୃତି ଆମକୁ ଯେତେ ଦୁଃଖ ଦିଏ ନାହିଁ ତା ଅପେକ୍ଷା ମଣିଷ ହିଁ ଅନ୍ୟର ଦୁଃଖର ଅଧିକ କାରଣ ହୁଏ । ସାମାଜିକ ବୈଷମ୍ୟ, ନିଷ୍ଠୁରତା, ହୃଦୟହୀନତା, ଉଚ୍ଚ-ନୀଚ ଭେଦଭାବ, ନାନା ବିଦ୍ୱେଷ, ଘୃଣା ଆମ ସଂସାରରେ ବା ମଣିଷ ସମାଜରେ କିଛି କମ୍ ନାହିଁ । ଧର୍ମ, ଜାତୀୟତା, ଆଞ୍ଚଳିକତା ଇତ୍ୟାଦିକୁ ନେଇ ଆମ ସଂସାର ବହୁବାର ରକ୍ତରଞ୍ଜିତ ହୋଇଛି । ଇତିହାସରେ ଜଣେ ଜଣେ ଆଲବର୍ଟ ସ୍ୱାଏତକର, ମହାତ୍ମାଗାନ୍ଧୀ, ମଦର ଟେରେସାଙ୍କ ପରି ମହାନ ବ୍ୟକ୍ତି ବିଶ୍ୱ ଦୃଷ୍ଟି ନେଇ ଯେଉଁ ମାନବିକତାର ବାର୍ତ୍ତା ଦେଇଛନ୍ତି ତାହା ସାମାଜିକ ଜୀବନଧାରାରେ ସ୍ଥାୟୀ ହୋଇ ନାହିଁ । ସେମାନେ ଆମ ପାଇଁ ଆଦର୍ଶ ପୁରୁଷ ହୋଇରହିଛନ୍ତି । କିନ୍ତୁ ସମାଜରେ ସ୍ୱାର୍ଥପରତା, ଅନ୍ୟାୟ,

ଶୋଷଣ, ଅତ୍ୟାଚାର ସବୁ ଯୁଗରେ ରହିଆସିଛି ଯାହାକି ସମାଜରେ ନାନା ଦୁଃଖର କାରଣ ହୋଇଛି । ମଣିଷର ସମ୍ବେଦନଶୀଳତା ବ୍ୟକ୍ତି, ପରିବାର ବା ନିଜର ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମିତ ହୋଇ ରହିଛି, ଏହା ସର୍ବଜନବ୍ୟାପୀ ହୋଇପାରୁନାହିଁ ।

ପରିଣାମତଃ ମାନବୀୟ ସଂକଟ ସଭ୍ୟତାର ପହିଲି ପର୍ବରୁ ଆଜିର ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ସର୍ବଦା ରହିଆସିଛି ଓ କେବେହେଲେ ଏକ ସଂକଟ ରହିତ ବିଶ୍ୱ ସମ୍ଭବ ହୋଇନାହିଁ । ସଭ୍ୟତା ଯେତିକି ଆଗକୁ ଯାଉଛି ନୂଆ ନୂଆ ସମସ୍ୟା ଓ ସଂକଟର ଉଦ୍ଭବ ହେଉଛି । ତେବେ ମଣିଷର ବିଚାରଶୀଳତା ମଧ୍ୟ ଦେଇ ମଣିଷ ନିଜ ସମସ୍ୟାର ସମାଧାନ ପାଇଁ ପନ୍ଥା ବାହାର କରିବାକୁ ପ୍ରୟାସ କରିଛି ।

ସଭ୍ୟତାର ପହିଲି ପର୍ବ ଠାରୁ ଆଜିପର୍ଯ୍ୟନ୍ତ ସଭ୍ୟତାକୁ ଯେଉଁମାନଙ୍କର ମୌଳିକ ଅବଦାନ ଯୋଗୁଁ ଜୀବନଧାରଣ ମାନରେ ଉନ୍ନତି ଆସିଛି ସେମାନେ ହେଉଛନ୍ତି ବିଚାରଶୀଳ କ୍ରାନ୍ତିକାରୀ ଚିନ୍ତାନାୟକ । ପ୍ରାକୃତିକ ପରିବେଶକୁ ଅବବୋଧ କରିବା ବା ପ୍ରକୃତିର କୌଣସି କ୍ଷେତ୍ର ଉପରେ ନିଜର ନିୟନ୍ତ୍ରଣ ଆଣି ତାହାକୁ ଜୀବନ ପାଇଁ ଉପଯୋଗ କରିବା ପାଇଁ କିଛି ମଣିଷ ସବୁ ଯୁଗରେ କୌତୂହଳୀ ହୋଇଛନ୍ତି । ସେହିପରି ସାମାଜିକ ସ୍ଥିତି ଓ ସମସ୍ୟାକୁ ବୁଝି ଉନ୍ନତ ଜୀବନଶୈଳୀ ପାଇଁ ପନ୍ଥା ନିର୍ଣ୍ଣୟ କରିବାକୁ ସେମାନେ ପ୍ରୟାସ କରିଛନ୍ତି । ସେହି ପ୍ରୟାସ କୌତୂହଳତା ଓ ବିଚାରଶୀଳତାରୁ ଉଦ୍ଭବ ହୋଇଛି । ଯେଉଁମାନେ ଜୀବନକୁ ଅଧିକ ସରସ ସୁନ୍ଦର କରିବା ପାଇଁ ଜ୍ଞାନ, ବିଜ୍ଞାନ, ନୀତିବୋଧ, ସାମାଜିକ ସଂଗଠନ ଇତ୍ୟାଦି କ୍ଷେତ୍ରରେ ନୂଆ ନୂଆ ବିଚାର ସୃଷ୍ଟି କରିଛନ୍ତି ଓ ସମାଜର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ସହାୟକ ହୋଇଛନ୍ତି ସେହିମାନେ ହିଁ ସଭ୍ୟତାର ପଥପ୍ରଦର୍ଶକ । ସେମାନେ ଯେଉଁ ଦେଶ, ଭାଷା ବା ଧର୍ମର ବ୍ୟକ୍ତି ହୁଅନ୍ତୁ ନା କାହିଁକି ସେମାନେ ହିଁ ବିଶ୍ୱମାନବ । ସେମାନଙ୍କର ଅବଦାନର ପରିଣାମରୁ ସଭ୍ୟତାର କ୍ରମୋନ୍ନତି ଘଟିଛି ଓ ଜୀବନ ଅଧିକ ସୁଖମୟ ହୋଇଛି ।

ଇତିହାସରେ ହେତୁବାଦୀମାନେ ହିଁ ଏହି ବିଶ୍ୱମାନବିକତାର ପ୍ରତିନିଧି । ସେମାନେ ହିଁ ବିଶ୍ୱଦୃଷ୍ଟିର ପ୍ରବକ୍ତା ଓ ଏକ ସୁଖ ଶାନ୍ତିମୟ ବିଶ୍ୱର ସ୍ୱପ୍ନ ଦ୍ରଷ୍ଟା । କିନ୍ତୁ ଇତିହାସର ଏହା ଏକ ବିଡ଼ମ୍ବନା ଯେ ଏହିପରି ବହୁ ମନୀଷୀଙ୍କୁ ଖଣ୍ଡାଧାରରେ ଚାଲିବାକୁ ହୋଇଛି, କାଠଗଡ଼ାରେ ଛିଡ଼ା ହେବାକୁ ପଡିଛି ଓ ନାନା ଯନ୍ତ୍ରଣାରେ ଜର୍ଜରିତ ହେବାକୁ ପଡିଛି । ଏହି ପୃଷ୍ଠଭୂମିରେ ବିଶିଷ୍ଟ ଆମେରିକୀୟ ଲେଖକ ଜେମେସ୍ ଏ. ହଟଙ୍କର ଗୋଟିଏ ପୁସ୍ତକକୁ ଉଲ୍ଲେଖ କରୁଛି । ପୁସ୍ତକଟି ହେଉଛି "ଦୁଇ ହଜାର ବର୍ଷର ଅବିଶ୍ୱାସ" (Two Thousand Years of Disbelief) । ସେ ସେହି ପୁସ୍ତକରେ ସଭ୍ୟତାକୁ ମୌଳିକ ଅବଦାନ ଦେଇଥିବା ବହୁ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଅବଦାନ ବିଷୟରେ ସୂଚନା ଦେଇଛନ୍ତି । ତେବେ ସେମାନେ ହିଁ ନିଜ ସମସାମୟିକ ସମାଜର ଅନେକ ଆଧାରହୀନ ବିଶ୍ୱାସ, ଧର୍ମିକ ମାନସିକତା ଓ ରକ୍ଷଣଶୀଳତା ବିରୁଦ୍ଧରେ ସ୍ୱର ଉଠାଇଛନ୍ତି ଓ ସେଥିପାଇଁ କେତେକଙ୍କୁ ନିଜ ଜୀବଦ୍ଦଶାରେ ବହୁ ଯନ୍ତ୍ରଣା ସହିବାକୁ ହୋଇଛି । ସେମାନେ ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ନିଜର ବିଚାର ଓ ଆତ୍ମପ୍ରତ୍ୟୟ ନେଇ ଦୃଢ଼ ରହିଛନ୍ତି । ସେହି ମାନଙ୍କର କ୍ରାନ୍ତିକାରୀ ବିଚାର ଓ ନୂତନ ଆବିଷ୍କାର ନେଇ ଜ୍ଞାନର ଅଭିବୃଦ୍ଧି ହୋଇଛି, ନୂତନ ପ୍ରଯୁକ୍ତିର ସୂତ୍ରପାତ ହୋଇଛି । ସାମାଜିକ ଜୀବନ ପ୍ରବାହରେ ମାନବିକ ମୂଲ୍ୟବୋଧର ବିକାଶ ହୋଇଛି ଓ ରାଷ୍ଟ୍ରୀୟ ଜୀବନରେ ଗଣତାନ୍ତ୍ରିକ ଆଦର୍ଶର ଅଭ୍ୟୁଦୟ ହୋଇଛି । ଲେଖକ ଏହି ପୁସ୍ତକରେ ଯେଉଁମାନଙ୍କ ଅବଦାନର ଟିପ୍‌ପଣୀ ଦେଇଛନ୍ତି ସେମାନଙ୍କୁ ଆମେ କେତୋଟି ଶ୍ରେଣୀରେ ବିଭକ୍ତ

କରିପାରିବା । ସେମାନେ ହେଲେ ଦାର୍ଶନିକ, ବୈଜ୍ଞାନିକ, ସାହିତ୍ୟିକ, ରାଷ୍ଟ୍ରନୀତିଜ୍ଞ ଓ କ୍ରାନ୍ତିକାରୀ ବିଚାରକ । ତେବେ ଏମାନେ ନିଜର ଜୀବନଦର୍ଶନ କ୍ଷେତ୍ରରେ ହେଲେ ହେତୁବାଦୀ ଓ ପ୍ରଜ୍ଞାବାଦୀ ବୁଦ୍ଧିଜୀବୀ । ଦାର୍ଶନିକମାନଙ୍କ ଭିତରେ କେତେକ ପ୍ରମୁଖ ବ୍ୟକ୍ତିତ୍ୱ ହେଲେ ସକ୍ରେଟିସ୍, ସ୍ପିନୋଜା, ଡାଭିଡ ହ୍ୟୁମ୍, ଜନ୍ ଡିଓ୍ୱେ, ବର୍ଟ୍ରାଣ୍ଡ ରସେଲ, ଏଜେ ଏୟାର ଓ ଆହୁରି ଅନେକ । ସାହିତ୍ୟିକ ମାନଙ୍କ ମଧରେ ରହିଛନ୍ତି ଓମାର  ଖାୟାମ୍, ସେକସ୍‌ପିୟର, ପିବି ସେଲି, ଟଲଷ୍ଟୟ, ନିତସେ, ବର୍ଣ୍ଣାଡ଼ ସ ଇତ୍ୟାଦି । ବୈଜ୍ଞାନିକମାନଙ୍କ ମଧରେ ସେ ବ୍ରୁନୋ, ଏଡ଼ିସନ, ଗାଲିଲିଓ, ଡାରଓ୍ୱିନ, ଆଇନଷ୍ଟାଇନଙ୍କ ପରି ବୈଜ୍ଞାନିକଙ୍କୁ ଉଲ୍ଲେଖ କରିଛନ୍ତି । ସେହିପରି କ୍ରାନ୍ତିକାରୀ ଚିନ୍ତାନାୟକଙ୍କ ମଧରେ ସେ ସିମଗଣ୍ଡ ଫ୍ରଏଡ଼, କାର୍ଲମାର୍କସ, ସାର୍ତ୍ରେ ଇତ୍ୟାଦିଙ୍କ ବିଷୟରେ ସୂଚନା ଦେଇଛନ୍ତି । ରାଷ୍ଟ୍ରନୀତିଜ୍ଞଙ୍କ ମଧରେ ସେ ଉଲ୍ଲେଖ କରିଛନ୍ତି ଭୋଲଟାୟାର, ନେପୋଲିୟନ, ଆବ୍ରାହମ୍ ଲିଙ୍କନ, ଜନ୍ ଷ୍ଟୁଆଟ ମିଲ, ଇଙ୍ଗରସଲ, ବ୍ରାଡଲାଫ ଇତ୍ୟାଦିଙ୍କୁ । ଏହି ସମସ୍ତେ ହେଲେ ପ୍ରଜ୍ଞାଦୀପ୍ତ ହେତୁବାଦୀ ଯେଉଁମାନଙ୍କର ମଣିଷ ସଭ୍ୟତାକୁ ଅମୂଲ୍ୟ ଅବଦାନ ରହିଛି ।

ଏହି ପ୍ରତ୍ୟେକ ପ୍ରଜ୍ଞାଦୀପ୍ତ ବୁଦ୍ଧିଜୀବୀଙ୍କର ଅବଦାନ ଓ ଜୀବନୀ ନେଇ ରାଶି ରାଶି ପୁସ୍ତକ ରହିଛି ଓ ପ୍ରତ୍ୟେକ ନିଜର ବୌଦ୍ଧିକ ବା ନୈତିକ ଅବଦାନ ଦ୍ୱାରା ସାମାଜିକ କ୍ରାନ୍ତି କ୍ଷେତ୍ରରେ ଇତିହାସରେ ଅମଳିନ ରହିଛନ୍ତି । ତେବେ ଏଠାରେ ସେମାନଙ୍କର ଜୀବନ ପ୍ରତି ରହିଥିବା ହେତୁବାଦୀ ଦୃଷ୍ଟିଭଙ୍ଗୀ ବିଷୟରେ ଆମେ ସଂକ୍ଷିପ୍ତ ସୂଚନା ମାତ୍ର ଦେବାକୁ ପ୍ରୟାସ କରିବା । ଅବଶ୍ୟ ଏହି ବିଚାରଦୀପ୍ତ ହେତୁବାଦୀ ଗଣ ବିଭିନ୍ନ ଯୁଗର ଓ ପ୍ରାୟତଃ ପାଶ୍ଚାତ୍ୟ ଭୂଖଣ୍ଡରେ ଥିବା ବିଭିନ୍ନ ରାଷ୍ଟ୍ରର । ସୁତରାଂ ସେମାନଙ୍କ ସମସାମୟିକ ସାମାଜିକ ସ୍ଥିତି ଓ ବୌଦ୍ଧିକ ପରିବେଶ ଯାହା ଥିଲା ସେ କ୍ଷେତ୍ରରେ ସେମାନେ ନିଜର ବୈଚାରିକ ଅବଦାନ ଦ୍ୱାରା କିନ୍ତୁ ଗୁଣାତ୍ମକ ପରିବର୍ତ୍ତନର ସୂତ୍ରପାତ କରିଛନ୍ତି । ବୈଚାରିକ ସ୍ତରରେ ନିଜ ଯୁଗରେ କିଛି କ୍ରାନ୍ତିର ପଥ ପ୍ରଦର୍ଶକ ହୋଇଛନ୍ତି ଓ ସମାଜକୁ ଉନ୍ନତ କରିବାକୁ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । ଫଳତଃ ନିଜ ଯୁଗର କେତେକ ସମସ୍ୟାର ସମାଧାନ କ୍ଷେତ୍ରରେ ପଥ ଦେଖାଇବା ସହିତ ମାନବୀୟ ସ୍ଥିତିରେ ଉନ୍ନତି ସାଧନ ପାଇଁ ମୌଳିକ ବିଚାର ବ୍ୟକ୍ତ କରିଛନ୍ତି ।

ମୋଟାମୋଟି ଭାବେ ଏମାନେ ଯେଉଁ ଜୀବନଦର୍ଶନର ଅବତାରଣା କରିଛନ୍ତି ତାର ମୌଳିକ ଆଭିମୁଖ୍ୟ ହେଉଛି "ମଣିଷ ନିଜ ପ୍ରୟାସରେ ତାର ସଂସାରକୁ ଉନ୍ନତ କରିପାରିବ" । ସଭ୍ୟତାର ଆରମ୍ଭ ପର୍ବରୁ ଆଜି ପର୍ଯ୍ୟନ୍ତ ସମାଜରେ ଯାହା କିଛି ଉନ୍ନତି କ୍ରମବିକାଶ ପ୍ରକ୍ରିୟାରେ ସମ୍ଭବ ହୋଇଛି ତାହା ପଶ୍ଚାତରେ ରହିଛି ମୁଷ୍ଟିମେୟ ବ୍ୟକ୍ତିଙ୍କର ଜୀବନବ୍ୟାପୀ ପ୍ରୟାସ ଓ ସାଧନା । ବିଭିନ୍ନ ମହାମାରୀ ରୋଗରୁ ମଣିଷକୁ ରକ୍ଷା କରିବା କ୍ଷେତ୍ରରେ ହେଉ, ଗମନାଗମନର ବିକାଶ ପାଇଁ ହେଉ, ରାଜତନ୍ତ୍ର ବା ସାମନ୍ତବାଦ ବଦଳରେ ଗଣତନ୍ତ୍ରର ବିକାଶ କ୍ଷେତ୍ରରେ ହେଉ ସବୁ ସ୍ତରରେ ମଣିଷର ପ୍ରୟାସରୁ ହିଁ ଏସବୁ ସମ୍ଭବ ହୋଇଛି । ଏସବୁର ବିକାଶ ସଭ୍ୟତାର କ୍ରମବିକାଶ ଧାରାରେ ବହୁ ପରେ ଆସିଛି । ଏଗୁଡ଼ିକ ସଭ୍ୟତାର ଆରମ୍ଭରୁ ନାହିଁ ବା ଆକାଶରୁ ଖସି ନାହିଁ । ଏହା ସମ୍ଭବ ହୋଇଛି ମଣିଷର ବୌଦ୍ଧିକ ବିଚାରଶୀଳତାରୁ । ସେହିପରି ନୀତି, ଆଦର୍ଶ, ମୂଲ୍ୟବୋଧ, ମାନବିକତା, ସମ୍ବେଦନଶୀଳ ଦୃଷ୍ଟି ଇତ୍ୟାଦି ମଣିଷର ଗଭୀର ଅନୁଶୀଳନ ଓ  ଅନୁଭୂତିରୁ ସମ୍ଭବ ହୋଇଛି । ସଭ୍ୟ ଜୀବନଧାରା କ୍ଷେତ୍ରରେ ଓ ନୈସର୍ଗିକ ସୁଖ-ଶାନ୍ତି ପାଇଁ ନୈତିକ ମୂଲ୍ୟବୋଧ ଯେ ଆବଶ୍ୟକ ଏହା ହିଁ ମଣିଷର ଅନୁଭୂତିରୁ ସ୍ପଷ୍ଟ ହୋଇଛି । ନୈତିକ ଆଚରଣ ଯେ ସଂସ୍କୃତିସଂପନ୍ନ ଜୀବନର ମାନଦଣ୍ଡ ଏହା ହିଁ କ୍ରମେ

ସମାଜରେ ବିକଶିତ ହୋଇଛି । ପ୍ରତ୍ୟେକ ସମାଜରେ ହୁଏ ତ କେତେକ ଅପରାଧ ଓ ଅନୈତିକତା ରହିପାରେ, ତେବେ ଏହା ସାମାଜିକ ସ୍ଥିରତା ଓ ସଭ୍ୟ ଆଚରଣର ଯେ ପରିପନ୍ଥୀ ଏହା ହିଁ ଗଭୀର ଅନୁଶୀଳନ ମଧ୍ୟ ଦେଇ ବୌଦ୍ଧିକ ବିଚାର ସ୍ତରରେ ଗ୍ରହଣ କରାଯାଉଛି । କୌଣସି ସଭ୍ୟ ଜନଗୋଷ୍ଠୀ ଅନୈତିକତାର ପ୍ରସାରକୁ ସ୍ୱୀକୃତି ଦେବନାହିଁ ବରଂ ଏ ସବୁର ନିୟନ୍ତ୍ରଣ ପାଇଁ ଆଇନଗତ ସ୍ତରରେ ପ୍ରୟାସ କରିବ । ତେବେ ଦାର୍ଶନିକ ଓ ହେତୁବାଦୀ ବୁଦ୍ଧିଜୀବୀଗଣ ନୈତିକ ମୂଲ୍ୟଚୟକୁ କୌଣସି ଈଶ୍ୱରୀୟ ନିର୍ଦ୍ଦେଶ ବୋଲି ଗ୍ରହଣ ନକରି ବରଂ ସେ ସବୁକୁ ନାଗରିକ ଜୀବନ ପାଇଁ ଅବଶ୍ୟମ୍ଭାବୀ ବୋଲି ଗ୍ରହଣ କରିବେ । ନୈତିକତା ସେମାନଙ୍କ ବିଚାରବୋଧରେ ଏକ ସାମାଜିକ କର୍ତ୍ତବ୍ୟ (Social Obligation); ଏହା ସହିତ ଧର୍ମ, ଈଶ୍ୱର, ପାରଲୌକିକ ସ୍ଥିତି ଇତ୍ୟାଦିର କୌଣସି ସମ୍ବନ୍ଧ ହିଁ ନାହିଁ ।

ହେତୁବାଦୀମାନଙ୍କ ଜୀବନ ଦର୍ଶନ କୌଣସି ପାରଲୌକିକ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ମୁଖ୍ୟତଃ ଐହିକ ଜୀବନର ସୁଖଶାନ୍ତି ପାଇଁ ଉଦ୍ଦିଷ୍ଟ । ନୈସର୍ଗିକ ସୁଖ, ଶାନ୍ତି ଓ ପ୍ରୀତିପୂର୍ଣ୍ଣ ସହାବସ୍ଥାନ ସେମାନଙ୍କ ପାଇଁ ସବୁଠାରୁ ବଡ଼ ଧ୍ୟେୟ । ଆମର ସାମାଜିକ ବ୍ୟବସ୍ଥାକୁ କିପରି ଅଧିକ ମାନବିକ, ନୀତିପୂର୍ଣ୍ଣ ଓ ଅଧିକ ଗଣତାନ୍ତ୍ରିକ କରିହେବ ଏହା ହିଁ ସେମାନଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ । ସେମାନେ ମୁକ୍ତି ବା ମୋକ୍ଷର ଆଦର୍ଶର ପ୍ରବକ୍ତା ନୁହଁନ୍ତି ବରଂ ମର୍ଯ୍ୟାଦାପୂର୍ଣ୍ଣ ଜୀବନର ପ୍ରବକ୍ତା, ସେମାନେ ମଣିଷର ସ୍ୱର୍ଗବାସ ଉପରେ ପ୍ରାଧାନ୍ୟ ନଦେଇ ବରଂ ନୈସର୍ଗିକ ସୁଖଶାନ୍ତି ଉପରେ ହିଁ ଗୁରୁତ୍ୱ ଦେଇଥାନ୍ତି । ବସ୍ତୁତଃ ସେମାନେ ଏକ ମାନବକୈନ୍ଦ୍ରିକ ଜୀବନଦର୍ଶନକୁ ଗ୍ରହଣ କରିବା ହେତୁ ସର୍ବଜନହିତୈଷୀ ଆଦର୍ଶକୁ ପ୍ରାଧାନ୍ୟ ଦିଅନ୍ତି । ସମଗ୍ର ବିଶ୍ୱକୁ ଭ୍ରାତୃତ୍ୱର ବନ୍ଧନରେ ଯୋଡିବାକୁ ସେମାନେ ସ୍ୱପ୍ନ ଦେଖୁଛନ୍ତି । ଯେଉଁ ଆଦର୍ଶ ବା ବିଚାରବୋଧ ମଣିଷ-ମଣିଷ ଭିତରେ ବିଭେଦ ସୃଷ୍ଟି କରେ, ପ୍ରାଚୀର ଛିଡ଼ା କରାଏ, ବିଦ୍ୱେଷ ମନୋଭାବ ଆଣେ ତାହା ହେତୁବାଦୀ ଜୀବନ ଦର୍ଶନର ପରିପନ୍ଥୀ ହୋଇଥାଏ । ହେତୁବାଦୀ ମାନେ ମାନବିକ ମର୍ଯ୍ୟାଦା ଓ ସାମାଜିକ ନ୍ୟାୟକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା ଓ ଆତ୍ମସମ୍ମାନ ବୋଧକୁ ହେତୁବାଦୀମାନେ ସବୁ ଯୁଗରେ ଗୁରୁତ୍ୱ ଦେଇଆସିଛନ୍ତି । ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତା ଓ ଆତ୍ମମର୍ଯ୍ୟାଦାର ଗୁଣଗାନ ହେତୁବାଦୀମାନେ ସର୍ବଦା କରି ଆସିଛନ୍ତି । ଯାହା ମାନବିକ ମର୍ଯ୍ୟାଦାକୁ ନ୍ୟୁନ କରେ, ତାହା ହେତୁବାଦୀ ବିଚାରଧାରାର ପ୍ରତିକୂଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ ହେତୁବାଦୀମାନେ ବ୍ୟକ୍ତିମର୍ଯ୍ୟାଦାକୁ ପ୍ରାଧାନ୍ୟ ଦେଇ ଏହି ଜୀବନକୁ ଅଧିକ ପ୍ରୀତିପଦ ଓ ଶାନ୍ତିପୂର୍ଣ୍ଣ କରିବାକୁ ପ୍ରୟାସ କରିଛନ୍ତି ।

ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ହେତୁବାଦୀ ମାନସିକତା ମୁକ୍ତ ମନ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ଗୁରୁତ୍ୱ ଦିଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସର୍ବଦା ଏକ ମୁକ୍ତ ମନ ପୋଷଣ କରିଥାଏ । ଯାହା ଅନୁଭବ ଆଧାରରେ ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଦ୍ୱାରା ସମର୍ଥିତ ସେହି ଜ୍ଞାନ ଗ୍ରହଣ ଯୋଗ୍ୟ । ଶାସ୍ତ୍ର, ପୁରାଣ, ଧର୍ମଗ୍ରନ୍ଥର ବାଣୀକୁ ବିନା ପରୀକ୍ଷଣରେ ଏହା ଗ୍ରହଣ କରେ ନାହିଁ ବା ସେହି ଜ୍ଞାନକୁ ଶାଶ୍ୱତ ବା ଚିରନ୍ତନ ବୋଲି ନିଏ ନାହିଁ । ଜ୍ଞାନର ଯେଉଁ ବସ୍ତୁନିଷ୍ଠ ପ୍ରଣାଳୀ ରହିଛି ସେହି କଷଟିରେ ପରୀକ୍ଷିତ ନହେଲେ ତାହା ଜ୍ଞାନ ପଦବାଚ୍ୟ ନୁହେଁ । ବୈଜ୍ଞାନିକ ଜ୍ଞାନ ପରୀକ୍ଷିତ, ପର୍ଯ୍ୟବେକ୍ଷଣ ସମର୍ଥିତ, ବସ୍ତୁନିଷ୍ଠ ଓ ପ୍ରାୟତଃ ସାର୍ବଜନୀନ । ତେବେ ବିଜ୍ଞାନ ଜଗତ ସଂପର୍କରେ ପ୍ରଗତିଶୀଳ ଜ୍ଞାନ ଦେଇଥାଏ ଓ କୌଣସି ଜ୍ଞାନକୁ ଚିରନ୍ତନ ବା ଶାଶ୍ୱତ ବୋଲି ସେଥିରେ ଗ୍ରହଣ କରାଯାଏ ନାହିଁ । ଜଗତ ସଂପର୍କରେ ଆମର ପର୍ଯ୍ୟବେକ୍ଷଣ ଯେତିକି ପ୍ରସାରିତ ହୋଇ ଚାଲିଥାଏ ଆମର ଜ୍ଞାନର ପରିସର ସେତିକି ବୃଦ୍ଧି ହୋଇଥାଏ । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ତାତ୍ପର୍ଯ୍ୟକୁ ଗ୍ରହଣ କରିବା ଦ୍ୱାରା ଆଜି ଜ୍ଞାନ, ବିଜ୍ଞାନର ପ୍ରଭୂତ ବିକାଶ ହୋଇଚାଲିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ଯାହା ତଥ୍ୟ-

ଆଧାରିତ ଓ ବସ୍ତୁନିଷ୍ଠ ତାହା ଗ୍ରହଣଯୋଗ୍ୟ । ସୁତରାଂ ବୈଜ୍ଞାନିକ ଜ୍ଞାନ ଏହାର ନିଜସ୍ୱ ପ୍ରଣାଳୀରେ ସଂଶୋଧନାତ୍ମକ (Self corrective) । ବସ୍ତୁନିଷ୍ଠ ଜ୍ଞାନ ପୃଷ୍ଠଭୂମିରେ ହେତୁବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏହି ମାନଦଣ୍ଡରେ ସମାର୍ଥବୋଧକ । ସେମାନଙ୍କର ତାତ୍ପର୍ଯ୍ୟ ସମାନ ।

ମୋଟ ଉପରେ କହିଲେ ସତ୍ୟ ପ୍ରତି ଅନୁରକ୍ତି ଓ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ହିଁ ହେତୁବାଦୀ ଜୀବନଦର୍ଶନର ସାରମର୍ମ । ହେତୁବାଦୀମାନେ ସବୁ ସଭ୍ୟତାରେ ଓ ସବୁ ଯୁଗରେ ମଣିଷକୁ ବିଚାରଶୀଳ, ସତ୍ୟନିଷ୍ଠ ଓ ସମାଜ ପ୍ରତି ଉତ୍ତରଦାୟୀ କରିବାକୁ ପ୍ରୟାସ କରିଛନ୍ତି । ଏହି ପ୍ରକାରର ଜୀବନ ଦର୍ଶନ ଚିନ୍ତା ରାଜ୍ୟରେ ଅନେକ ଆଲୋଡନ ଆଣିଛି ସତ, ହେଲେ ପରିତାପର ବିଷୟ ଏହା ସାର୍ବଜନୀନ ହୋଇପାରିନାହିଁ । ଏ କ୍ଷେତ୍ରରେ ନାନା ପ୍ରତିବନ୍ଧକ ରହିଛି ଓ ସେହି ପ୍ରତିବନ୍ଧକ ଅନେକାଂଶରେ ଧର୍ମଭିତ୍ତିକ ଜୀବନଦୃଷ୍ଟିରୁ ହିଁ ଆସିଛି । ଯୁଗ ଯୁଗ ଧରି ଧାର୍ମିକ ଦୃଷ୍ଟିଭଙ୍ଗୀ ଯେଉଁ ରୁଦ୍ଧ ମାନସିକତା ଆଣିଛି ଓ ମଣିଷକୁ କେତେ ପାରଲୌକିକ ତତ୍ତ୍ୱ ଶୁଣାଇଛି ତାହାର ମନସ୍ତାତ୍ତ୍ୱିକ ପ୍ରଭାବରୁ ମଣିଷ ମୁକ୍ତ ହୋଇପାରୁନାହିଁ । ପୁନଶ୍ଚ ଅନେକ ସ୍ଥାନରେ ରାଷ୍ଟ୍ରଶକ୍ତି ମଧ୍ୟ ଧାର୍ମିକ ଅନୁଷ୍ଠାନ ମାନଙ୍କୁ ସମର୍ଥନ ଦେଇଆସିଛି । ପ୍ରାଚୀନ ପରମ୍ପରା, ଧର୍ମଶାସ୍ତ୍ର, ଈଶ୍ୱରୀୟ ନିର୍ଦ୍ଦେଶ, ସାଂସ୍କୃତିକ ଐତିହ୍ୟ, ଧାର୍ମିକ ଅସ୍ମିତା ଇତ୍ୟାଦିର ଭାବନା ଏବେ ବି ସମାଜରେ ବଳିଷ୍ଠ ପ୍ରଭାବ ବିସ୍ତାର କରି ରହିଛି । ତାହା ବିରୁଦ୍ଧରେ ମୁକ୍ତ ଚିନ୍ତକ ଓ ସତ୍ୟ ଦ୍ରଷ୍ଟା ହେତୁବାଦୀଗଣ ଯେଉଁ ସ୍ୱର ଉଠାଇଛନ୍ତି ତାହାକୁ ରକ୍ଷଣଶୀଳ ଧାର୍ମିକ ଲୋକମାନେ ଅକ୍ଳେଶରେ ଦବାଇ ଦେଇ ପାରୁଛନ୍ତି । ଆହୁରି ବିଡ଼ମ୍ବନାର ବିଷୟ ବୈଜ୍ଞାନିକ ସାଧନ ଗୁଡ଼ିକୁ କୁସଂସ୍କାର ଓ ଆଧାରହୀନ ବିଶ୍ୱାସର ପ୍ରସାରଣ ପାଇଁ ବ୍ୟବହାର କରାଯାଉଛି । ବସ୍ତୁତଃ ଚିନ୍ତା ରାଜ୍ୟରେ ଯେତେ ଯେତେ ବିପ୍ଳବ ଆସିଲେ ମଧ୍ୟ ମାନବୀୟ ସଂକଟ ଅଧିକ ଘନୀଭୂତ ହୋଇଚାଲିଛି ।

ଉପସଂହାରରେ ଏହା କହିବା ଉଚିତ୍ ମନେ କରୁଛି ଯେ ହେତୁବାଦୀମାନେ ହେଉଛନ୍ତି ସଭ୍ୟତାର ପଥପ୍ରଦର୍ଶକ । ସେହିମାନଙ୍କର ମୌଳିକ ଅବଦାନ ଯୋଗୁଁ ସାହିତ୍ୟ, ଦର୍ଶନ, ବିଜ୍ଞାନ, ସମାଜଶାସ୍ତ୍ର, ନୈତିକ ମୂଲ୍ୟବୋଧ ଇତ୍ୟାଦି କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନର ସୂତ୍ରପାତ ହୋଇଛି । ସେମାନେ ସବୁ ସମୟରେ ସୁନ୍ଦର ଭବିଷ୍ୟତ ପାଇଁ ସ୍ୱପ୍ନ ଦ୍ରଷ୍ଟା ଓ ମାନବିକ ମହତ୍ତ୍ୱର ପ୍ରବକ୍ତା । ସମତା, ସାମାଜିକ ନ୍ୟାୟ, ଗଣତାନ୍ତ୍ରିକ ଜୀବନଶୈଳୀ, ମାନବହିତୈଷୀ ଦୃଷ୍ଟିଭଙ୍ଗୀ, ବିଶ୍ୱଭ୍ରାତୃତ୍ୱ, ଏକ ଅନ୍ୟାୟ ରହିତ ଓ ଶୋଷଣମୁକ୍ତ ସାମ୍ୟ ସମାଜ ଓ ଯୁଦ୍ଧ ରହିତ ବିଶ୍ୱ ସେମାନଙ୍କ ଜୀବନ ଦର୍ଶନର ଆଦର୍ଶ ହୋଇ ଆସିଛି । ସମାଜରେ ମଣିଷର ଯାହା କିଛି ଦୁଃଖ, ନୈରାଶ୍ୟ ଓ ଯନ୍ତ୍ରଣା ରହିଛି ତାର ପ୍ରତିକାର ମଣିଷର ପ୍ରୟାସ ଦ୍ୱାରା ସମ୍ଭବ । ଏକ ଉନ୍ନତ ସାମାଜିକ ପରିବେଶ ଓ ମଣିଷ ପ୍ରତି ଉତ୍ତରଦାୟୀ ଜୀବନଦୃଷ୍ଟିର ବିକାଶ ଦ୍ୱାରା ହିଁ ଜୀବନ ଅଧିକ ପ୍ରୀତିପୂର୍ଣ୍ଣ ଓ ସୁଖମୟ ହୋଇପାରିବ । ଆମର ନୈସର୍ଗିକ ସୁଖ, ଶାନ୍ତି ଓ ଆନନ୍ଦ ଆମକୁ କେଉଁ ଈଶ୍ୱର ଦେବେ ନାହିଁ, ଆମକୁ ଆମରି ଉଦ୍ୟମରେ ତାହା ସୃଷ୍ଟି କରିବାକୁ ହେବ । ତଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇବ । ଯେଉଁ ସବୁ ସଂକଟ ଓ ସମସ୍ୟା ଆମ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଯୋଡ଼ି ହୋଇରହିଛି ସେଥିରେ ଉଲ୍ଲେଖନୀୟ ପରିବର୍ତ୍ତନ ଅଣାଯାଇପାରିବ । ଏସବୁ ଏକ ବିଚାରଶୀଳ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ବ୍ୟାପକ ପ୍ରସାର ଦ୍ୱାରା ହିଁ ସମ୍ଭବ ହେବ । ତାହାହିଁ ହେଉଛି ହେତୁବାଦର ମର୍ମ ଓ ହେତୁବାଦୀଙ୍କର ସ୍ୱପ୍ନ ।

❑❑❑

# ବୈଜ୍ଞାନିକ ବ୍ୟାଖ୍ୟା: ଦିଗ ଓ ଦିଗନ୍ତ

ପ୍ରକୃତିରେ ରହିଥିବା ବସ୍ତୁ ଓ ଘଟୁଥିବା ଘଟଣାମାନଙ୍କର ବ୍ୟାଖ୍ୟା ବିଜ୍ଞାନ କରିଥାଏ । ବୈଜ୍ଞାନିକ ଜ୍ଞାନ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ମାଧ୍ୟମରେ ହୁଏ । ସୁତରାଂ କୁହାଯାଏ ଯେ ବୈଜ୍ଞାନିକ ଜ୍ଞାନ ତଥ୍ୟ ଆଧାରିତ ଓ ପ୍ରଣାଳୀବଦ୍ଧ । ତେବେ ବିଜ୍ଞାନ କୌଣସି ଏକକ ଘଟଣା ପରିବର୍ତ୍ତେ ଗୋଟିଏ ଶ୍ରେଣୀର ଘଟଣାମାନଙ୍କୁ ବ୍ୟାଖ୍ୟା କରିଥାଏ । ଆମ ଗେଟ୍‌ର ଗ୍ରିଲ୍‌ଟି କାହିଁକି କଳଙ୍କି ଲାଗି ନଷ୍ଟ ହେଲା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ନୁହେଁ, କିନ୍ତୁ ଲୁହାରେ କାହିଁକି କଳଙ୍କି ଲାଗେ ବିଜ୍ଞାନ ପାଇଁ ଗୁରୁତ୍ୱପୂର୍ଣ୍ଣ । ଏହାକୁ ବ୍ୟାଖ୍ୟା କରିବା ବିଜ୍ଞାନର ଲକ୍ଷ୍ୟ । ଏହି ବ୍ୟାଖ୍ୟାର ମୂଳ ଆଧାର ହେଉଛି ପ୍ରକୃତିରେ ନିହିତ ଥିବା ଶୃଙ୍ଖଳା, ନିୟମ ବା ଏକରୂପତା (uniformity) । ଆମେ ଆମର ଅନୁଭୂତିରେ ଦେଖୁ ଯେ ଗୋଟିଏ ଶ୍ରେଣୀର ସମସ୍ତ ପ୍ରାଣୀ ବା ବସ୍ତୁ ସେମାନଙ୍କର ବ୍ୟବହାର ବା ଲକ୍ଷଣ କ୍ଷେତ୍ରରେ କେତେକ ସାମଞ୍ଜସ୍ୟ ବା ଏକରୂପତା ପ୍ରକାଶ କରନ୍ତି । ପକ୍ଷୀମାନେ ଅଣ୍ଡା ଦିଅନ୍ତି, ଚତୁଃଷ୍ପଦ ପ୍ରାଣୀମାନେ ଅଣ୍ଡା ଦିଅନ୍ତି ନାହିଁ, ସମସ୍ତ କୁକୁର ଚତୁଃଷ୍ପଦ କିନ୍ତୁ ମଣିଷମାନେ ଦୁଇପାଦ ବିଶିଷ୍ଟ, ଲୁହାରେ କଳଙ୍କି ଲାଗେ କିନ୍ତୁ ସୁନାରେ କଳଙ୍କି ଲାଗେ ନାହିଁ, ବିଜୁଳି ମାରିବା ପରେ ଘଡ଼ଘଡ଼ି ମାରେ, ପାଣି ନିର୍ଦ୍ଦିଷ୍ଟ ଉତ୍ତାପରେ ଜଳୀୟ ବାଷ୍ପରେ ପରିଣତ ହୁଏ, ଶୀତ ଋତୁରେ କାକର ପଡ଼େ ଇତ୍ୟାଦି ଇତ୍ୟାଦି । ପ୍ରକୃତିଠାରେ ଆମେ କେତେ ଭିନ୍ନତା ବା ବହୁରୂପତା ମଧ ଦେଖୁ । ସବୁ ଆମ୍ବ ମିଠା ଲାଗେ ନାହିଁ, ସବୁ ମାଛି ମହୁ ସଂଗ୍ରହ କରନ୍ତି ନାହିଁ, ସବୁ ଗାଈ ଏକା ରଙ୍ଗର ନୁହଁନ୍ତି, ପ୍ରତ୍ୟେକ ବର୍ଷ ସମ ପରିମାଣର ବୃଷ୍ଟି ହୁଏ ନାହିଁ, ସବୁ ମଣିଷ ରକ୍ତଚାପରେ ଆକ୍ରାନ୍ତ ହୁଅନ୍ତି ନାହିଁ ଇତ୍ୟାଦି । ଯଦି ପ୍ରକୃତିରେ କୌଣସି ଶୃଙ୍ଖଳା ବା ନିୟମ ରହିନଥାନ୍ତା, ତେବେ ସମ୍ଭବତଃ ଆମର ଅତୀତର ଅନୁଭୂତି ବା ପର୍ଯ୍ୟବେକ୍ଷଣରୁ ଆମେ ଭବିଷ୍ୟତ ବିଷୟରେ କୌଣସି ଜ୍ଞାନ ଲାଭ କରିପାରନ୍ତେ ନାହିଁ । ବାସ୍ତବରେ ପ୍ରକୃତିରେ କେତେକ ଶୃଙ୍ଖଳା ରହିଛି ଓ ସେହି ଶୃଙ୍ଖଳା ଆଧାରରେ ଆମର ପ୍ରକୃତି ସଂପର୍କିତ ଜ୍ଞାନ ସମ୍ଭବ ହୋଇପାରୁଛି । ବର୍ତ୍ତମାନର ପର୍ଯ୍ୟବେକ୍ଷଣ ବା ପରୀକ୍ଷଣ ଆଧାରରେ ଭବିଷ୍ୟତର ଘଟଣାମାନଙ୍କ ବିଷୟରେ ଆମେ ଅବଗତ ହୋଇପାରୁଛେ । ଆମର ଅତୀତର ଜ୍ଞାନ ଓ ଅନୁଭୂତିକୁ ଆଧାର କରି ଆମେ ଭବିଷ୍ୟତ ନେଇ ସତର୍କ ବା ସଚେତନ ରହୁଛେ ବା ପ୍ରାକୃତିକ ପରିସ୍ଥିତିକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କରୁଛେ । ପ୍ରକୃତିରେ ଯେଉଁ ଶୃଙ୍ଖଳା ବା ନିୟମ ବିଦ୍ୟମାନ ରହିଛି, ସେହି ନିୟମକୁ ଜାଣିବା ହିଁ ବୈଜ୍ଞାନିକ ଜ୍ଞାନର ବିକାଶର ଏକ ପ୍ରଧାନ ବିଷୟ ।

ପ୍ରକୃତିରେ ବିଦ୍ୟମାନ ଥିବା ବ୍ୟତିକ୍ରମବିହୀନ ନିୟମର ଆବିଷ୍କାର ବୈଜ୍ଞାନିକ ଜ୍ଞାନର ମୂଳ ଲକ୍ଷ୍ୟ । ଏହି ପୃଷ୍ଠଭୂମିରେ ପ୍ରାକୃତିକ ନିୟମ କହିଲେ କ'ଣ ବୁଝାଯାଏ, ବୈଜ୍ଞାନିକ ପ୍ରଣାଳୀର ସ୍ୱରୂପ କ'ଣ ଓ ବୈଜ୍ଞାନିକ ବ୍ୟାଖ୍ୟାର ତାତ୍ପର୍ଯ୍ୟକୁ ବିଶ୍ଳେଷଣ କରିବା ଶଂସିତ ପ୍ରବନ୍ଧଟିର ଉଦ୍ଦେଶ୍ୟ ।

ପ୍ରକୃତିଠାରେ ଅନ୍ତର୍ନିହିତ ଥିବା ଶୃଙ୍ଖଳାକୁ ଯେତେବେଳେ ନିୟମ କୁହାଯାଉଛି, ଏଠାରେ 'ନିୟମ'ର ପ୍ରକୃତ ଅର୍ଥ କ'ଣ ପ୍ରଶ୍ନ ଉଠିପାରେ । ଏହି ପୃଷ୍ଠଭୂମିରେ ନିୟମର ଦୁଇଟି ଅର୍ଥ ସାଧାରଣତଃ ବିଚାର ପରିସରକୁ ଆସିଥାଏ, ଯଥା ବର୍ଣ୍ଣନାତ୍ମକ ନିୟମ (descriptive law) ଏବଂ ବ୍ୟବସ୍ଥାପକ ନିୟମ (prescriptive law) । ପ୍ରାକୃତିକ ନିୟମଗୁଡ଼ିକ ବର୍ଣ୍ଣନାତ୍ମକ ନିୟମ ପରିସରର ଅନ୍ତର୍ଭୁକ୍ତ, ଯାହା ବ୍ୟବସ୍ଥାପକ ନିୟମ ଠାରୁ ସଂପୂର୍ଣ୍ଣ ଭିନ୍ନ । ଆମେ ଯେତେବେଳେ କହୁ ନିୟମକୁ ମାନିବା ଉଚିତ୍, ସେତେବେଳେ ଆମେ ପ୍ରାକୃତିକ ନିୟମ କଥା ନକହି ବ୍ୟବସ୍ଥାପକ ନିୟମ ବିଷୟରେ କହିଥାଉ । ବ୍ୟବସ୍ଥାପକ ନିୟମ କ୍ଷେତ୍ରରେ କେହି ନିୟାମକ ଥାନ୍ତି, ତାହା ରାଷ୍ଟ୍ର, ସରକାର, ବିଧାନ ବ୍ୟବସ୍ଥା, କୌଣସି ପଦାଧିକାରୀ ଇତ୍ୟାଦି ଯେ କେହି ହୋଇପାରନ୍ତି । ବ୍ୟବସ୍ଥାପକ ନିୟମ କ୍ଷେତ୍ରରେ ନିୟାମକ ଥାନ୍ତି, ତାହାର ଲଂଘନ କରାଯାଇପାରେ, ତାହା ପରିବର୍ତ୍ତନଶୀଳ ଓ ତାହା ସ୍ଥାନକୁ ସ୍ଥାନ ପୃଥକ୍ ହୋଇପାରେ । ଟ୍ରାଫିକ୍ ନିୟମ, କର ସଂଗ୍ରହ ନିୟମ, କଲେଜରେ ପରୀକ୍ଷା ନିୟମ ଇତ୍ୟାଦି ନାନା ନିୟମ ସାମାଜିକ ଜୀବନରେ ରହିଥାଏ, ଯାହା ନାଗରିକମାନେ ମାନି ଜୀବନ ନିର୍ବାହ କରନ୍ତି । ତେବେ ବର୍ଣ୍ଣନାତ୍ମକ ନିୟମ ଗୁଡ଼ିକ ପ୍ରାକୃତିକ ଏକରୂପତା ମାତ୍ର । ଏ କ୍ଷେତ୍ରରେ କୌଣସି ନିୟାମକ ନଥାଏ । ଏହାର ଲଘନ ସମ୍ଭବ ନୁହେଁ । ଏହା ପରିବର୍ତ୍ତନଶୀଳ ନୁହେଁ ବା ସ୍ଥାନକୁ ସ୍ଥାନ ଅଲଗା ନୁହେଁ । ଏହି ନିୟମକୁ କେହି କରିନାହାଁନ୍ତି, ଏଗୁଡିକ ଆମେ ବୈଜ୍ଞାନିକ ଅନୁସନ୍ଧାନ ଦ୍ୱାରା ଆବିଷ୍କାର କରିଥାଉ । ଆମେ ଯେତେବେଳେ ବର୍ଣ୍ଣନାତ୍ମକ ନିୟମ କଥା କହୁଛେ, ସେତେବେଳେ ଆମେ ବୁଝିଥାଉ ଯେ ଏଗୁଡିକ ପ୍ରକୃତିରେ ନିହିତ ଥିବା କେତେକ ଏକରୂପତା । ଏହାକୁ ଆମେ ବ୍ୟକ୍ତ କଲାବେଳେ ସେଗୁଡ଼ିକ ବସ୍ତୁନିଷ୍ଠ ଘଟଣାକୁ ଦର୍ଶାଇଥାଏ, ଯାହା ସାର୍ବଜନୀନ ଭାବେ ସତ୍ୟ ଅଟେ । ଗୋଟିଏ ପ୍ରଜାତିର ପ୍ରାଣୀ କେବଳ ନିଜ ଜାତିକୁ ଜନ୍ମ ଦିଏ, ପ୍ରତ୍ୟେକ ପ୍ରାଣୀ ମରଣଶୀଳ, ଜଳ ଉଦ୍‌ଜାନ ଓ ଅମ୍ଳଜାନର ଏକ ରାସାୟନିକ ମିଶ୍ରଣ ଇତ୍ୟାଦି, ଗୋଟିଏ ଗୋଟିଏ ପ୍ରାକୃତିକ ନିୟମ । ପ୍ରତ୍ୟେକଟି ପ୍ରାକୃତିକ ନିୟମ କ୍ଷେତ୍ରରେ ବସ୍ତୁଗତ ଜ୍ଞାନ ଥାଏ ଯାହା ସତ୍ୟ, ସାର୍ବଜନୀନ ଓ ଅପରିବର୍ତ୍ତନୀୟ । ପୁନଶ୍ଚ ଏହାର ପରିସର ଅତି ବ୍ୟାପକ କାରଣ ଏହା ନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷଙ୍କ ପ୍ରତି ପ୍ରୟୋଗ ନହୋଇ ଏକ ଶ୍ରେଣୀର ସମସ୍ତଙ୍କ ପ୍ରତି ପ୍ରୟୋଗ ହୋଇଥାଏ । ପ୍ରତ୍ୟେକ ପ୍ରାଣୀ ମରଣଶୀଳ କହିଲା ବେଳେ ପ୍ରାଣ ଥିବା ପ୍ରତ୍ୟେକ ଜୀବ ବିଷୟରେ ଏହା ସୂଚନା ଦିଏ ଓ ଏହା ଅତୀତ, ଭବିଷ୍ୟତ ଓ ବର୍ତ୍ତମାନ ସବୁ ସମୟର ପ୍ରାଣୀଙ୍କ ପରିପ୍ରେକ୍ଷୀରେ ପ୍ରୟୋଗ ହୋଇଥାଏ ।

ଏହି ପୃଷ୍ଠଭୂମିରେ ପ୍ରାକୃତିକ ଶୃଙ୍ଖଳା ବା ନିୟମ ବିଷୟ ଅବତାରଣା କଲାବେଳେ ପ୍ରାକୃତିକ ନିୟମକୁ ଏକ ସିଦ୍ଧାନ୍ତ ଠାରୁ ଓ ଏକ ପ୍ରକଳ୍ପ ଠାରୁ ପୃଥକ୍ କରାଯାଇପାରେ । ଏକ ନିୟମକୁ ପ୍ରକୃତି ଭିତରୁ ଆବିଷ୍କାର କରାଯାଏ । ତେବେ ଏହାର ଆବିଷ୍କାର ସେତେ ସହଜ ମନେହୁଏ ନାହିଁ । କେବଳ ଜଣେ ଅତ୍ୟନ୍ତ ପ୍ରତିଭାବାନ ବ୍ୟକ୍ତି ପ୍ରାକୃତିକ ନିୟମକୁ ଆବିଷ୍କାର କରିଥାନ୍ତି । ପ୍ରକୃତି ମଧ୍ୟରୁ କେତେକ ଏକ ରୂପ ଘଟଣାର ଅନୁଭୂତି ଆଧାରରେ କୌଣସି ନିୟମକୁ ଆବିଷ୍କାର କରାଯାଏ । ଏକ ନିୟମ ଆବିଷ୍କୃତ ହେବା ପରେ ତାହା ବହୁ ଘଟଣାର ବ୍ୟାଖ୍ୟା ଦେଇପାରେ । ତେବେ ଏକ ସିଦ୍ଧାନ୍ତକୁ ପରିକଳ୍ପନା କରାଯାଏ ଯାହା ମାଧ୍ୟମରେ ପ୍ରାକୃତିକ ଘଟଣା ପ୍ରବାହକୁ ବ୍ୟାଖ୍ୟା କରାଯାଏ । ମାଧ୍ୟାକର୍ଷଣ ନିୟମ ପ୍ରକୃତିର ଏକ ଶୃଙ୍ଖଳା, ଯାହାକୁ ଜଣେ ଅତି ପ୍ରତିଭାବାନ ବୈଜ୍ଞାନିକ ଆବିଷ୍କାର କରିଛନ୍ତି । ଏହି ନିୟମ ଆବିଷ୍କୃତ ହେଲା ପରେ

ଏହାରି ଆଧାରରେ ପ୍ରକୃତିର ଅନେକ ଘଟଣାକୁ ବୁଝିବା ସମ୍ଭବପର ହୋଇପାରିଛି । ଅପର ପକ୍ଷରେ 'ବିବର୍ତ୍ତନ ସିଦ୍ଧାନ୍ତ' ପ୍ରକୃତିର ଅନେକ ଘଟଣାକୁ ପର୍ଯ୍ୟବେକ୍ଷଣ କଲାପରେ ଏହାକୁ ସୃଜନ (construct) କରାଯାଏ ଯେ ଜୀବମାନଙ୍କର କ୍ରମବିକାଶ ଓ ପରିବର୍ତ୍ତନ ଏହି ଧାରାରେ ହେବା ସମ୍ଭବ । ନାନା ପାରିବେଶିକ ପ୍ରଭାବରୁ ଜୈବିକ ବିବର୍ତ୍ତନ ଦେଇ ପ୍ରକୃତିରେ ଅସଂଖ୍ୟ ପ୍ରାଣୀ ଭିନ୍ନ ଭିନ୍ନ ଗୁଣ ନେଇ ଉଦ୍ଭବ ହୋଇଛନ୍ତି ବୋଲି ପରିକଳ୍ପନା କରାଯାଏ । ବସ୍ତୁତଃ ଏକ ସିଦ୍ଧାନ୍ତର ଆଧାର କ୍ଷେତ୍ର ହେଉଛି ଆମର ପରିକଳ୍ପନା । ତେବେ ଏକ ସିଦ୍ଧାନ୍ତର ଯଥେଷ୍ଟ ବ୍ୟାଖ୍ୟାମୂଳକ ସାମର୍ଥ୍ୟ ରହିଥାଏ ଓ ଏହା ଅସଂଖ୍ୟ ଘଟଣାକୁ ବୁଝାଇ ଦେଇପାରେ । ତେବେ ନିୟମ ହେଉ ବା ସିଦ୍ଧାନ୍ତ ହେଉ ଏ ସବୁ ପ୍ରକୃତିର ଏକରୂପତାର ସୂଚନା ଦିଏ ଓ ତାହା ଜାଣିବାର ଆଧାର ଆମର ପର୍ଯ୍ୟବେକ୍ଷଣ ବା ପରୀକ୍ଷଣ ଜନିତ ଅନୁଭୂତିରୁ ଆସିଥାଏ । ବିନା ପର୍ଯ୍ୟବେକ୍ଷଣ ବା ପରୀକ୍ଷଣରେ କୌଣସି ନିୟମ ବା ସିଦ୍ଧାନ୍ତ କରିକଳ୍ପନା କରାଯାଇପାରେ ନାହିଁ । ତେବେ ଏକ ନିୟମ ବା ଏକ ସିଦ୍ଧାନ୍ତ ଏକ ସାର୍ବିକ ସତ୍ୟବଚନ ବୋଲି ଗୃହୀତ ହୋଇଥାଏ । ଯାହା ଏକ ଶ୍ରେଣୀର ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ, ତାହା ଏକ ସାର୍ବିକ ସତ୍ୟବଚନ । ଆମେ ଯେତେବେଳେ କହୁ 'ପ୍ରତ୍ୟେକ ପ୍ରାଣୀ ମରଣଶୀଳ', 'କୌଣସି ଗାଈ ଅଣ୍ଡା ଦିଏ ନାହିଁ', ଏହା ଏକ ଏକ ସାର୍ବିକ ସିଦ୍ଧାନ୍ତ କାରଣ ଏହା ଏକ ଶ୍ରେଣୀର ସମସ୍ତଙ୍କ ବିଷୟରେ ଉଦ୍ଦିଷ୍ଟ ଯାହାର ସଂଖ୍ୟା ଅଗଣିତ ଓ ସୀମାହୀନ ।

ତେବେ ପ୍ରତ୍ୟେକଟି ବର୍ଣ୍ଣନାତ୍ମକ ନିୟମ ବା ସିଦ୍ଧାନ୍ତ ଏକ ସାର୍ବିକ ସତ୍ୟବଚନ (universal proposition) ହେଲେ ମଧ୍ୟ ପ୍ରତ୍ୟେକଟି ସାର୍ବିକ ସତ୍ୟବଚନ ଏକ ପ୍ରାକୃତିକ ନିୟମର ସୂଚନା ଦିଏ ନାହିଁ । ଯାହା ପ୍ରାକୃତିକ ନିୟମ ତାହା ଏକ ସାର୍ବିକ ସତ୍ୟବଚନ, କିନ୍ତୁ ପ୍ରତ୍ୟେକଟି ସାର୍ବିକ ସତ୍ୟବଚନ ପ୍ରାକୃତିକ ନିୟମ ନୁହେଁ । 'ସବୁ କାଉ କଳା' ଏକ ସାର୍ବିକ ସତ୍ୟବଚନ, କାରଣ ଆମର ଅନୁଭୂତିରେ ଅନ୍ୟ ରଙ୍ଗର କାଉ କେବେ ଆସି ନାହିଁ । ଆମେ ଯେହେତୁ ଅନ୍ୟ ରଙ୍ଗର କାଉ କେଉଁଠାରେ ହେଲେ ଏ ପର୍ଯ୍ୟନ୍ତ ଦେଖିନାହୁଁ, ତେଣୁ 'ସବୁ କାଉମାନେ କଳା' ବୋଲି ଆମେ ବିଶ୍ୱାସ କରୁ । ତେବେ ପ୍ରକୃତିର ବିଶାଳତା ଯୋଗୁଁ ହୁଏତ ଅନ୍ୟ କେଉଁଠି ଅନ୍ୟ ରଙ୍ଗର କାଉ ଥାଇପାରନ୍ତି ଏହି ସମ୍ଭାବନାକୁ ସଂପୂର୍ଣ୍ଣ ଏଡ଼ାଇ ହେବ ନାହିଁ । କିମ୍ବା ଭବିଷ୍ୟତରେ ପ୍ରାକୃତିକ ପରିବେଶରେ ପରିବର୍ତ୍ତନ ଯୋଗୁଁ କାଉମାନଙ୍କ ରଙ୍ଗ ଯେ ବଦଳିବ ନାହିଁ ଏହା ବି ନିର୍ଣ୍ଣୟାତ୍ମକ ଭାବେ କହିବା ସମ୍ଭବ ନୁହେଁ । ସୁତରାଂ 'ସମସ୍ତ କାଉ କଳା' ସାର୍ବିକ ଭାବେ ବର୍ତ୍ତମାନ ପର୍ଯ୍ୟନ୍ତ ଆମ ଅନୁଭୂତିରେ ସତ୍ୟ ହେଲେ ମଧ୍ୟ ଏହା ଯେ ଭବିଷ୍ୟତରେ ଭୁଲ ନହେବ, ଏହା କହିବା ସମ୍ଭବ ନୁହେଁ । ସୁତରାଂ ଏହାକୁ ଏକ ପ୍ରାକୃତିକ ନିୟମ ଭାବେ ନିଆଯାଏ ନାହିଁ ।

ତେବେ ପ୍ରାକୃତିକ ନିୟମ ଓ ସିଦ୍ଧାନ୍ତ ସକଳ ପରସ୍ପର ସହ ସଂଯୋଜିତ ଓ ସୁସଂହତ । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ ଆମେ ପ୍ରାକୃତିକ ଘଟଣା ସମୂହକୁ ଶ୍ରେଣୀ ବିଭାଗ କରି ଅଧ୍ୟୟନ କରିଥାଉ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ପ୍ରାଣୀବିଜ୍ଞାନ, ଭୂତତ୍ତ୍ୱବିଜ୍ଞାନ ଇତ୍ୟାଦି ପ୍ରାକୃତିକ ବିଜ୍ଞାନର ପରିସରଭୁକ୍ତ । ପ୍ରତ୍ୟେକଟି ବିଜ୍ଞାନ ପ୍ରକୃତିର ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରକୁ ଅଧ୍ୟୟନ କରିଥାଏ । ପ୍ରତ୍ୟେକ ବିଜ୍ଞାନ ପ୍ରକୃତିରେ ଥିବା ନିୟମ, ଏକରୂପତା ଓ ସିଦ୍ଧାନ୍ତ ଗୁଡ଼ିକର ଆବିଷ୍କାର ବା ସୃଜନ କରିବାକୁ ପ୍ରୟାସ କରିଆସିଛି । ପରିଣାମତଃ ପ୍ରତ୍ୟେକ ବିଜ୍ଞାନ ନିଜର ପରିସରରେ ବହୁ ନିୟମ ଓ ସିଦ୍ଧାନ୍ତର ଅବତାରଣା କରିଥାଏ । ତେବେ ବିଜ୍ଞାନର ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ନିୟମ ଗୁଡ଼ିକ ଆମେ

ଦେଖୁ, ସେଗୁଡ଼ିକ ପରସ୍ପର ସହ ସୁସଂଯୋଜିତ ଓ ପ୍ରତ୍ୟେକ ପରସ୍ପରକୁ ସମର୍ଥନ କରିଥାନ୍ତି । ପ୍ରାକୃତିକ ନିୟମ ଓ ସିଦ୍ଧାନ୍ତମାନଙ୍କ ଭିତରେ ସଂହତି ରହିଥାଏ ଓ ସକଳ ନିୟମ ଓ ସିଦ୍ଧାନ୍ତ ଏକ ତନ୍ତ୍ର ବା ସିଷ୍ଟମ (system) ଗଠନ କରିଥାନ୍ତି । ପ୍ରକୃତିରେ ଆବିଷ୍କୃତ ହୋଇଥିବା ସକଳ ଏକରୂପତା, ନିୟମ ଓ ସିଦ୍ଧାନ୍ତ ମିଶି ଯେଉଁ ସୁସଂହତ ତନ୍ତ୍ର ଗଠନ କରନ୍ତି ତାହା ହିଁ ବୈଜ୍ଞାନିକ ଜ୍ଞାନର ମୌଳିକ ଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

( ୨ )

ତେବେ ପ୍ରଶ୍ନ ଉଠେ ପ୍ରାକୃତିକ ପରିବେଶରେ ରହିଥିବା ନିୟମ ସକଳକୁ ଆମେ କିପରି ଜାଣିବାକୁ ସମର୍ଥ ହେଉ ? କିମ୍ବା ଅନ୍ୟ ଭାବରେ କହିଲେ ବୈଜ୍ଞାନିକ ଜ୍ଞାନ କେଉଁ ପଦ୍ଧତି ଅବଲମ୍ବନ କରି ଏହାର ସିଦ୍ଧାନ୍ତମାନ ଉପସ୍ଥାପନ କରିଥାଏ ? ଯେକୌଣସି ବୈଜ୍ଞାନିକ ଅନୁଶୀଳନ ପାଇଁ ବିଜ୍ଞାନ କେତେକ ସୁନିର୍ଦ୍ଦିଷ୍ଟ ସୋପାନ ଅବଲମ୍ବନ କରିଥାଏ । ଏହି ସୋପାନ ଦେଇ ଯେଉଁ ଜ୍ଞାନ ବା ସିଦ୍ଧାନ୍ତ ଆସିଥାଏ ତାହା ବୈଜ୍ଞାନିକ ମାନଦଣ୍ଡରେ ପ୍ରାୟତଃ ନିର୍ଭରଶୀଳ । ବୈଜ୍ଞାନିକ ଜ୍ଞାନ ଏଥିପାଇଁ ମୁଖ୍ୟତଃ ପ୍ରଣାଳୀବଦ୍ଧ । ଗୋଟିଏ ନିର୍ଦ୍ଦିଷ୍ଟ ଓ ସାର୍ବଜନୀନ ପଦ୍ଧତି ପ୍ରୟୋଗ କରି ବିଜ୍ଞାନ ବସ୍ତୁ ବା ଘଟଣାମାନଙ୍କୁ ନିୟମ ଓ ସିଦ୍ଧାନ୍ତ ଆଧାରରେ ବ୍ୟାଖ୍ୟା କରିଥାଏ । ବିଜ୍ଞାନର ଏହି ପଦ୍ଧତି ଯେଉଁ ସୋପାନ ମଧ୍ୟ ଦେଇ ସତ୍ୟରେ ଉପନୀତ ହୁଏ ତାହା ହେଲା, (୧) ଘଟଣା ଓ ତଥ୍ୟ ସକଳର ପର୍ଯ୍ୟବେକ୍ଷଣ, (୨) ଘଟଣାର ବ୍ୟାଖ୍ୟା ପାଇଁ ପ୍ରକଳ୍ପ ପ୍ରଣୟନ ବା ସମ୍ଭାବ୍ୟ କାରଣର ଅନୁମାନ (୩) ସମ୍ଭାବ୍ୟ କାରଣର ପରୀକ୍ଷା (୪) ଏକ ନିୟମ ବା ସିଦ୍ଧାନ୍ତରେ ଉପନୀତ ହେବା ଯାହାକୁ ତର୍କର ଭାଷାରେ ସାମାନ୍ୟୀକରଣ (generalisation) କୁହାଯାଏ ।

ବୈଜ୍ଞାନିକ ଜ୍ଞାନର ପ୍ରଥମ ସୋପାନ ହେଲା ପର୍ଯ୍ୟବେକ୍ଷଣ । ପ୍ରାକୃତିକ ପରିବେଶରେ ଥିବା ବିଭିନ୍ନ ବସ୍ତୁ ଓ ସେମାନଙ୍କର ଗୁଣ, ଘଟୁଥିବା ଘଟଣା ଓ କ୍ରିୟା-ପ୍ରକ୍ରିୟାକୁ ସୁନିୟନ୍ତ୍ରିତ ଭାବେ ପ୍ରତ୍ୟକ୍ଷ କରିବା ହେଉଛି ପର୍ଯ୍ୟବେକ୍ଷଣ । ଏହାକୁ ଏକ ଲକ୍ଷ୍ୟ ସାଧନ ଦିଗରେ କରାଯାଏ । ପର୍ଯ୍ୟବେକ୍ଷଣ କ୍ଷେତ୍ରରେ ପୁନଶ୍ଚ ଅନେକ ଉପସୋପାନ ରହିଥାଏ । କ'ଣ ପର୍ଯ୍ୟବେକ୍ଷଣ କରିବାକୁ ହେବ, ତାହାର ସଂଜ୍ଞା, ବିଶ୍ଳେଷଣ, ଅପ୍ରାସଙ୍ଗିକ ଘଟଣାର ପ୍ରତ୍ୟାଖ୍ୟାନ, କୌଣସି ଘଟଣାକୁ ବିଭିନ୍ନ ପରିବର୍ତ୍ତିତ ପରିସ୍ଥିତିରେ ଅଧ୍ୟୟନ କରିବା ଇତ୍ୟାଦି ପର୍ଯ୍ୟବେକ୍ଷଣର ପରିସର ଭିତରେ ଆସେ । ପୁନଶ୍ଚ ପର୍ଯ୍ୟବେକ୍ଷଣ ପ୍ରତ୍ୟକ୍ଷ ଜ୍ଞାନ ଓ ପରୀକ୍ଷଣକୁ ମଧ୍ୟ ବୁଝାଏ । ଏକ ଜଟିଳ ପ୍ରାକୃତିକ ପରିବେଶରେ କୌଣସି ଘଟଣାର ଏକ ବୈଜ୍ଞାନିକ ଅନୁଶୀଳନ ପାଇଁ ସୁସଂହତ ପର୍ଯ୍ୟବେକ୍ଷଣ ଅବଶ୍ୟମ୍ଭାବୀ ମନେହୁଏ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ବୈଜ୍ଞାନିକ ଜ୍ଞାନର ପ୍ରଥମ ସୋପାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନେକ ଜ୍ଞାନ ଏହାର ଆଧାର ଉପରେ ଗଢ଼ି ଉଠିଥାଏ । ଆମର ଅନୁଭୂତି ଆଧାରିତ ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଦ୍ୱାରା ଅନେକ କୌତୂହଳତା ସୃଷ୍ଟି ହୋଇଥାଏ । ମନେ କରନ୍ତୁ ପ୍ରାଣୀବିଜ୍ଞାନରେ ଅନୁମାନ କରାଯାଏ ଯେ ପ୍ରାକୃତିକ ପରିବେଶରେ ପ୍ରାୟ ୧୦ ଲକ୍ଷ ପ୍ରଜାତିର ଜୀବ ରହିଛନ୍ତି । ଏହି ଦଶ ଲକ୍ଷ ଜୀବ ଭିତରୁ ପ୍ରାୟ ସାତ ଲକ୍ଷ ଜୀବ ଛ ଗୋଡ଼ ବିଶିଷ୍ଟ । ତେବେ ଛ' ଗୋଡ଼ ଥିବା ଜୀବମାନଙ୍କ ମଧ୍ୟରେ ଆଉ କ'ଣ ସାଧାରଣ ଲକ୍ଷଣ ରହିଛି ବା ସେମାନେ କ'ଣ ଗୋଟିଏ ପୂର୍ବ ପୁରୁଷଙ୍କ ଠାରୁ ଉଦ୍ଭବ ହୋଇଛନ୍ତି କି ଇତ୍ୟାଦି ପ୍ରଶ୍ନ ବିଜ୍ଞାନ ସ୍ତରରେ ଉଠିଥାଏ । ମୋଟ ଉପରେ କହିଲେ ପର୍ଯ୍ୟବେକ୍ଷଣ ହିଁ ବୈଜ୍ଞାନିକ ଜ୍ଞାନର ମୂଳଭିତ୍ତି ଅଟେ ।

ବୈଜ୍ଞାନିକ ଜ୍ଞାନର ଦ୍ୱିତୀୟ ସୋପାନରେ ପ୍ରକଳ୍ପ ବା ସମ୍ଭାବ୍ୟ କାରଣର ପ୍ରସଙ୍ଗ ଆସିଥାଏ । କୌଣସି ଏକ ଘଟଣାର କାରଣ ନିର୍ଣ୍ଣୟ କରିବାକୁ କେତେକ ସମ୍ଭାବନାମୂଳକ ପ୍ରସ୍ତାବ ବିଷୟ ବିଚାରକୁ ନିଆଯାଏ । କୌଣସି ଘଟଣାର ଏକ କାରଣ ବାହାର କରିବାକୁ କେବଳ ସୃଜନଶୀଳ ବ୍ୟକ୍ତି ପରିକଳ୍ପନା କରିଥାଏ । ଜଳରେ ତରଙ୍ଗ ସୃଷ୍ଟି ହେବା ପରି ବାୟୁରେ ତରଙ୍ଗ ସୃଷ୍ଟି ଦ୍ୱାରା ଶୁଣିବା ସମ୍ଭବ ହେଉଛି କି ? ଆତଗଛରୁ ଆତଟି ଉପରକୁ ନଯାଇ ତଳେ ପଡିବାର କାରଣ ଏହା କି ଯେ ପୃଥିବୀର କିଛି ଆକର୍ଷଣ ରହିଛି ? ତେବେ ଯେଉଁ ପ୍ରକଳ୍ପ ପ୍ରଣୟନ କରାଯାଉ ନା କାହିଁକି ତାହା ପରୀକ୍ଷିତ ହେବାର ପରିସର ଭିତରେ ରହିବା ଆବଶ୍ୟକ । ଯାହା ପରୀକ୍ଷିତ ହୋଇପାରିବ ନାହିଁ, ତାହା ଏକ ସମ୍ଭାବ୍ୟ କାରଣ ହେବା ସମ୍ଭବ ନୁହେଁ । ଫ୍ଳୁ ରୋଗ ବ୍ୟାପିବାର କାରଣ କ'ଣ ହୋଇପାରେ ? ଯଦି କେହି ଅନୁମାନ କରେ ଯେ କୌଣସି ଅଶରୀର ଆତ୍ମା ଏହା କରୁଛି, ବା କେଉଁ ଦିଅଁ ମଣିଷ ଉପରେ କୋପ କରି ଏହା କରୁଛି, ତେବେ ଏଗୁଡିକ ସମ୍ଭାବ୍ୟ କାରଣ ହୋଇପାରିବ  ନାହିଁ, କାରଣ ଏହାର ପରୀକ୍ଷା ସମ୍ଭବ ନୁହେଁ । ଯେଉଁ ସମ୍ଭାବ୍ୟ କାରଣ ପରୀକ୍ଷିତ ହୋଇପାରିବ, ତାହା ହିଁ ବିଜ୍ଞାନରେ ଏକ ପ୍ରକଳ୍ପ ଭାବେ ସୂଚିତ ହେବ । ସୁତରାଂ ବିଜ୍ଞାନରେ ଯେଉଁ ସମ୍ଭାବ୍ୟ କାରଣର ପରିକଳ୍ପନା କରାଯାଏ, ତାହା ପ୍ରାସଙ୍ଗିକ, ବାସ୍ତବ, ସରଳ ଓ ପରୀକ୍ଷିତ ହେବା ଆବଶ୍ୟକ । ଏହା ଯଦି  ଅଲୌକିକ, ଅପ୍ରାକୃତିକ ଓ ଅପରୀକ୍ଷିତ ହୁଏ, ତେବେ ଏହାର କୌଣସି ମୂଲ୍ୟ ରହେ ନାହିଁ ।

ତୃତୀୟ ସ୍ତରରେ ସମ୍ଭାବ୍ୟ କାରଣକୁ ପ୍ରମାଣ ବା ଅପ୍ରମାଣ କରିବା ପାଇଁ  ଆବଶ୍ୟକ ହୁଏ ପରୀକ୍ଷା । ଏହି ପରୀକ୍ଷା ଆଧାରରେ ଆମର ମୂଳ  ପ୍ରଶ୍ନର ଉତ୍ତର ପାଇବା ସମ୍ଭବ ହୋଇଥାଏ କିମ୍ବା ଏକ ସମ୍ଭାବ୍ୟ କାରଣକୁ ପ୍ରମାଣ କରିବାର ପରିସ୍ଥିତି ଆସେ । ଯଦି ଏହା ପ୍ରମାଣିତ ହୁଏ ତେବେ ସମ୍ଭାବ୍ୟ କାରଣଟି ସତ୍ୟ ବୋଲି ଗୃହୀତ ହୁଏ, ନହେଲେ ଏହାକୁ ପରିହାର କରି ନୂତନ ପ୍ରକଳ୍ପ ଚିନ୍ତା କରାଯାଏ । ବିଜ୍ଞାନ କ୍ଷେତ୍ରରେ ଏହି ପରୀକ୍ଷା ଆଧାରରେ କେତେକେତେ ଚମକପ୍ରଦ ନୂତନ ତଥ୍ୟ ବାହାରିଛି ଓ ବିଜ୍ଞାନର ଦିଗନ୍ତକୁ ବିସ୍ତାର କରିଛି । ଜଣେ ବିଜ୍ଞାନୀ କୌଣସି ବିଷୟକୁ ପରୀକ୍ଷା କଲାବେଳେ ସକଳ ପରିଣାମ ଓ ଫଳାଫଳକୁ ଲକ୍ଷ କରି ଅଗ୍ରଗତି କରିଥାଏ । କୌଣସି ଘଟଣା ପରୀକ୍ଷିତ ହେଲା ପରେ ତାହାର ସତ୍ୟତା ଗୃହୀତ ହୋଇଥାଏ ନଚେତ ଏହାର ଯଥେଷ୍ଟ ବୈଜ୍ଞାନିକ ମୂଲ୍ୟ ରହେ ନାହିଁ । ସମ୍ଭାବନା ପରୀକ୍ଷିତ ନହେଲେ ସମ୍ଭାବନା ସ୍ତରରେ ରହେ ।

ତେବେ ଏକ ସମ୍ଭାବ୍ୟ କାରଣ ବା ପ୍ରକଳ୍ପ ପ୍ରମାଣିତ ହେବା ପରେ ଏଥିରୁ ବାହାରୁଥିବା ସିଦ୍ଧାନ୍ତଟି ଏକ ବୈଜ୍ଞାନିକ ସତ୍ୟ ଭାବେ ସ୍ୱୀକୃତ ହୁଏ । ଏହି ସତ୍ୟକୁ ସାମାନ୍ୟୀକରଣ (generalisation) କୁହାଯାଏ । ଏହାର ପରିସର ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ସୀମିତ ହୋଇପାରେ କିମ୍ବା ଅସୀମ ସ୍ତରର ହୋଇପାରେ । ସ୍ଥଳ ବିଶେଷରେ ବିଜ୍ଞାନର ଏହି ସୋପାନରେ ଅପରିସୀମ ଦୃଷ୍ଟାନ୍ତ ବିଶିଷ୍ଟ ଏକ ସାର୍ବିକ ସିଦ୍ଧାନ୍ତ ବା ନିୟମ ଆସିଥାଏ । ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ଯେଉଁ ନିୟମ ବା ଏକରୂପତା ନିହିତ ଥାଏ, ତାହାକୁ ଏହି ପ୍ରଣାଳୀରେ ଆବିଷ୍କାର କରିବା ସମ୍ଭବ ହୋଇଥାଏ । କେତୋଟି ମାତ୍ର ଘଟଣାକୁ ପରୀକ୍ଷା କରି ଯଦି ସେମାନଙ୍କ  ଭିତରେ ଥିବା ମୌଳିକ ଲକ୍ଷଣକୁ ବ୍ୟାଖ୍ୟା କରାଯାଏ ତାହାରି ଆଧାରରେ ସେହି ଶ୍ରେଣୀର ସମସ୍ତ ଘଟଣା ବିଷୟରେ ସାମାନ୍ୟୀକରଣ କରିବା ସମ୍ଭବ ହୋଇଥାଏ । ଯଦି ପରୀକ୍ଷା ଦ୍ୱାରା ବିଭିନ୍ନ ଅଂଚଳରୁ ସଂଗୃହୀତ ଏକ ପ୍ରଜାତିର ଜୀବଙ୍କର ଜିନ୍ ସଂପର୍କରେ ଜଣାଯାଏ, ତେବେ ସେହି ପ୍ରଜାତିର ସକଳ ଜୀବଙ୍କର ଜିନ୍ ସଂପର୍କରେ

ଧାରଣାଟି ଏକ ନିୟମରେ ପରିଣତ ହୋଇଯାଏ । ମାତ୍ର କେତୋଟି ପରୀକ୍ଷା ଦ୍ୱାରା କୌଣସି ମୌଳିକ ବସ୍ତୁର ଘନତ୍ୱ ବାହାର କରିବା ପରେ ତାହା ସେହି ବସ୍ତୁ ସଂପର୍କରେ ଏକ ନିୟମରେ ପରିଣତ ହୋଇଥାଏ । ମୋଟ ଉପରେ କହିଲେ ବୈଜ୍ଞାନିକ ଜ୍ଞାନ ଏକ ମୁକ୍ତ ଓ ସାର୍ବଜନୀନ ପ୍ରଣାଳୀ ମଧ ଦେଇ ଉଦ୍ଭବ ହୋଇଥାଏ ।

ତେବେ ଏଥିରୁ ଏହା ଭାବିବା ଯଥାର୍ଥ ନୁହେଁ ଯେ ବୈଜ୍ଞାନିକ ଜ୍ଞାନ ଅପରିବର୍ତ୍ତନୀୟ ଓ ଧ୍ରୁବ ସତ୍ୟ । ବୈଜ୍ଞାନିକ ସିଦ୍ଧାନ୍ତମାନ ନୂତନ ଆବିଷ୍କାର ଓ ନୂତନ ପରୀକ୍ଷଣ ଜନିତ ତଥ୍ୟ ଆଧାରରେ ପରିବର୍ତ୍ତିତ ହୋଇଥାଏ । ଆଜି ପ୍ରକୃତିର ଯେଉଁ କ୍ଷେତ୍ରଗୁଡ଼ିକୁ ବିଶ୍ଳେଷଣ କରିବା ସମ୍ଭବ ହେଉଛି ତାହାରି ଆଧାରରେ ଆମର ଜ୍ଞାନ ଗଢ଼ି ଉଠିଛି, ଆଗାମୀ ଦିନରେ ନୂତନ ଗବେଷଣା ଓ ତଥ୍ୟ ଆଧାରରେ ଆମ ଜ୍ଞାନର ଦିଗନ୍ତ ଅଧିକ ପ୍ରସାରିତ ହେବାର ସମ୍ଭାବନା ରହିଛି । ମାତ୍ର ତିନିଶହ ବର୍ଷର ବୈଜ୍ଞାନିକ କ୍ରିୟାଶୀଳତା ଯୋଗୁଁ ବହୁ କ୍ଷେତ୍ରରେ ବିଜ୍ଞାନ ଚମକପ୍ରଦ ସଫଳତା ହାସଲ କରିଛି, ଆହୁରି ମଧ ଅନେକ କଥାର ବିଶ୍ଳେଷଣ ହୋଇପାରି ନାହିଁ । ଆଗାମୀ ଦିନରେ ବିଜ୍ଞାନ ଆହୁରି ଅନେକ ଅଜ୍ଞାତ ସ୍ତରକୁ ବିଶ୍ଳେଷଣ କରିପାରିବ । ବସ୍ତୁତଃ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ତେବେ ବିଜ୍ଞାନ ଯେଉଁ ପ୍ରଣାଳୀ ପ୍ରୟୋଗ କରି ତାହାର ସିଦ୍ଧାନ୍ତମାନଙ୍କରେ ଉପନୀତ ହେଉଛି, ସେହି ପ୍ରଣାଳୀ ମୁକ୍ତ ଓ ସାର୍ବଜନୀନ । ବିଜ୍ଞାନର ପ୍ରଣାଳୀ କ୍ଷେତ୍ରରେ କିଛି ରହସ୍ୟ ବା ଗୁପ୍ତତା ନଥାଏ । ଏହା ମୁକ୍ତ ଓ ନିରପେକ୍ଷ । ଏହା ସର୍ବଦା ବାସ୍ତବ ଘଟଣା ଓ ପରୀକ୍ଷିତ ତଥ୍ୟ ପ୍ରତି ପ୍ରତିବଦ୍ଧ । ଏହା ହିଁ ବିଜ୍ଞାନର ସାର୍ବଜନୀନତା ଓ ସତ୍ୟ ପ୍ରତି ପ୍ରତିବଦ୍ଧତା । ମୋଟ ଉପରେ କହିଲେ ବୈଜ୍ଞାନିକ ଜ୍ଞାନ ଯେଉଁ ପ୍ରଣାଳୀ ଆଧାରରେ ରୂପ ନିଏ ସେହି ପ୍ରଣାଳୀ ମୁକ୍ତ, ନିରପେକ୍ଷ, ସାର୍ବଜନୀନ, ସତ୍ୟ ପ୍ରତି ଉନ୍ମୁକ୍ତ ଓ ବାସ୍ତବ । ସୁତରାଂ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପରିବର୍ତ୍ତନଶୀଳ, ପ୍ରଣାଳୀବଦ୍ଧ ଓ ସାର୍ବଜନୀନ ।

ପ୍ରକୃତିରେ ଅନ୍ତର୍ନିହିତ ଥିବା ନିୟମ ସକଳକୁ ଆବିଷ୍କାର କରିବା କିପରି ବିଜ୍ଞାନର ଲକ୍ଷ୍ୟ ଓ ବିଜ୍ଞାନ କେଉଁ ପ୍ରଣାଳୀରେ ଏହା ହାସଲ କରିଥାଏ ତାହାର ଆଲୋଚନା ପରେ ଏବେ ଆମେ ଏକ ବୈଜ୍ଞାନିକ ବ୍ୟାଖ୍ୟାର ସ୍ୱରୂପ ବିଷୟଟିକୁ ଯିବା ।

(୩)

ବୈଜ୍ଞାନିକ ବ୍ୟାଖ୍ୟା ସାଧାରଣତଃ 'କାହିଁକି' ପ୍ରଶ୍ନକୁ ନେଇ ଉଠିଥାଏ କିମ୍ବା ଏକ କାରଣକୁ ନେଇ ଆସିଥାଏ । ଅବଶ୍ୟ କାହିଁକି ଜନିତ ପ୍ରଶ୍ନ ଓ କାରଣ ଜନିତ ପ୍ରଶ୍ନ ଭିତରେ ସ୍ଥଳ ବିଶେଷରେ ପାର୍ଥକ୍ୟ ନଥାଏ, କିନ୍ତୁ ଅନ୍ୟ କେତେକ କ୍ଷେତ୍ରରେ ସେମାନଙ୍କ ମଧରେ ପାର୍ଥକ୍ୟ ରହିଥାଏ । ସ୍ୱାଇନ ଫ୍ଲୁ କାହିଁକି ହୁଏ ବା ସ୍ୱାଇନ ଫ୍ଲୁ ହେବାର କାରଣ କ'ଣ, ଉଭୟ ପ୍ରଶ୍ନ ଏଠାରେ ପ୍ରାୟତଃ ସମାନ । କିନ୍ତୁ କେତେକ କ୍ଷେତ୍ରରେ କାହିଁକି ପ୍ରଶ୍ନ ଓ କାରଣର ବ୍ୟାଖ୍ୟା ଭିତରେ ପାର୍ଥକ୍ୟ ରହିପାରେ । କାରଣ ଜନିତ ପ୍ରଶ୍ନଟି କୌଣସି ବିଶ୍ୱାସ ବା ତଥ୍ୟ ସମ୍ବଳିତ ଅଭିବ୍ୟକ୍ତି କ୍ଷେତ୍ରରେ ଉଠିଥିବା ବେଳେ କାହିଁକି ପ୍ରଶ୍ନଟି ଘଟଣା କ୍ଷେତ୍ରରେ ଅଧିକ ପ୍ରାସଙ୍ଗିକ ମନେହୁଏ । ଜଣେ କାହିଁକି କେତେକ ବିଶ୍ୱାସ ପୋଷଣ କରେ କିମ୍ବା ଏକ ବିଶ୍ୱାସ ସତ୍ୟ ବୋଲି କାହିଁକି ଭାବେ, ପ୍ରଶ୍ନ ହେଲେ ସେ ତାର ବିଶ୍ୱାସ ପଶ୍ଚାତରେ ଥିବା କେତେକ ଯୁକ୍ତି (ସେ ଯୁକ୍ତି ବୈଧ ହୋଇପାରେ ବା ଅବୈଧ ହୋଇପାରେ) ଉପସ୍ଥାପନ କରେ । ଯଦି ଜଣଙ୍କୁ ପଚରାଯାଏ ଏକ କରୁଣାମୟ ଈଶ୍ୱରଙ୍କ ଉପରେ ସେ କାହିଁକି ବିଶ୍ୱାସ କରନ୍ତି, ତେବେ ସେ ବିଭିନ୍ନ କାରଣ ତାଙ୍କ ମାନଦଣ୍ଡରୁ ବା ବିଶ୍ୱାସରୁ ଦେଇପାରନ୍ତି । ସେ

ହୁଏତ କହିପାରନ୍ତି ଯେ ସେ ଈଶ୍ୱରଙ୍କୁ ରକ୍ଷା କର୍ତ୍ତା ବୋଲି ଭାବନ୍ତି ଓ ତାଙ୍କର ବିଶ୍ୱାସ ସେ ବିପଦରେ ପଡ଼ିଲେ ଈଶ୍ୱର ତାଙ୍କୁ ରକ୍ଷା କରିବେ ।

ତେବେ କାହିଁକି ବା କିପରି ପ୍ରଶ୍ନଟି ଯେତେବେଳେ କୌଣସି ଘଟଣା କ୍ଷେତ୍ରରେ ଉଠିଥାଏ, ସେତେବେଳେ ସେଠାରେ ଯେଉଁ ବ୍ୟାଖ୍ୟା ଦିଆଯାଏ ତାହା ବୈଜ୍ଞାନିକ ବ୍ୟାଖ୍ୟା ହେବାକୁ ହେଲେ ତାହା କି ପ୍ରକାର ହେବା ଆବଶ୍ୟକ ତାହା ଆମେ ବିଚାରକୁ ନେବା । କୌଣସି ଘଟଣାର ବୈଜ୍ଞାନିକ ବ୍ୟାଖ୍ୟା ଦେବା ବେଳେ କୌଣସି ପ୍ରାକୃତିକ ନିୟମର ବା ଅନ୍ୟାନ୍ୟ ପର୍ଯ୍ୟବେକ୍ଷିତ ତଥ୍ୟର ଅବତାରଣା କରାଯାଏ । 'କ' କୁ ମ୍ୟାଲେରିଆ ଜ୍ୱର ହୋଇଛି ବୋଲି କିପରି ଜାଣି ହେଲା- ପ୍ରଶ୍ନର ବ୍ୟାଖ୍ୟା ହେବ ମ୍ୟାଲେରିଆ ରୋଗରେ ଯେଉଁ ଲକ୍ଷଣ ପ୍ରକାଶ ପାଇବାର ପୂର୍ବ ଜ୍ଞାନ ରହିଛି ତାଙ୍କ ପାଖରେ ସେହି ଲକ୍ଷଣ ପ୍ରକାଶ ପାଇଲା, ତାଙ୍କର ରକ୍ତ ପରୀକ୍ଷାରୁ ରକ୍ତରେ ମ୍ୟାଲେରିଆ ଜୀବାଣୁ ଥିବା ଜଣାପଡ଼ିଲା ଇତ୍ୟାଦି ଇତ୍ୟାଦି । ଜଣଙ୍କର ରକ୍ତରେ ମ୍ୟାଲେରିଆ ଜୀବାଣୁ ରହିଲେ ଜଣେ ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ହୁଏ ଏକ ନିୟମ । ସୁତରାଂ ଗୋଟିଏ ଘଟଣାକୁ ବ୍ୟାଖ୍ୟା କରିବା ସମୟରେ କୌଣସି ନିୟମର ଅବତାରଣା କରାଯାଏ କିମ୍ବା ଅନ୍ୟ କେତେକ ଘଟଣାକୁ ବି ସଂଶ୍ଳିଷ୍ଟ କରାଯାଏ । ପୁନଶ୍ଚ ଯଦି ପ୍ରଶ୍ନ ହୁଏ ମ୍ୟାଲେରିଆ ଜୀବାଣୁ କ'ଣ ଓ ଏହା କିପରି ମଣିଷ ଶରୀରକୁ ଆସେ, ସେଥିପାଇଁ ପୁଣି କୁହାଯାଏ ଯେ ଆମ ପରିବେଶରେ ଥିବା ଜୀବାଣୁ, ଭୂତାଣୁ ରୋଗବାହୀ ମାଧ୍ୟମରେ ମଣିଷ ଶରୀରରେ ପ୍ରବେଶ କରେ ଓ ମଣିଷର ପ୍ରତିଷେଧକ ବ୍ୟବସ୍ଥା ଦୁର୍ବଳ ଥିଲେ ତାହା ବ୍ୟକ୍ତି ଶରୀରରେ ରୋଗ ସୃଷ୍ଟି କରେ । ପୁନଶ୍ଚ ଯଦି ପ୍ରଶ୍ନ ହୁଏ ରୋଗ କାହାକୁ କୁହନ୍ତି, ହୁଏତ ବିଜ୍ଞାନ ସମ୍ମତ ଯାହା ଉତ୍ତର ଅଛି ତାହା ଦିଆଯାଇପାରେ । କୌଣସି ଘଟଣାକୁ ବ୍ୟାଖ୍ୟା କରିବାକୁ ଏକ ନିୟମ, ନିୟମକୁ ବ୍ୟାଖ୍ୟା କରିବାକୁ ଉଚ୍ଚତର ନିୟମ ଓ ତାହାକୁ ବ୍ୟାଖ୍ୟା କରିବାକୁ ସିଦ୍ଧାନ୍ତର (theory) ଅବତାରଣା ହୋଇଥାଏ । ଏହି ସବୁ ନିୟମ, ସିଦ୍ଧାନ୍ତ, ପ୍ରାକୃତିକ ଜଗତର ବାସ୍ତବ ସ୍ଥିତି ଓ କେତେକ ଏକରୂପତା ଉପରେ ଆଧାରିତ । ଏହି ବୈଜ୍ଞାନିକ କ୍ରମରେ ଗଲେ ଏପରି କେତେକ ଉଚ୍ଚତର ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ, ଯାହା ପ୍ରକୃତିର ନିଛକ ଘଟଣା (brute fact) କହିବାକୁ ହୁଏ । କୌଣସି ଘଟଣାକୁ ବ୍ୟାଖ୍ୟା କଲାବେଳେ ଯେଉଁ ଘଟଣା ବା ନିୟମର ଅବତାରଣା କରାଯାଏ ତାହା ପ୍ରାକୃତିକ ପରିସରରେ କରାଯାଏ ଯାହାର ପର୍ଯ୍ୟବେକ୍ଷଣ ବା ପରୀକ୍ଷଣ ଜନିତ ସତ୍ୟାସତ୍ୟ ନିରୂପଣ କରାଯାଇପାରିବ । ଯଦି କୌଣସି ବ୍ୟାଖ୍ୟାନର ସତ୍ୟାସତ୍ୟ ନିରୂପଣ ହେବା ସମ୍ଭବ ହେଉ ନାହିଁ, ତାହାକୁ ଏକ ସମ୍ଭାବ୍ୟ ପ୍ରକଳ୍ପ ଭାବେ ନିଆଯାଇପାରେ । ତେବେ ଗୋଟିଏ ବୈଧ ପ୍ରକଳ୍ପ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ପରୀକ୍ଷିତ ହୋଇପାରିବା ଆବଶ୍ୟକ, ନହେଲେ ଏହା ଅର୍ଥଶୂନ୍ୟ ମନେ ହେବ ।

ଏହି ପୃଷ୍ଠଭୂମିରେ ବୈଜ୍ଞାନିକ ବ୍ୟାଖ୍ୟା ଠାରୁ କେତେକ ଛଦ୍ମ ବ୍ୟାଖ୍ୟାକୁ (pseudo explanation) ପୃଥକ୍ କରିବା ଦରକାର । ଯଦି ଗୋଟିଏ ବ୍ୟାଖ୍ୟା ବିଭିନ୍ନ ଘଟଣା ପୃଷ୍ଠଭୂମିରେ ଦିଆଯାଏ, ତାହା ଯଥାର୍ଥ ବ୍ୟାଖ୍ୟା ନୁହେଁ । ଓଡିଶା କାହିଁକି ଦରିଦ୍ର ହୋଇ ରହିଛି, ଓଡ଼ିଶାରେ ସ୍ୱାଇନ୍ ଫ୍ଳୁ କାହିଁକି ବ୍ୟାପିଲା, ଏ ବର୍ଷ କାହିଁକି କମ୍ ବର୍ଷା ହୋଇଛି, ଇତ୍ୟାଦି ଘଟଣାକୁ ବୁଝାଇବାକୁ ଯାଇ ଯଦି କିଏ କୁହନ୍ତି, ଏ ସବୁ ଜଗନ୍ନାଥଙ୍କ ଇଚ୍ଛା, ତେବେ ଏହାର କୌଣସି ଅର୍ଥ ହିଁ ରହିବ ନାହିଁ ଓ ଏହାକୁ ଏକ ବ୍ୟାଖ୍ୟା ବୋଲି ନିଆଯିବ ନାହିଁ । ଯାହା ସବୁ ଘଟଣାର ବ୍ୟାଖ୍ୟା ତାହା କାହାର ବି ବ୍ୟାଖ୍ୟା ନୁହେଁ । ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ପ୍ରାକୃତିକ ଘଟଣା ବା ଦୁର୍ଘଟଣାକୁ ବୁଝାଇବାକୁ ମଣିଷ ଅତିପ୍ରାକୃତିକ କାରଣର ଅବତାରଣା

କରୁଥିଲା । ବର୍ଷା, ଭୂକମ୍ପ, ବାତ୍ୟା, ରୋଗ, ଦୁର୍ବିପାକ ଇତ୍ୟାଦି ଘଟଣାକୁ ବୁଝିବାକୁ ମଣିଷ କେତେ କେତେ କାଳ୍ପନିକ କାହାଣୀମାନ ଅବତାରଣା କରିଥିଲା ଓ ସେସବୁ ଜରିଆରେ ପ୍ରାକୃତିକ ଘଟଣାର କାରଣମାନଙ୍କୁ ଅବବୋଧ କରୁଥିଲା । ବର୍ଷା ଇନ୍ଦ୍ର ବା ସ୍ୱର୍ଗର ପ୍ରଧାନ ଦେବତା ଦ୍ୱାରା ନିୟନ୍ତିତ, ଭୂକମ୍ପ ବାସୁକୀ ନାଗର ମୁଣ୍ଡ ହଲାଇବା ଦ୍ୱାରା ହେଉଛି, ସୂର୍ଯ୍ୟପରାଗ ରାହୁ ସୂର୍ଯ୍ୟଙ୍କୁ ଗିଳିବା ଦ୍ୱାରା ହୁଏ ଏଗୁଡିକ ଅତୀତର 'ଆଇମା କାହାଣୀ' ବୋଲି ସାଂପ୍ରତିକ ଜ୍ଞାନର ମାନଦଣ୍ଡରେ କହିବା ପ୍ରାସଙ୍ଗିକ ହେବ । ମୋଟ ଉପରେ ବୈଜ୍ଞାନିକ ବ୍ୟାଖ୍ୟା କୌଣସି ଅଲୌକିକ କାରଣ ବା ଚମତ୍କାରିତାକୁ ସ୍ୱୀକାର କରେ ନାହିଁ । ଏହା ସର୍ବଦା ପ୍ରାକୃତିକ କାରଣ, ଯାହା ପରୀକ୍ଷା ଦ୍ୱାରା ସାବ୍ୟସ୍ତ ହେବା ସମ୍ଭବ ତାହାକୁ ଗ୍ରହଣ କରିଥାଏ ।

ତେବେ ସାଧାରଣ ଜୀବନ ପ୍ରବାହରେ ବିଭିନ୍ନ ଘଟଣାର ବୋଧଗମ୍ୟ ପାଇଁ କିଛି ବ୍ୟାଖ୍ୟା ଦିଆଯାଏ । ଏଗୁଡ଼ିକ ହୁଏତ୍ ଏକ ସାଧାରଣ ମଣିଷର କୌତୂହଳତାକୁ ସନ୍ତୁଷ୍ଟ କରିଥାଏ । ମାଆ- ପ୍ରାଣୀଟି ଶିଶୁ ପ୍ରାଣୀଟିର କାହିଁକି ଯତ୍ନ ନିଏ ? ଆମେ ଭାବିଥାଉ ଯେ ମାଆ ଦେହରେ ମାତୃ ପ୍ରବୃତ୍ତି ରହିବା ଯୋଗୁଁ ଏହା ସମ୍ଭବ । ମାଆ କୁକୁରଟି ତାର ଛୁଆ ଗୁଡ଼ିକର ଯତ୍ନ ନିଏ କାରଣ ମାଆ କୁକୁର ପାଖରେ ମାତୃ ପ୍ରବୃତ୍ତି ରହିଛି । ଏହା ଏକ ସନ୍ତୋଷଜନକ ବ୍ୟାଖ୍ୟା ନୁହେଁ । କିମ୍ବା କେତେକ ପକ୍ଷୀ କାହିଁକି ଦେଶାନ୍ତର ଗମନ କରନ୍ତି ? ତାର ବ୍ୟାଖ୍ୟା ହୁଏ ଯେ ସେହି ପକ୍ଷୀମାନଙ୍କ ପାଖରେ ଦେଶାନ୍ତର ପବୃତ୍ତି ରହିଛି; ଏଗୁଡ଼ିକ ହୁଏତ ଆମକୁ ସନ୍ତୁଷ୍ଟ କରିପାରେ । ତେବେ ମାତୃପ୍ରବୃତ୍ତି ବା ଦେଶାନ୍ତର ପ୍ରବୃତ୍ତି କ'ଣ, ତାହା କାହିଁକି ଏକ ପ୍ରଜାତି ବଶିଷ୍ଟ କେତେକଙ୍କ ପାଖରେ ରହିଛି, ଅନ୍ୟ ପାଖରେ ନାହିଁ ତାହାର କାରଣ ନ ଜାଣିଲେ ଏହି ବ୍ୟାଖ୍ୟାର ବିଶେଷ ମହତ୍ତ୍ୱ ରହିବ ନାହିଁ । କେତେକ ଘଟଣାରେ ପ୍ରୟୋଜନାତ୍ମକ ବା ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟା ଦିଆଯାଏ । କୌଣସି ମାନବିକ ବ୍ୟବହାର କ୍ଷେତ୍ରରେ ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟାର ଅର୍ଥ ଥାଏ । କ କାହିଁକି କଠିନ ପରିଶ୍ରମ କରୁଛି ବା ଖ କାହିଁକି କାର୍ଯ୍ୟରେ ନିୟମିତ ହେଉ ନାହିଁ ଘଟଣା ମାନଙ୍କର ଉଦ୍ଦେଶ୍ୟମୂଳକ କାରଣ ରହିଥାଏ । କିନ୍ତୁ କୌଣସି ପ୍ରାକୃତିକ ଘଟଣାର ଉଦ୍ଦେଶ୍ୟମୂଳକ କାରଣ ଦେବା ଅର୍ଥପୂର୍ଣ୍ଣ ନୁହେଁ । ଯେଉଁଠି ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟା ଦିଆଯିବ, ସେଠାରେ ଏକ କର୍ତ୍ତା ଓ ତାହାର ଉଦ୍ଦେଶ୍ୟର ପ୍ରଶ୍ନ ଉଠିବ । ବିନା କର୍ତ୍ତାରେ ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟାର ଅର୍ଥ ହିଁ ନାହିଁ । ତେବେ ଯଦି କେହି କୁହନ୍ତି ଯେ ହାତୁଡ଼ିଟିର ଉଦ୍ଦେଶ୍ୟ ହେଉଛି କାନ୍ଥରେ କଣ୍ଟା ପିଟିବା ବା ହୃତ୍‌ପିଣ୍ଡର ଉଦ୍ଦେଶ୍ୟ ହେଉଛି ଶରୀରରେ ରକ୍ତ ସଞ୍ଚାଳନ କରିବା ତେବେ ଏଠାରେ କୁହାଯାଇପାରିବ ଯେ ହାତୁଡିକୁ ନିର୍ମାଣ କରିଥିବା ବ୍ୟକ୍ତି ଏକ ଉଦ୍ଦେଶ୍ୟ ରଖି ହାତୁଡିକି ନିର୍ମାଣ କରିଛନ୍ତି । ଏହା ହାତୁଡିଟିର ଉଦ୍ଦେଶ୍ୟ ନୁହେଁ, ହାତୁଡି ନିର୍ମାଣ କରିଥିବା ବ୍ୟକ୍ତିର ଉଦ୍ଦେଶ୍ୟ । ସେହିପରି ଦେହରେ ରକ୍ତ ସଞ୍ଚାଳନ କରିବାକୁ କେହି ହୃତ୍‌ପିଣ୍ଡକୁ ପ୍ରସ୍ତୁତ କରିଛି ବୋଲି କୁହାଯାଇ ପାରିବ କି ? ହୃତପିଣ୍ଡର ଉଦ୍ଦେଶ୍ୟ ପରି ଚକ୍ଷୁ, କାନ, ପାଟି ସବୁର ଉଦ୍ଦେଶ୍ୟ ବି ବାହାର କରାଯାଇ ପାରିବ ଓ କୁହାଯିବ ଯେ କୌଣସି ଈଶ୍ୱର ଉଦ୍ଦେଶ୍ୟ ରଖି ଏହା କରିଛନ୍ତି । ତେବେ ସେପରି ସ୍ଥଳେ ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟାର ବି ଜଟିଳତା ଆସିବ । ହୃତ୍‌ପିଣ୍ଡର ଲକ୍ଷଣ ବା କାର୍ଯ୍ୟକୁ (function) ଉଦ୍ଦେଶ୍ୟ କହି ସେଥିପାଇଁ ଏକ କର୍ତ୍ତାର ଅବତାରଣା କରିବା ଯୁକ୍ତି ଦୃଷ୍ଟିରୁ ଅବୈଧ ଓ ଅସଂଗତ । ଅଧିକନ୍ତୁ ଜଣେ ଦୃଷ୍ଟିହୀନ ବ୍ୟକ୍ତି ବା ଶ୍ରବଣହୀନ ବ୍ୟକ୍ତି ପାଖରେ କାହିଁକି ଏହି ଉଦ୍ଦେଶ୍ୟ ଈଶ୍ୱର ରଖିଲେ ନାହିଁ ପରି ଅନେକ ନୈତିକ ପ୍ରଶ୍ନ ବି ଆସିବ । ମୋଟ ଉପରେ କହିଲେ ମଣିଷର ସ୍ୱେଚ୍ଛାକୃତ କାର୍ଯ୍ୟ କ୍ଷେତ୍ରରେ ଉଦ୍ଦେଶ୍ୟର ପ୍ରଶ୍ନ ଉଠିବ, କିନ୍ତୁ

କୌଣସି ପ୍ରାକୃତିକ ଘଟଣାର ବ୍ୟାଖ୍ୟା କ୍ଷେତ୍ରରେ ବା ଶାରୀରିକ ଅଙ୍ଗର କାର୍ଯ୍ୟକାରିତା କ୍ଷେତ୍ରରେ ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟାନ ଅର୍ଥପୂର୍ଣ୍ଣ ହେବ ନାହିଁ, ଏହା ଅବାନ୍ତର ମନେ ହେବ । କୌଣସି ପ୍ରାକୃତିକ ଘଟଣା ବା ପ୍ରାକୃତିକ ନିୟମ ପଶ୍ଚାତରେ ଉଦ୍ଦେଶ୍ୟର ଆରୋପ କରାଯିବା ବୈଜ୍ଞାନିକ ମାନଦଣ୍ଡରୁ ଅର୍ଥପୂର୍ଣ୍ଣ ନୁହେଁ ।

କେତେକ କ୍ଷେତ୍ରରେ ସାଦୃଶ୍ୟମୂଳକ ବ୍ୟାଖ୍ୟାର ଅବତାରଣା କରାଯାଇ ତାହାକୁ ଭାବୋଦ୍ଦୀପକ ଭାବେ ବ୍ୟକ୍ତ କରାଯାଇଥାଏ । ଏକ ସାଦୃଶ୍ୟମୂଳକ ବ୍ୟାଖ୍ୟାନ ବସ୍ତୁମାନଙ୍କର ମୌଳିକ ଲକ୍ଷଣର ସାଦୃଶ୍ୟ ଆଧାରରେ ଅର୍ଥପୂର୍ଣ୍ଣ ହୋଇପାରେ । କ, ଖ, ଗ ତିନୋଟି ଜଳଚର ପ୍ରଜାତୀୟ ପ୍ରାଣୀ ଓ ସେମାନଙ୍କ ଶରୀରରେ ଶୀତଳ-ରକ୍ତ ପ୍ରବାହିତ । ଘ ବି ଏକ ଜଳଚର ପ୍ରଜାତୀୟ ପ୍ରାଣୀ, ତେଣୁ ତାହାର ରକ୍ତ ଶୀତଳ-ରକ୍ତ ହେବା ସମ୍ଭବ । ଏହି ପ୍ରକାର ବ୍ୟାଖ୍ୟା ଅର୍ଥପୂର୍ଣ୍ଣ ଓ ବୈଜ୍ଞାନିକ । ତେବେ ଯଦି କୁହାଯିବ ମୃତ୍ୟୁ ହେଉଛି ଏକ ପୁରୁଣା ବସ୍ତ୍ରର ପରିତ୍ୟାଗ; ବସ୍ତ୍ରଟି ପୁରୁଣା ହେଲେ ତାହାକୁ ଯେପରି ପରିବର୍ତ୍ତନ କରାଯାଏ, ସେହିପରି ଶରୀରଟି ଅକର୍ମଣ୍ୟ ହେଲେ ଆତ୍ମା ଶରୀରକୁ ପରିତ୍ୟାଗ କରେ । ଏହି ବ୍ୟାଖ୍ୟା ସାଦୃଶ୍ୟମୂଳକ ହେଲେ ମଧ୍ୟ ଏହା ଆଳଙ୍କାରିକ ଓ ଅବୈଜ୍ଞାନିକ । ଏହି ସାଦୃଶ୍ୟ, ତାର୍କିକ ମାନଦଣ୍ଡରୁ ଅବୈଧ ଓ ଅସଂଗତ ।

ମୋଟ ଉପରେ କହିଲେ ଅତିପ୍ରାକୃତିକ ବ୍ୟାଖ୍ୟା, ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟା ଓ ଆଳଙ୍କାରିକ ବ୍ୟାଖ୍ୟା ବୈଜ୍ଞାନିକ ବ୍ୟାଖ୍ୟାର ପରିପନ୍ଥୀ । କୌଣସି ଘଟଣାର ବ୍ୟାଖ୍ୟା କ୍ଷେତ୍ରରେ ଆମେ ଦେଉଥିବା କେତେକ ଜନପ୍ରିୟ ବ୍ୟାଖ୍ୟା ହୁଏ ତ ଆମର ସାଧାରଣ କୌତୂହଳତାକୁ ବେଳେ ବେଳେ ସନ୍ତୁଷ୍ଟ କରିଥାଏ, କିନ୍ତୁ ଏହି ବ୍ୟାଖ୍ୟା ବୈଜ୍ଞାନିକ ବ୍ୟାଖ୍ୟା ହୋଇପାରିବ ନାହିଁ । ବୈଜ୍ଞାନିକ ବ୍ୟାଖ୍ୟା ତଥ୍ୟଭିତ୍ତିକ, ପ୍ରମାଣ ସାପେକ୍ଷ ଓ ନିୟମ ଆଧାରିତ ହେବା ଆବଶ୍ୟକ ।

ବିଭିନ୍ନ ଘଟଣାର ବୈଜ୍ଞାନିକ ବ୍ୟାଖ୍ୟା ପୃଷ୍ଠଭୂମିରେ ବୈଜ୍ଞାନିକ ବ୍ୟାଖ୍ୟାର ଶ୍ରେଣୀକରଣ ତାର୍କିକ ମାନଦଣ୍ଡରୁ କରାଯାଇଛି । ତେବେ ସେହି ବିଷୟର ଜଟିଳତା ଦୃଷ୍ଟିରୁ ତାହାକୁ ଆମେ ଏଠାରେ ଆଲୋଚନାର ପରିସରକୁ ନେବା ନାହିଁ । ବରଂ ବୈଜ୍ଞାନିକ ବ୍ୟାଖ୍ୟାର ସୀମା ବିଷୟରେ ସାମାନ୍ୟ ସୂଚନା ଦେବା ।

ଘଟଣାମାନଙ୍କୁ ନିୟମ ଆଧାରରେ ଓ ଗୋଟିଏ ନିୟମକୁ ଉଚ୍ଚତର ନିୟମ (ଯାହାର ବ୍ୟାଖ୍ୟାର ପରିସର ଅଧିକ having greater explanatory power) ଓ ସେହି ନିୟମକୁ ଏକ ସର୍ବୋଚ୍ଚ ନିୟମ ବା ସିଦ୍ଧାନ୍ତ ଆଧାରରେ ବ୍ୟାଖ୍ୟା କରାଯାଏ । ତେବେ ଯେଉଁ ନିୟମଗୁଡ଼ିକୁ ସର୍ବୋଚ୍ଚ ନିୟମ ମନେ କରାଯାଏ ତାହାର ବ୍ୟାଖ୍ୟା ସମ୍ଭବ ହୋଇନପାରେ । ବସ୍ତୁର ମୌଳିକ ଗଠନ କ୍ଷେତ୍ରରେ ବିଜ୍ଞାନର ବ୍ୟାଖ୍ୟା ଗୋଟିଏ ସ୍ତର ପର୍ଯ୍ୟନ୍ତ ଯିବ ଓ ତାହା ପରେ ତାହାର ବ୍ୟାଖ୍ୟା କରିବା ସମ୍ଭବ ହେବନାହିଁ । ତାହାକୁ ବାସ୍ତବ ଘଟଣା (brute fact) ଭାବରେ ସ୍ୱୀକାର କରିବାକୁ ହେବ । ସେହିପରି ଆମର ମୌଳିକ ଆବେଗକୁ ବ୍ୟାଖ୍ୟା କରାଯାଇ ପାରିବ ନାହିଁ । ସୁଖ, ଦୁଃଖର ଅନୁଭବ, ଯୌନ ଆବେଗ ଇତ୍ୟାଦି ବ୍ୟକ୍ତିଗତ ଅନୁଭବ ଗୁଡିକୁ ସମ୍ଭବତଃ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । ଅବଶ୍ୟ ଥରେ କୌଣସି ନିୟମକୁ ମୌଳିକ ନେବା ପରେ ପୁନଶ୍ଚ ତାର ବ୍ୟାଖ୍ୟା ଖୋଜିବା ବିରୋଧାଭାସ ସୃଷ୍ଟି କରିବ । ଅବଶ୍ୟ କେଉଁ ନିୟମକୁ ମୌଳିକ ବୋଲି ଗ୍ରହଣ କରାଯିବ ତାହା ନେଇ ସ୍ପଷ୍ଟ ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବ ନୁହେଁ । ଏକଦା ନିଉଟନଙ୍କର ମହାକର୍ଷଣ ଶକ୍ତିକୁ ମୌଳିକ ନିଆ ଯାଇଥିଲା, କାରଣ ଏହାର ଆଧାର ଉପରେ ଅନେକ ପ୍ରାକୃତିକ ନିୟମ, ଘଟଣାମାନଙ୍କୁ ବ୍ୟାଖ୍ୟା କରିବା ସମ୍ଭବ ହେଉଥିଲା ।

ତେବେ ପରବର୍ତ୍ତୀ ପର୍ଯ୍ୟାୟରେ ଆଇନଷ୍ଟାଇନଙ୍କର ଆପେକ୍ଷିକ ତତ୍ତ୍ୱ (Theory of Relativity) ମହାକର୍ଷଣ ଶକ୍ତିକୁ ବ୍ୟାଖ୍ୟା କରିବା ସହ ଅନ୍ୟ କେତେକ କ୍ଷେତ୍ରକୁ ମଧ ବ୍ୟାଖ୍ୟା କରିପାରିଲା । ଯେଉଁ ନିୟମ ବା ସିଦ୍ଧାନ୍ତର ପରିସରଟି ଯେତେ ବ୍ୟାପକ ବା ଯାହାର explanatory power ସର୍ବାଧିକ, ତାହା ହିଁ ମୌଳିକ ଏବଂ ଯେତେବେଳେ କୌଣସି ନିୟମକୁ ମୌଳିକ ବୋଲି ନିଆଯାଏ, ତାହାର ବ୍ୟାଖ୍ୟା ସମ୍ଭବ ନୁହେଁ ।

(୪)

ବୈଜ୍ଞାନିକ ବ୍ୟାଖ୍ୟା ଏକ ସାର୍ବଜନୀନ ପ୍ରଣାଳୀ ଉପରେ ଯେ ଆଧାରିତ ଏହାର ସୂଚନା ପୂର୍ବରୁ ଦିଆଯାଇଛି । ଆମେ ପୂର୍ବରୁ ଆଲୋଚନା କରିଛେ ଯେ ବୈଜ୍ଞାନିକ ପ୍ରଣାଳୀ ଆଧାରରେ କରାଯାଉଥିବା ଅନୁଶୀଳନ ନିର୍ଭରଯୋଗ୍ୟ କାରଣ ଏହି ପ୍ରଣାଳୀ ମୁକ୍ତ, ନିରପେକ୍ଷ, ପ୍ରମାଣସାପେକ୍ଷ ଓ ସାର୍ବଜନୀନ । ଏହି ଆଧାରରେ ଜଣେ ବୈଜ୍ଞାନିକ ଭବିଷ୍ୟତ ନେଇ ଅନେକ ପରିକଳ୍ପନା କରିଥାଏ ବା ଭବିଷ୍ୟତର ଘଟଣାମାନଙ୍କର ବ୍ୟାଖ୍ୟା କରିଥାଏ । ଆବିଷ୍କୃତ ମୌଳିକ ବସ୍ତୁମାନଙ୍କର ସ୍ୱରୂପ ବ୍ୟାଖ୍ୟା କରିବା ପୃଷ୍ଠଭୂମିରେ କେତେକ ମୌଳିକ ବସ୍ତୁର ଆବିଷ୍କାର ପୂର୍ବରୁ ସେମାନଙ୍କର ଅବସ୍ଥିତି ନେଇ ବିଜ୍ଞାନରେ ପରିକଳ୍ପନା ପ୍ରକାଶ ପାଇଥିଲା । ଜଣେ ରସାୟନବିତ୍ ଗାଲିଅମ୍, ସ୍କାଣ୍ଡିୟମ ଓ ଜର୍ମାନିୟମ ମୌଳିକ ବସ୍ତୁମାନଙ୍କର ଆବିଷ୍କାରର ବହୁ ପୂର୍ବରୁ ସେମାନଙ୍କ ସ୍ଥିତି ଥିବା ଦର୍ଶାଇ ସେ ତାଙ୍କ ପିରିୟଡ଼ିକ ଟେବୁଲରେ ତାହାକୁ ସ୍ଥାନିତ କରିଥିଲେ । ଗ୍ରହ ମଣ୍ଡଳର ଅନୁଶୀଳନ ଦ୍ୱାରା ଚନ୍ଦ୍ରକୁ ଯିବାର ବହୁ ପୂର୍ବରୁ ଚନ୍ଦ୍ରପୃଷ୍ଠରେ ବସ୍ତୁର ଓଜନ ପୃଥିବୀ ପୃଷ୍ଠର ଓଜନର ଏକ ଷଷ୍ଠାଂଶ ବୋଲି କଳ୍ପନା କରାଯାଇଥିଲା । ସେହି ଜ୍ଞାନ ଆଧାରରେ ଚନ୍ଦ୍ର ଅଭିଯାନ ସଫଳ ହେଲା । ବିଜ୍ଞାନର ପ୍ରଣାଳୀ ଅବଲମ୍ବନ କରି କେଉଁ ଜାଗାରେ କେଉଁ ପ୍ରାକୃତିକ ସମ୍ପଦ କେତେ ପରିମାଣରେ ରହିଛି ତାହା ସଂପ୍ରତି ଅନାୟାସରେ କୁହାଯାଇପାରୁଛି । ସେହିପରି ଏକ ଝଡ଼ ବା ବାତ୍ୟାର ଗତିପଥ କିପରି ହେବ ତାହାକୁ ନିର୍ଭରଯୋଗ୍ୟ ଭାବେ ଜଣାଯାଇପାରୁଛି । ଅର୍ଥାତ୍ ବୈଜ୍ଞାନିକ ପଦ୍ଧତି ପ୍ରୟୋଗ କରି ଭବିଷ୍ୟତର କେତେକ ଘଟଣା ବିଷୟରେ ସ୍ପଷ୍ଟ ଭାବେ ଜାଣିବା ସମ୍ଭବ ହୋଇପାରୁଛି । ବିଜ୍ଞାନ ଭବିଷ୍ୟ ବିଷୟରେ ଯେଉଁ ସୂଚନା ଦେଉଛି ତାହା ଯେ ସଂପୂର୍ଣ୍ଣ ଭାବେ ସତ୍ୟ ହେଉଛି ଏହା ବୈଜ୍ଞାନିକ ପଦ୍ଧତିର ନିର୍ଭରଶୀଳତାର ପ୍ରମାଣ ଦିଏ । (A scientific fact, based on scientific method can make acurate testable prediction) ।

ଉପସଂହାରରେ, ବୈଜ୍ଞାନିକ ବ୍ୟାଖ୍ୟାର ଆଧାର ହେଉଛି ଏହାର ସାର୍ବଜନୀନ ପ୍ରଣାଳୀ । ଏହି ପ୍ରଣାଳୀକୁ ସ୍ୱୀକାର କରିବା ଦ୍ୱାରା ବୈଜ୍ଞାନିକ ଚିନ୍ତନ ଓ ଅନୁଶୀଳନ ସମ୍ଭବ । ଯେଉଁ ଜ୍ଞାନ ଏହି ପ୍ରଣାଳୀ ଦ୍ୱାରା ପ୍ରାପ୍ତ ତାହା ସତ୍ୟର ସମୀପବର୍ତ୍ତୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ବସ୍ତୁତଃ ଯେଉଁ ଜ୍ଞାନ ଏହି ପଦ୍ଧତିରେ ହୋଇନାହିଁ ତାହାର କୌଣସି ପ୍ରାମାଣିକତା ନାହିଁ । ବୈଜ୍ଞାନିକ ପ୍ରଣାଳୀ ଦ୍ୱାରା ହିଁ ପ୍ରାକୃତିକ ପରିବେଶ ଓ ସାମାଜିକ ଘଟଣା ପ୍ରବାହକୁ ବ୍ୟାଖ୍ୟା କରିବା ସମ୍ଭବ । ବୈଜ୍ଞାନିକ ପ୍ରଣାଳୀ ଯେଉଁଠି ପ୍ରୟୋଗ ହେଉନାହିଁ ତାହା କୌଣସି ବସ୍ତୁନିଷ୍ଠ ଜ୍ଞାନ ଦେବା ସମ୍ଭବ ନୁହେଁ । ଜୀବନର ପ୍ରତ୍ୟେକ ସ୍ତରରେ ଓ ସାମାଜିକ ଘଟଣା ପ୍ରବାହରେ ସତ୍ୟ ଜାଣିବାକୁ ହେଲେ ଏହି ପଦ୍ଧତିକୁ ଭିତ୍ତି ଭାବରେ ନେବାକୁ ହେବ ।

ଏହି ପୃଷ୍ଠଭୂମିରେ ଦେଖିଲେ ଫଳିତ ଜ୍ୟୋତିଷ, ହସ୍ତବିଦ୍ୟା, ଗୂଢ଼ ବିଦ୍ୟା, ମନ୍ତ୍ର, ତନ୍ତ୍ର, ବାସ୍ତୁ ଇତ୍ୟାଦି ସଂପୂର୍ଣ୍ଣ ଅବୈଜ୍ଞାନିକ । କାରଣ ଏହି ପ୍ରକାରର ଭାବନା ଗୁଡିକ କୌଣସି ବୈଜ୍ଞାନିକ ପଦ୍ଧତି ଅବଲମ୍ବନ କରନ୍ତି ନାହିଁ । ସେମାନଙ୍କ

କ୍ଷେତ୍ରରେ ହେଉଥିବା ସାମାନ୍ୟୀକରଣମାନ କୌଣସି ପରସ୍ପର ସଂଯୋଜିତ କ୍ରମ ବା ତନ୍ତ୍ର(order and system) ଉପରେ ଆଧାରିତ ନୁହେଁ । ସେଗୁଡ଼ିକ କେବଳ ମିଥ୍ୟା-ବିଜ୍ଞାନ ବା pseudo science କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୁନଶ୍ଚ କେତେକ ଭାବିଥାନ୍ତି ଯେ ବିଜ୍ଞାନର ଯେଉଁଠି ଶେଷ ହୁଏ, ସେଠାରୁ ଦାର୍ଶନିକ ତତ୍ତ୍ୱ ଆରମ୍ଭ ହୁଏ । (Metaphysics begins where physics ends) । ଏହା ମଧ୍ୟ ସଂପୂର୍ଣ୍ଣ ରୂପେ ଏକ ଅବାନ୍ତର ଧାରଣା । ତତ୍ତ୍ୱମୀମାଂସା ଦର୍ଶନ ପରିସରରେ ଆଲୋଚିତ ହୋଇଥାଏ । ତାତ୍ତ୍ୱିକ ପ୍ରଶ୍ନଗୁଡ଼ିକ ପ୍ରତ୍ୟୟଗତ ପ୍ରଶ୍ନ ଓ ଅନେକ ସମୟରେ ଜଗତ ସଂପର୍କୀୟ ବକ୍ତବ୍ୟ ଗୁଡ଼ିକ ଛଦ୍ମ - ବକ୍ତବ୍ୟ । ମାଟିର ସୃଷ୍ଟି କିପରି- ଏକ ବୈଜ୍ଞାନିକ ପ୍ରଶ୍ନ, କିନ୍ତୁ ଏ ବିଶ୍ୱକୁ କିଏ ସୃଷ୍ଟି କରିଛି - ଏକ ତାତ୍ତ୍ୱିକ ପ୍ରଶ୍ନ । ଶରୀରରେ ରକ୍ତ ସଞ୍ଚାଳନ କିପରି ହୁଏ ବା ଦେହରେ କେତେ ଖଣ୍ଡ ହାଡ଼ ଅଛି- ଏକ ବୈଜ୍ଞାନିକ ପ୍ରଶ୍ନ, କିନ୍ତୁ ଆତ୍ମାର ସ୍ୱରୂପ କ'ଣ - ଏକ ତାତ୍ତ୍ୱିକ ପ୍ରଶ୍ନ । ପ୍ରତ୍ୟେକଟି ବୈଜ୍ଞାନିକ ପ୍ରଶ୍ନର ଉତ୍ତର ସୁନିର୍ଦ୍ଦିଷ୍ଟ ଓ ବିଜ୍ଞାନରେ ପରସ୍ପର ବିରୋଧୀ ବ୍ୟାଖ୍ୟାର ସ୍ଥାନ ହିଁ ନାହିଁ । କିନ୍ତୁ ତାତ୍ତ୍ୱିକ ବିଚାର ସ୍ତରରେ ନାନା ପରସ୍ପରବିରୋଧୀ ସିଦ୍ଧାନ୍ତମାନ ଦେଖିବାକୁ ମିଳେ । ଆତ୍ମାର ସ୍ୱରୂପ କିପରି ପ୍ରଶ୍ନଟିକୁ ନେଇ ନାନା କଳ୍ପନା ଜଳ୍ପନା ଦେଇ ନାନା ମତ ରହିଛି । ତତ୍ତ୍ୱ ମୀମାଂସା କ୍ଷେତ୍ରରେ ଗୋଟିଏ ପ୍ରଶ୍ନକୁ ନେଇ ନାନା କାଳ୍ପନିକ ସିଦ୍ଧାନ୍ତର ଅବତାରଣା ଦେଖିବାକୁ ମିଳେ । ଏଗୁଡିକ ଯେହେତୁ କାଳ୍ପନିକ ଅବଧାରଣା (Speculation) ଏମାନଙ୍କ କ୍ଷେତ୍ରରେ କୌଣସି ସହମତି ରହିପାରେ ନାହିଁ । ସେହିପରି ଅନ୍ତିମ ସତ୍ତାର ସ୍ୱରୂପ ବା ଈଶ୍ୱରଙ୍କ ଭାବନା ନେଇ ନାନା ପରସ୍ପର ବିରୋଧୀ ମତ ତତ୍ତ୍ୱମୀମାଂସା ପରିସରରେ ଦେଖିବାକୁ ମିଳେ । ଆଧୁନିକ ଯୁଗର ଦାର୍ଶନିକ ଅନୁଶୀଳନରେ ତତ୍ତ୍ୱାମୀମାଂସା ଅର୍ଥହୀନ ଓ ଜଗତ ବିଷୟରେ ଛଦ୍ମକଥନ (pseudo statements) ମାତ୍ର । ଏଗୁଡିକ ଜଟିଳ ପ୍ରତ୍ୟୟଗତ ସମସ୍ୟାରୁ ସୃଷ୍ଟି ହୋଇଥାଏ । ତାତ୍ତ୍ୱିକ ସମସ୍ୟା ଗୁଡିକ ଛବିଳ ଚିନ୍ତନ, ବାକ୍ -ବିସ୍ତାର (extrapolation), ଭାଷାଗତ ଜଟିଳତା, ତାର୍କିକ ତ୍ରୁଟି ଯୋଗୁଁ ସମ୍ଭବ ହୋଇଥାଏ ବୋଲି ବିଂଶ ଶତାବ୍ଦୀର ଦାର୍ଶନିକ ଧାରାରେ ବେଶ୍ ସ୍ପଷ୍ଟ । ସେଗୁଡ଼ିକ ଜଗତ ବିଷୟରେ କୌଣସି ଜ୍ଞାନ ଦିଅନ୍ତି ନାହିଁ, ସେମାନେ କେବଳ ପ୍ରତ୍ୟୟଗତ ଜଟିଳତା ସୃଷ୍ଟି କରନ୍ତି ଓ କଳ୍ପନା ଜଗତରେ ମଣିଷକୁ ଘୂରାଇଥାନ୍ତି । ସୁତରାଂ ଜଗତ ବିଷୟକ ଜ୍ଞାନ ଦର୍ଶନ ଦେଇପାରେ ନାହିଁ, ବିଜ୍ଞାନ ଦିଏ । ଦର୍ଶନର ଲକ୍ଷ୍ୟ, ପରିସର ଓ ବିଷୟ ଭିନ୍ନ । ତତ୍ତ୍ୱମୀମାଂସା ସାଂପ୍ରତିକ ଅନ୍ୱେଷାରେ ଆଧାରହୀନ, ଅର୍ଥଶୂନ୍ୟ ଓ ଛଦ୍ମକଥନ ।

ପ୍ରଶ୍ନ ଉଠେ : ବିଜ୍ଞାନରେ କ'ଣ ପରସ୍ପର ବିରୋଧୀ ସିଦ୍ଧାନ୍ତ ବା ନିୟମ ନାହିଁ ? ପ୍ରାୟତଃ ନାହିଁ । ଯେଉଁଠି କୌଣସି ଘଟଣାର କାରଣ ନେଇ ସ୍ପଷ୍ଟ ପ୍ରମାଣ ମିଳିପାରୁନାହିଁ, ସେଠାରେ କୌଣସି ଘଟଣାର ବ୍ୟାଖ୍ୟା ପାଇଁ ବିଭିନ୍ନ ପ୍ରକଳ୍ପର ପରିକଳ୍ପନା କରାଯାଏ ଓ ସେଗୁଡ଼ିକର ପରୀକ୍ଷା ପରେ ସତ୍ୟକୁ ଗ୍ରହଣ କରାଯାଏ । ଥରେ ଏକ ପ୍ରକଳ୍ପ ପ୍ରମାଣିତ ହେବା ପରେ ଅନ୍ୟ ସମ୍ଭାବ୍ୟ କାରଣଗୁଡିକୁ ବାଦ୍ ଦିଆଯାଏ । କୌଣସି ଜଟିଳ ଘଟଣାର କାରଣ ନେଇ ନାନା ସମ୍ଭାବ୍ୟ କାରଣ ବା ପ୍ରକଳ୍ପ ଚିନ୍ତା କରାଯାଇପାରେ, କିନ୍ତୁ ବିଜ୍ଞାନ କ୍ଷେତ୍ରରେ ପରସ୍ପର ବିରୋଧୀ ନିୟମ ବା ସିଦ୍ଧାନ୍ତ ରହିପାରିବ ନାହିଁ ।

ବସ୍ତୁତଃ ବୈଜ୍ଞାନିକ ବ୍ୟାଖ୍ୟା ଯେଉଁ ପ୍ରଣାଳୀ ଉପରେ ଆଧାରିତ ତାହା ସାର୍ବଜନୀନ ଓ ସେହି ପ୍ରଣାଳୀ ପ୍ରୟୋଗରେ ହିଁ ବିଜ୍ଞାନର ଦିଗନ୍ତ ବିସ୍ତାର ଲାଭ କରିଚାଲିଛି । ଏହି ପ୍ରଣାଳୀକୁ ବାଦ୍ ଦେଇ ଜଗତ ସଂପର୍କିତ ଜ୍ଞାନ ନିର୍ଭରଯୋଗ୍ୟ ହେବା ସମ୍ଭବ ନୁହେଁ ।



# କର୍ମସିଦ୍ଧାନ୍ତ : ଏକ ବିଶ୍ଲେଷଣ

କର୍ମ ଓ କର୍ମଫଳ କହିଲେ ଯଥାର୍ଥରେ କ'ଣ ବୁଝାଏ ? ପ୍ରତ୍ୟେକ ବ୍ୟକ୍ତି କ'ଣ ତାର କର୍ମଫଳ ଭୋଗ କରିଥାଏ ? କର୍ମର ଫଳ କ'ଣ ଅଲଂଘ୍ୟ ? ପ୍ରତ୍ୟେକ କର୍ମର କ'ଣ ଫଳ ଅଛି ? ଏହିସବୁ ପ୍ରଶ୍ନ ଗୁଡ଼ିକ ଉପରେ ଭାରତୀୟ ଦର୍ଶନ ପରିସରରେ ଅନେକ ଗମ୍ଭୀର ଚର୍ଚ୍ଚା ଦେଖିବାକୁ ମିଳେ । ଜଣେ ସାଧାରଣ ମଣିଷ ବି ଏସବୁ ପ୍ରସଙ୍ଗକୁ ନେଇ କେତେକ ବିଶ୍ୱାସ ଦ୍ୱାରା ପରିଚାଳିତ ହୁଏ । ସାଧାରଣ ମଣିଷଟିଏ ଭାବିଥାଏ ଯେ ତାର ଜୀବନର ସଫଳତା ବା ବିଫଳତା ପଶ୍ଚାତରେ ତାର କର୍ମଫଳ ନିହିତ । କର୍ମର ଫଳ ଅଲଂଘନୀୟ ଯାହା କେହି ଅତିକ୍ରମ କରିପାରିବେ ନାହିଁ । କର୍ମଫଳ ସହିତ ଭାଗ୍ୟ, ଦୈବୀବିଧାନ, ପୂର୍ବନିର୍ଦ୍ଦିଷ୍ଟବାଦ, ଅପୂର୍ବ, ଅଦୃଷ୍ଟ, ପରଜନ୍ମ, ଆତ୍ମା ଇତ୍ୟାଦି ଭାବନା ମଧ୍ୟ ସଂଶ୍ଳିଷ୍ଟ । ଏ ପ୍ରତ୍ୟେକଟି ଭାବନାକୁ ନେଇ ବହୁ ତାତ୍ତ୍ୱିକ ପ୍ରସଙ୍ଗ ଜଡ଼ିତ ଓ ଏସବୁ ଉପରେ ବିସ୍ତୃତ ଆଲୋଚନା ଦେଖିବାକୁ ମିଳେ । ତେବେ ଏଠାରେ ଆମେ ତାତ୍ତ୍ୱିକ ଜଟିଳତା ମଧ୍ୟକୁ ପ୍ରବେଶ ନକରି କର୍ମ ଓ କର୍ମଫଳ ବିଷୟରେ କେତେକ ସାଧାରଣ ପ୍ରଶ୍ନକୁ ନେଇ ଆଲୋଚନା କରିବା ।

(୧)

ଭାରତୀୟ ଦର୍ଶନ ପୃଷ୍ଠଭୂମିରେ ବୈଶେଷିକ ଦର୍ଶନରେ କର୍ମର ଏକ ବୈଷୟିକ ଅର୍ଥ ରହିଛି । ଏହାନୁଯାୟୀ ଜଗତରେ ମୌଳିକତଃ ସାତଟି ତତ୍ତ୍ୱ ବା ପଦାର୍ଥ ରହିଛି, ସେ ମଧ୍ୟରୁ କର୍ମ ଏକ ପଦାର୍ଥ ବା ତତ୍ତ୍ୱ । ଏଠାରେ କର୍ମର ଅର୍ଥ ଗତିଶୀଳତା, ଯାହା ଯୋଗୁଁ ବସ୍ତୁମାନଙ୍କର ସ୍ଥାନାନ୍ତର ସମ୍ଭବ । କର୍ମର ଏହି ବୈଷୟିକ ଅର୍ଥକୁ ବାଦ୍ ଦେଲେ କର୍ମର ତାତ୍ପର୍ଯ୍ୟ ହେଉଛି ଜଣେ ବ୍ୟକ୍ତି ଯାହା ଇଚ୍ଛାକୃତ ଭାବେ କରିଥାଏ । ଏହାନୁଯାୟୀ ଜଣେ ବ୍ୟକ୍ତି ବା କର୍ତ୍ତା ଏକ ଲକ୍ଷ୍ୟ ନେଇ ଯେଉଁ କାର୍ଯ୍ୟ ଇଚ୍ଛାକୃତ ଭାବେ କରିଥାଏ ତାହା ହେଲା କର୍ମ । ଜଣେ କର୍ତ୍ତା ଜୀବନକାଳ ଭିତରେ କରୁଥିବା ଯାବତୀୟ ଇଚ୍ଛାକୃତ କାର୍ଯ୍ୟ ହେଉଛି ତାର କର୍ମ । କର୍ମ ଭଲ ହୋଇପାରେ, ନୀତିଯୁକ୍ତ ହୋଇପାରେ କିମ୍ବା ମନ୍ଦ ବା ଅନୈତିକ ହୋଇପାରେ । କର୍ମମାନଙ୍କର ନୈତିକ ମୂଲ୍ୟାୟନ ପୃଷ୍ଠଭୂମିରେ ସେମାନଙ୍କୁ ଦୁଇ ଶ୍ରେଣୀରେ ବିଭାଜନ କରାଯାଇପାରେ ଯଥା ସୁକର୍ମ ବା ଶୁଭକର୍ମ ଓ କୁକର୍ମ ବା ଦୁଷ୍କର୍ମ । ଯାହା ନୈତିକ ବିଧାନ ଅନୁଯାୟୀ କରାଯାଏ ତାହା ସୁକର୍ମ ଓ ଯାହା ନୀତିବିରୋଧୀ ତାହା କୁକର୍ମ । ଅର୍ଥାତ୍ ଜଣେ ବ୍ୟକ୍ତିର ଜୀବନକାଳର ସମସ୍ତ ଇଚ୍ଛାକୃତ କର୍ମମାନ ଭଲ ମନ୍ଦ ମାନଦଣ୍ଡରୁ ସୁକର୍ମ ବା ଦୁଷ୍କର୍ମ ହୋଇପାରେ ।

କର୍ମ ଏକ ଘଟଣା ନୁହେଁ, ବା ଅନ୍ୟ ଭାବରେ କହିଲେ କର୍ମ ଓ ଘଟଣା ଭିତରେ ପାର୍ଥକ୍ୟ ରହିଛି । ଖେଳିବା, ପଢ଼ିବା, ଜନସେବା କରିବା, ଚୋରି କରିବା ଗୋଟିଏ ଗୋଟିଏ କର୍ମ ଓ ପ୍ରତ୍ୟେକ କର୍ମ ସହ କର୍ତ୍ତା ସଂଶ୍ଳିଷ୍ଟ । କର୍ତ୍ତା ନ ଥାଇ କର୍ମ ଚିନ୍ତା କରାଯାଇନପାରେ । କିନ୍ତୁ ଏକ ଘଟଣା କ୍ଷେତ୍ରରେ କର୍ତ୍ତା ନଥାଏ । ଖରା ହେବା, ଘଡ଼ଘଡ଼ି ମାରିବା, ପବନ

ବହିବା, ଋତୁ ବଦଳିବା ଇତ୍ୟାଦି ପ୍ରାକୃତିକ ଘଟଣା ଓ ଏକ ଘଟଣା ପଶ୍ଚାତରେ କୌଣସି କର୍ତ୍ତାର ହାତ ନିହିତ ନଥାଏ । ଗୋଟିଏ ପ୍ରାକୃତିକ ଘଟଣା ପଶ୍ଚାତରେ କିଛି ପ୍ରାକୃତିକ କାରଣ ଥାଏ । କର୍ମ କ୍ଷେତ୍ରରେ କର୍ତ୍ତା ରହିବା ସହିତ କର୍ତ୍ତାର ଉଦ୍ଦେଶ୍ୟ ନିହିତ ଥାଏ । ପୁନଶ୍ଚ ଏକ କର୍ମ କ୍ଷେତ୍ରରେ ଏକ କର୍ତ୍ତାର ଶାରୀରିକ କ୍ରିୟା ନିହିତ ଥାଏ । ଶାରୀରିକ କ୍ରିୟା ନଥାଇ କର୍ମ କରାଯାଇ ନପାରେ । ନାଚିବା, ପଢ଼ିବା, ପଢ଼ାଇବା, ଖେଳିବା ଇତ୍ୟାଦି କାର୍ଯ୍ୟ ସମୟରେ ଶାରୀରିକ ଓ ମାନସିକ ପ୍ରକ୍ରିୟାର ପ୍ରତିଫଳନ ହୋଇଥାଏ । ତେବେ ଶାରୀରିକ କ୍ରିୟା ଅଭାବରେ ଏକ ମାନସିକ ପ୍ରକ୍ରିୟାକୁ କର୍ମ କୁହାଯାଇ ପାରିବ କି ନାହିଁ ? ଯଦି କର୍ମ ସହ ଏକ ଉଦ୍ଦେଶ୍ୟକୁ ସଂଶ୍ଳିଷ୍ଟ କରାଯିବ, ତେବେ ଭାବିବା, ଚିନ୍ତା କରିବାକୁ ମଧ୍ୟ କର୍ମଭାବରେ ନିଆଯିବ କାରଣ ଏ କ୍ଷେତ୍ରରେ ବି କର୍ତ୍ତାର ଉଦ୍ଦେଶ୍ୟ ରହିଥାଏ । ଜଣେ କର୍ତ୍ତା ଯେହେତୁ ଉଦ୍ଦେଶ୍ୟମୂଳକ ଭାବେ ମାନସିକ କ୍ରିୟା ସଂପାଦନ କରେ ତେଣୁ ସେ ସବୁକୁ ମଧ୍ୟ କର୍ମର ପରିସର ଭିତରେ ଅଣାଯାଇପାରେ ଯଦିବା ଏ କ୍ଷେତ୍ରରେ ଦୃଶ୍ୟମାନ ଶାରୀରିକ କ୍ରିୟା ସଂଶ୍ଳିଷ୍ଟ ନଥାଏ । ପହଁରିବା, ନାଚ କରିବା, ଗାଡ଼ି ଚଳାଇବା, ଭାଷଣ ଦେବା ଇତ୍ୟାଦି କ୍ଷେତ୍ରରେ ଯେଉଁପରି ଶାରୀରିକ କ୍ରିୟା ସଂଯୁକ୍ତ ଥାଏ ଭାବିବା, ଚିନ୍ତାରେ ନିମଗ୍ନ ହେବା, କଳ୍ପନା କରିବା ଇତ୍ୟାଦି କ୍ଷେତ୍ରରେ ସେପରି କ୍ରିୟା ସଂଶ୍ଳିଷ୍ଟ ନଥାଏ । ମୋଟ ଉପରେ କର୍ମ ସହ କର୍ତ୍ତା, କର୍ତ୍ତାର ଉଦ୍ଦେଶ୍ୟ ଓ କର୍ତ୍ତାର ଶାରୀରିକ, ମାନସିକ ବା ଉଭୟ ଅଭିବ୍ୟକ୍ତି ନିହିତ ରହିବା ଅବଶ୍ୟମ୍ଭାବୀ ମନେ ହୁଏ ।

ଯେଉଁଠି କର୍ତ୍ତା ଉଦ୍ଦେଶ୍ୟମୂଳକ ଭାବେ କିଛି କରେ ତାହା ତାର କର୍ମ ହେଲେ ସେ କ୍ଷେତ୍ରରେ କର୍ତ୍ତାର ସ୍ୱାଧୀନତା ବା ସ୍ୱତନ୍ତ୍ରତାର ପ୍ରଶ୍ନ ଜଡ଼ିତ ହୁଏ । କର୍ତ୍ତା ପାଖରେ ବିଭିନ୍ନ ସମ୍ଭାବନା ଥିଲେ ଓ କର୍ତ୍ତା ଯେଉଁ ପନ୍ଥା ଅବଲମ୍ବନ କରିବ ସେ କ୍ଷେତ୍ରରେ ସେ ସ୍ୱାଧୀନ ଭାବରେ ନିଷ୍ପତ୍ତି ନେଇ ପାରୁଥିଲେ ସେ କ୍ଷେତ୍ରରେ ତାହାର ଉଦ୍ଦେଶ୍ୟ ଭଲ କି ମନ୍ଦ ତାହାର ମୂଲ୍ୟାୟନ କରାଯିବା ସମ୍ଭବ । ଯଦି ଏକ ପରିସ୍ଥିତିରେ କର୍ତ୍ତା ନିଷ୍ପତ୍ତି ନେବାର ସମ୍ଭାବନା ନଥାଏ ଓ ସେ ବାଧ ବାଧକତାରେ କିଛି କାର୍ଯ୍ୟ କରେ ତାହା କ୍ଷେତ୍ରରେ କର୍ତ୍ତାର ଉଦ୍ଦେଶ୍ୟର ମୂଲ୍ୟାୟନ ସମ୍ଭବ ନୁହେଁ । ବରଂ ଯେଉଁଠି ବିଭିନ୍ନ ସମ୍ଭାବନା ଭିତରୁ ଜଣେ ଗୋଟିଏ କାର୍ଯ୍ୟକୁ ନିଷ୍ପତ୍ତିମୂଳକ ଭାବେ ସ୍ଥିର କରିଥାଏ ସେଠାରେ କର୍ତ୍ତାର ଉତ୍ତରଦାୟିତ୍ୱର ପ୍ରଶ୍ନ ଉଠିଥାଏ । ସନ୍ଧ୍ୟାବେଳେ ଜଣେ ପଢ଼ିବ, ଟିଭି ଦେଖିବ, ସାଙ୍ଗଙ୍କ ମେଳରେ ଖେଳିବ ବା ସିନେମା ହଲକୁ ଯିବ ଏ ନିଷ୍ପତ୍ତି ତାଙ୍କ ଉପରେ ନିର୍ଭର କରେ । ନିଷ୍ପତ୍ତିମୂଳକ ଭାବରେ ଜଣେ ଯାହା କରେ ତାର ଭଲ ମନ୍ଦ ପରିଣତି ପାଇଁ ସେ ଉତ୍ତରଦାୟୀ । ତେବେ ଯେଉଁ କ୍ଷେତ୍ରରେ କର୍ତ୍ତା ପାଖରେ କୌଣସି ନିଷ୍ପତ୍ତି ନେବାର ସମ୍ଭାବନା ନଥାଏ ସେଠାରେ ନୈତିକ ମୂଲ୍ୟାୟନର ପ୍ରଶ୍ନ ଜଡିତ ହୁଏ ନାହିଁ ବା ଉତ୍ତରଦାୟିତ୍ୱର ପ୍ରଶ୍ନ ସଂଶ୍ଳିଷ୍ଟ ହୁଏ ନାହିଁ । ବରଂ କର୍ତ୍ତାର ସ୍ୱାଧୀନତା ରହିବା, ନିଷ୍ପତ୍ତି ନେବାର ଅଧିକାର ଥିବା ଓ ବିଭିନ୍ନ ସମ୍ଭାବନା ଯୁକ୍ତ ପରିସ୍ଥିତିରୁ ନିର୍ଦ୍ଦିଷ୍ଟ ପନ୍ଥାକୁ ଲକ୍ଷ୍ୟ ପୂରଣ ଦିଗରେ ବିନିଯୋଗ କରିବାର ପରିସ୍ଥିତିରୁ ଉତ୍ତରଦାୟିତ୍ୱର ପ୍ରସଙ୍ଗ ଆସିଥାଏ । ତେବେ ଏକ ପରିସ୍ଥିତିରେ ଜଣେ କେଉଁ ପ୍ରକାର ନିଷ୍ପତ୍ତିକୁ ଆସିବ ତାହା ଜଣଙ୍କର ଦୃଷ୍ଟିଭଙ୍ଗୀ, ମାନସିକ ସାମର୍ଥ୍ୟ, ବିଚାରଶୀଳତା, ଶିକ୍ଷା ସଚେତନତା ଇତ୍ୟାଦି ନାନାବିଧ କାରଣ ଉପରେ ନିର୍ଭର କରିଥାଏ । ଏକ ଜଟିଳ ପାରିବାରିକ ସମସ୍ୟା ଭିତରେ ଅତ୍ୟନ୍ତ ଭାରାକ୍ରାନ୍ତ ହେଉଥିବା ଜଣେ ବ୍ୟକ୍ତି ବିଭିନ୍ନ ପନ୍ଥାରେ ନିଜର ପରିସ୍ଥିତିକୁ ମୁକାବିଲା କରିବାକୁ ପ୍ରୟାସ କରିଥାଏ । ସେ ନିଜ ବିଶ୍ୱାସର କେଉଁ ଦିଅଁଙ୍କ ପାଖକୁ ଯାଇ ପୂଜା ପାଠରେ ମନ ଦେଇପାରେ, ସାଙ୍ଗମାନଙ୍କ ଗହଣରେ ବସି ଗପସପରେ ସମୟ ବିତାଇପାରେ, ମଦ ପିଇପାରେ ବା ସେପରି କିଛି

ପନ୍ଥାରେ ନିଜକୁ ସଂପୃକ୍ତ କରାଇପାରେ । ଗୋଟିଏ କାର୍ଯ୍ୟ କରିବାରେ ଜଣଙ୍କର ନିଷ୍ପତ୍ତି କ୍ଷେତ୍ରରେ ତାଙ୍କର ରୁଚି, ଦୃଷ୍ଟିଭଙ୍ଗୀ, ଶିକ୍ଷା, ବିଚାରଶୀଳତାର ପ୍ରଭାବ ରହିଥାଏ ।

ବ୍ୟକ୍ତିମାନଙ୍କର କର୍ମର ଗୁଣାତ୍ମକ ମୂଲ୍ୟକୁ ନେଇ ସେମାନଙ୍କୁ ବିଭିନ୍ନ ମାନଦଣ୍ଡରେ ଶ୍ରେଣୀ ବିଭାଜନ କରାଯାଇପାରେ । ଖାଇବା, ଖେଳିବା, ଖବର କାଗଜ ପଢ଼ିବା, ସାଙ୍ଗମାନଙ୍କ ସହ ଭୋଜି କରିବା ଇତ୍ୟାଦି କାର୍ଯ୍ୟକୁ ଅତି ସାଧାରଣ ଭାବେ ନିଆଯାଏ । ପ୍ରତ୍ୟେକ ବ୍ୟକ୍ତି ଏହି ପ୍ରକାର କର୍ମ ଢ଼େର ଅଧିକ କରିଥାଏ । ସୁତରାଂ ଏସବୁ କାର୍ଯ୍ୟ ଏତେ ମହତ୍ତ୍ୱପୂର୍ଣ୍ଣ ମନେହୁଏ ନାହିଁ । ତେବେ କେତେକ କାର୍ଯ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ମନେ ହୋଇପାରେ । ଗୋଟିଏ ସାମାଜିକ ବିପ୍ଳବ ପାଇଁ ଜୀବନକୁ ଉତ୍ସର୍ଗ କରିବା, କିଛି ଗୁରୁତର ବ୍ୟାଧିର ଚିକିତ୍ସା ବାହାର କରିବା ପାଇଁ ନିଜର ସୁଖ ସମ୍ଭୋଗକୁ ପରିତ୍ୟାଗ କରି ବିଜ୍ଞାନଗାରରେ ଅବିଶ୍ରାନ୍ତ ପରିଶ୍ରମ କରିବା, ଦୁଃସ୍ଥ ମଣିଷର ସେବା ପାଇଁ ଅବିବାହିତ ରହିବା, ଅନ୍ୟର ମାନବିକ ଅଧିକାର ପାଇଁ ସଂଗ୍ରାମ କରିବା ଇତ୍ୟାଦି ମହତ୍ତର କାର୍ଯ୍ୟ ଭାବେ ସୂଚିତ ହୋଇଥାଏ । କେତେକ କର୍ମ କ୍ଷେତ୍ରରେ ପ୍ରବୃତ୍ତିଗତ ଆବେଗର ପ୍ରାଧାନ୍ୟ ଥିବା ବେଳେ କେତେକ କ୍ଷେତ୍ରରେ ବିଚାରଶୀଳ ଆତ୍ମ ବିଶ୍ୱାସର ପ୍ରାଧାନ୍ୟ ରହିଥାଏ । ଯେଉଁଠି ଆବେଗିକ ପ୍ରବୃତ୍ତିର ପ୍ରାଧାନ୍ୟ ରହିଥାଏ, ତାହା ସାଧାରଣ କାର୍ଯ୍ୟ ହେବା ବେଳେ ଯେଉଁଠି ଦୃଢ଼ ଆତ୍ମ ପ୍ରତ୍ୟୟ ଜନିତ ବିଚାରଶୀଳତା ରହିଥାଏ ଓ ଯାହା ବୃହତ୍ତର ଲକ୍ଷ୍ୟ ଦିଗରେ ଅଭିପ୍ରେତ ଥାଏ ତାହା ମହତ୍ତର ହୋଇଥାଏ । ବ୍ୟକ୍ତିର ସାମାଜିକ ଦୃଷ୍ଟିଭଙ୍ଗୀ, ସଂସ୍କାରବାଦୀ ଚେତନା, ଉଚ୍ଚ ମାନବିକ ସମ୍ବେଦନଶୀଳତା, ପାରିବାରିକ ସଂସ୍କାର ଇତ୍ୟାଦି ବ୍ୟକ୍ତି ଭିତରେ ମହତ୍ତର କର୍ମ ପାଇଁ ପ୍ରେରଣା ସୃଷ୍ଟି କରିଥାଏ ।

କର୍ମ କ୍ଷେତ୍ରରେ କର୍ତ୍ତା, କର୍ତ୍ତାର ଇଚ୍ଛାକୃତ ନିଷ୍ପତ୍ତି, ନିଷ୍ପତ୍ତି କ୍ଷେତ୍ରରେ ସ୍ୱାଧୀନତା ଓ ନିଜର କର୍ମ ପାଇଁ ଉତ୍ତରଦାୟିତ୍ୱ ପ୍ରଶ୍ନ ଗୁଡ଼ିକ ଜଡ଼ିତ । ସେହିପରି ବ୍ୟକ୍ତିଗତ ଆବେଗ ଓ ବିଚାରଶୀଳତାର ପ୍ରଶ୍ନ ମଧ୍ୟ ଏହା ସହିତ ସଂଶ୍ଳିଷ୍ଟ । ସ୍ଥଳ ବିଶେଷରେ ଆବେଗିକ ସ୍ତରର ପ୍ରଭାବ ଯୋଗୁଁ ବ୍ୟକ୍ତି ବିଚାରଶୀଳତା ଓ ନୈତିକତାକୁ ସାମୟିକ ଭାବେ ଏଡ଼ାଇ ଯିବା ମଧ୍ୟ ସମ୍ଭବପର । ହୁଏତ ପରବର୍ତ୍ତୀ ସ୍ତରରେ ଏଥିପାଇଁ ବ୍ୟକ୍ତି ଅନୁତାପ କରିପାରେ, ନିଜକୁ ଦୋଷୀ ମନେ କରିପାରେ ବା ମାନସିକ ସ୍ତରରେ ଗଭୀର ଆଘାତ ପାଇପାରେ । ସେହିପରି କେତେକ ଆଦର୍ଶ ଭିତରେ ନିଜକୁ ସଂଶ୍ଳିଷ୍ଟ କରାଇ ନେଇଥିବା ଯୋଗୁଁ ବା ଏକ ଧାର୍ମିକ ବା ସେପରି କିଛି ସାମାଜିକ ପରିଚୟର ସ୍ୱୀକୃତି ଯୋଗୁଁ ନିଜର ଆବେଗିକ ସ୍ତରକୁ ଇଚ୍ଛାକୃତ ଭାବେ ଦବାଇ ରଖିବାର ମାନସିକତା ମଧ୍ୟ ସୃଷ୍ଟି ହୋଇଥାଏ । ଜୀବନସାରା ନୀତି ଆଦର୍ଶ ଭିତରେ ରହିଥିବା ବ୍ୟକ୍ତିଟିଏ ଏକ ପରିସ୍ଥିତିରେ ଗୋଡ଼ ଖସାଇବା ଯେପରି ସମ୍ଭବ, ସେହିପରି ଏକ ଭିନ୍ନ ପରିସ୍ଥିତିରେ ଦୀକ୍ଷିତ ହୋଇଥିବା ଜଣେ ବ୍ୟକ୍ତି ନିଜର ସମସ୍ତ ମାନସିକ ଆଗ୍ରହ ସତ୍ତ୍ୱେ ଖାଦ୍ୟ, ପୋଷାକ ଓ ଅନ୍ୟାନ୍ୟ ରୁଚି କ୍ଷେତ୍ରରେ ନିଜ ଉପରେ ଗୁଡ଼ାଏ କଟକଣାର ବୋଝକୁ ଅନିଚ୍ଛାକୃତ ଭାବେ ଲଦି ଦେବା ମଧ୍ୟ ସେହିପରି ସମ୍ଭବ ।

ଜଣେ ସାଧାରଣ ମଣିଷ ନିଜର କର୍ମ କ୍ଷେତ୍ରରେ କୌଣସି ନା କୌଣସି କାରଣ ଦେଇଥାଏ । ଜଣେ କାହିଁକି ଏକ ରାଜନୈତିକ ଦଳର ନୀତିକୁ ସମର୍ଥନ କରେ, ନିରାମିଷ ଭୋଜନକୁ ପସନ୍ଦ କରେ, ଏକ ଆନ୍ଦୋଳନରେ ସକ୍ରିୟ ଭୂମିକା ନିଏ, ଘରେ ମଧ୍ୟ ଅଫିସିର କାର୍ଯ୍ୟ ପାଇଁ ପରିଶ୍ରମ କରେ ବା ଲାଞ୍ଚ ନିଏ ଇତ୍ୟାଦି ନାନା କାର୍ଯ୍ୟର କିଛି କାରଣ କର୍ତ୍ତା ଦେଇଥାଏ, ସେହି କାରଣ ଠିକ୍ ବା ଭୁଲ ହୋଇପାରେ । ତେବେ ଜଣେ ବ୍ୟକ୍ତି ଯେଉଁ ଇଚ୍ଛାକୃତ କାର୍ଯ୍ୟ କରେ ତା

ପଶ୍ଚାତରେ ତାହାର କେତେକ ବିଶ୍ୱାସ ବା କାରଣ ରହିବା ସ୍ୱାଭାବିକ ମନେହୁଏ । ଏହି ପୃଷ୍ଠଭୂମିରେ ପ୍ରାଣୀମାନଙ୍କର କାର୍ଯ୍ୟ ଓ ମନୁଷ୍ୟକୃତ କାର୍ଯ୍ୟ ଭିତରେ ପ୍ରଭେଦ କରାଯାଇପାରେ । ଇତର ପ୍ରାଣୀ-ମାନେ ବି ଅନେକ୍ କାର୍ଯ୍ୟ କରନ୍ତି ଓ ଏହି ସବୁ କାର୍ଯ୍ୟ କର୍ମର ପରିସରଭୁକ୍ତ ହେବା ଅପେକ୍ଷା ଅଧିକ ଘଟଣାଜନିତ ମନେହୁଏ । ଚଢ଼େଇଟିଏ ଅଣ୍ଡା ଦେବା ପୂର୍ବରୁ ବସା ବାନ୍ଧିବା, ସନ୍ଧ୍ୟା ପୂର୍ବରୁ ପ୍ରାଣୀମାନେ ନିଜର ଆଶ୍ରୟ ସ୍ଥଳକୁ ଫେରିବା, ଗୋଟିଏ ଋତୁର ଆଗମନରେ କେତେକ ଜୀବ ସୁଦୂର ସ୍ଥାନକୁ ଯିବା, ପୋଷା ଜୀବ ଅପରିଚିତ ବ୍ୟକ୍ତି ଦେଖି ପ୍ରତିକ୍ରିୟା ଦେଖାଇବା ପରି ନାନା କାର୍ଯ୍ୟ ଜୀବ ଜଗତରେ ଦେଖାଯାଏ । ତେବେ ଗୋଟିଏ ଇତର ପ୍ରାଣୀ କେବଳ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ କାର୍ଯ୍ୟ କରେ ଓ ସେ ଯେହେତୁ ନିଷ୍ପତ୍ତିମୂଳକ ଭାବେ ବୁଦ୍ଧି ପ୍ରୟୋଗ କରି ଏହା କରି ନଥାଏ ସେହେତୁ ଇତର ପ୍ରାଣୀଙ୍କର କାର୍ଯ୍ୟକୁ କର୍ମ କହିବା ଯଥାର୍ଥ ମନେହୁଏ ନାହିଁ । ମନୁଷ୍ୟ ମାନଙ୍କର ଇଚ୍ଛାକୃତ ଓ ନିଷ୍ପତ୍ତିମୂଳକ କାର୍ଯ୍ୟକୁ (ତାହା ଆବେଗିକ ହେଉ ବା ଯୁକ୍ତିଶୀଳ ହେଉ) ସାଧାରଣତଃ କର୍ମ କୁହାଯାଏ । ପ୍ରାଣୀମାନଙ୍କର କାର୍ଯ୍ୟ ପ୍ରବୃତ୍ତିଭିତ୍ତିକ ହୋଇଥିବା ବେଳେ ମଣିଷର କାର୍ଯ୍ୟ କାରଣଭିତ୍ତିକ ହୋଇଥାଏ । ସୁତରାଂ ଯେଉଁ କାର୍ଯ୍ୟ କାରଣଭିତ୍ତିକ, ଇଚ୍ଛାକୃତ ଓ ଯାହା ଭଲ ମନ୍ଦ ମାନଦଣ୍ଡରେ ମୂଲ୍ୟାୟନ କରାଯିବା ସମ୍ଭବ ତାହାକୁ କର୍ମ କୁହାଯାଇପାରେ । ସେହି କର୍ମ ପାଇଁ କର୍ତ୍ତା ଉତ୍ତରଦାୟୀ ରହେ ।

(୨)

କର୍ମ କ'ଣ -ଏହି ପ୍ରସଙ୍ଗ ଉପରେ ଏହି ସାଧାରଣ ଆଲୋଚନା ପରେ ଆମେ ଏଠାରେ ଦୁଇଟି ପ୍ରଶ୍ନକୁ ବିବେଚନା କରିବା- (୧) କର୍ମ ସହ କର୍ମଫଳର କ'ଣ ସମ୍ବନ୍ଧ ରହିଛି ? ପ୍ରତ୍ୟେକ କର୍ମର ଏକ ଫଳ ରହିଛି କି, ଓ ଯଦି ଅଛି ତେବେ କର୍ମ ସହ କର୍ମଫଳର ସମ୍ବନ୍ଧ କ'ଣ ହୋଇପାରେ ? (୨) ଜଣେ କର୍ତ୍ତା ତାହାର କର୍ମର ଫଳକୁ କିପରି ପାଇଥାଏ ? କର୍ତ୍ତା କର୍ମଫଳ ପାଇବା ଅନିବାର୍ଯ୍ୟ କି ?

ଭାରତୀୟ ଦର୍ଶନରେ ହେଉ ବା ସାଧାରଣ ଜନ ଜୀବନରେ ହେଉ ଏହା ଗ୍ରହଣ କରାଯାଏ ଯେ ପ୍ରତ୍ୟେକ କର୍ମରୁ ଫଳ ଫଳିଥାଏ ଓ କର୍ତ୍ତା ହିଁ କର୍ମର ଫଳ ପାଇଥାଏ । ଯେ ଯେପରି କର୍ମ କରେ ସେହିପରି ଫଳ ଭୋଗ କରେ । ଭଲ କାର୍ଯ୍ୟରୁ ଭଲ ପରିଣାମ ଓ ମନ୍ଦ କାର୍ଯ୍ୟରୁ ଖରାପ ପରିଣାମ ଆସିଥାଏ । କର୍ମସିଦ୍ଧାନ୍ତ ଅନୁଯାୟୀ 'କର୍ମ ଯେଉଁଭଳି, ଫଳ ସେହିଭଳି' । କର୍ମବାଦକୁ ଏପରିକି ଏକ କାର୍ଯ୍ୟ କାରଣ ନିୟମ ଆଧାରରେ ବିଶ୍ୱାସ କରାଯାଏ । କାର୍ଯ୍ୟକାରଣ ନିୟମ ଏକ ପ୍ରାକୃତିକ ନିୟମ ବା ଶୃଙ୍ଖଳା । ପ୍ରତ୍ୟେକ କାର୍ଯ୍ୟର ନିଶ୍ଚୟ କାରଣ ରହିଛି ଓ ବିନା କାରଣରେ କାର୍ଯ୍ୟ ସମ୍ଭବ ନୁହେଁ । ବସ୍ତୁ ଜଗତରେ ଓ ପ୍ରକୃତିରେ କାର୍ଯ୍ୟ କାରଣ ନିୟମ ଆମର ଅନୁଭୂତିରେ ଦୃଢ଼ୀଭୂତ । ପ୍ରାକୃତିକ ଜଗତରେ ଦିନ-ରାତି, ଭୂକମ୍ପ, ଋତୁ ପରିବର୍ତ୍ତନ, ଜଳଚକ୍ର, ଜନ୍ମ, ମୃତ୍ୟୁ ଇତ୍ୟାଦି ସକଳ ଘଟଣା ପ୍ରବାହ କାର୍ଯ୍ୟ ଓ ପ୍ରତ୍ୟେକ କାର୍ଯ୍ୟର କାରଣ ରହିଛି ଓ କାରଣ ପ୍ରାୟତଃ ସୁନିର୍ଦ୍ଦିଷ୍ଟ । ସେହିପରି କର୍ମବାଦ କ୍ଷେତ୍ରରେ ଏହି ନିୟମକୁ ସଂଶ୍ଳିଷ୍ଟ କରାଯାଏ । ଏହା କୁହାଯାଏ ଯେ କର୍ମଫଳ ଏକ କାର୍ଯ୍ୟ ସଦୃଶ ଓ କର୍ମ ଏହାର କାରଣ ସଦୃଶ । କାରଣରୁ ଯେପରି କାର୍ଯ୍ୟ ନିସୃତ ହୋଇଥାଏ ସେହିପରି କର୍ମରୁ କର୍ମଫଳ ଆସିଥାଏ । ପୁନଶ୍ଚ ନିଉଟନଙ୍କର ଏକ ବୈଜ୍ଞାନିକ ସିଦ୍ଧାନ୍ତ 'ପ୍ରତ୍ୟେକ କ୍ରିୟାର ଏକ ସମାନ ଓ ବିପରୀତ ପ୍ରତିକ୍ରିୟା ରହିଛି' ଭାବନା ସହିତ କର୍ମବାଦକୁ କେତେକ ସଂଶ୍ଳିଷ୍ଟ କରିଥାନ୍ତି । ତେବେ ନିଉଟନଙ୍କର ବୈଜ୍ଞାନିକ ସିଦ୍ଧାନ୍ତଟି ପ୍ରାକୃତିକ ଘଟଣା କ୍ଷେତ୍ରରେ ଏକ ନିୟମ ଭାବରେ କାର୍ଯ୍ୟ କରିଥାଏ । ସ୍ଥିତି, ଗତିଶୀଳତା, ବେଗ, ଶକ୍ତି ଇତ୍ୟାଦିକୁ ଏକ

ବୈଜ୍ଞାନିକ ଶୃଙ୍ଖଳା ଓ ତନ୍ତ (Scientific order and system) ଭିତରେ ନିଉଟନ ବ୍ୟାଖ୍ୟା କରିବା ଅବସରରେ ତାଙ୍କର ଏହି ନିୟମଟି ଦେଇଥିଲେ । ଏହା ବାହ୍ୟ ଜଗତର ଅନ୍ୟାନ୍ୟ ନିୟମ ସହିତ ସଂଶ୍ଳିଷ୍ଟ ଯାହା ସହିତ କର୍ମବାଦର କୌଣସି ସମ୍ବନ୍ଧ ହିଁ ନାହିଁ । କର୍ମବାଦ ଜନିତ ସିଦ୍ଧାନ୍ତଟି ଏକ ଭିନ୍ନ ପୃଷ୍ଠଭୂମିରେ କଳ୍ପନା କରାଯାଇଛି ଯାହା ସହିତ ପ୍ରାକୃତିକ ସ୍ଥିତି, ବେଗ, ଗତିର ସମ୍ବନ୍ଧ ହିଁ ନାହିଁ । ସେହିପରି କର୍ମ ଓ କର୍ମଫଳ କେତେ ଦୂର କାର୍ଯ୍ୟକାରଣ ନିୟମ ଆଧାରିତ ? ପ୍ରାକୃତିକ ବ୍ୟବସ୍ଥାରେ କାର୍ଯ୍ୟକାରଣ ନିୟମକୁ ଗ୍ରହଣ କରାଯାଏ, ଅଥଚ ଏହାକୁ କର୍ମ, କର୍ମଫଳ କ୍ଷେତ୍ରରେ ପ୍ରୟୋଗ କରାଯିବା ସମ୍ଭବ କି ? କର୍ମ-କର୍ମଫଳ ପୃଷ୍ଠଭୂମିରେ କାର୍ଯ୍ୟକାରଣ ନିୟମ ପ୍ରୟୋଗର ଏକ ମୌଳିକ ପ୍ରତିବନ୍ଧକ ରହିଛି । ଜଣେ ଯେଉଁ କାର୍ଯ୍ୟ କରନ୍ତି ତାହାର ଫଳ ସେ ଭୋଗ କରିବେ ବା ସେହି ଫଳ ଅନ୍ୟମାନେ ଭୋଗ କରିବେ ?.ମନେ କରାଯାଉ 'କ' ଜଣେ ଭଲ ଅଧାପକ, ସେ ଛାତ୍ରମାନଙ୍କୁ ସୁନ୍ଦର ଭାବରେ ବିଷୟଟିକୁ ବୁଝାଇ ଦେଇପାରନ୍ତି । ତେବେ ଏହାର ଫଳ ସେ ଭୋଗ କରିବେ ବା ଅନ୍ୟମାନେ ? ସେହିପରି ମନେ କରାଯାଉ 'ଖ' ଜଣେ ଭଲ ଚିକିତ୍ସକ । ସେ ସୁନ୍ଦର ଭାବରେ ଅପରେସନ କରନ୍ତି ଓ ତାଙ୍କର ଅପରେସନ ଯୋଗୁଁ ସେ ବହୁ ରୋଗୀଙ୍କୁ ଆରୋଗ୍ୟ କରିଛନ୍ତି । ତେବେ ଏହାର ସୁଫଳ ସେ ପାଇବେ ବା ଅନ୍ୟମାନେ ? ଏହି ପୃଷ୍ଠଭୂମିରେ ଆମେ କ'ଣ କହିବା ଯେ 'କ' ଯେ ଜଣେ ଭଲ ଅଧାପକ, ପରବର୍ତ୍ତୀ ସମୟରେ ସେ ଯଦି ଛାତ୍ର ହୁଅନ୍ତି, ତେବେ ଭଲ ଅଧାପକଙ୍କ ଠାରୁ ଉଚିତ୍ ଶିକ୍ଷା ପାଇପାରିବେ ? ସେହିପରି 'ଖ' ଯେ ଜଣେ ଭଲ ସର୍ଜନ, ସେ ଯଦି ଭବିଷ୍ୟତରେ ରୋଗରେ ଆକ୍ରାନ୍ତ ହୁଅନ୍ତି ସେ ସୁଚିକିତ୍ସା ଲାଭ କରିବେ ? ସେପରି ହେଲେ ଆମର ବାସ୍ତବ ଅନୁଭୂତିରେ କର୍ମବାଦ ଭୁଲ ବୋଲି ପ୍ରମାଣିତ ହେବ । କାରଣ ଯେ ଜଣେ ଭଲ ଅଧାପକ ହେଲେ ସେ ହୁଏତ ଆଉ ଛାତ୍ର ହୋଇନପାରନ୍ତି ବା ଯେ ଜଣେ ଭଲ ସର୍ଜନ ହୋଇଛନ୍ତି ସେ ହୁଏତ ଜୀବନ କାଳ ଭିତରେ ରୋଗରେ ଆକ୍ରାନ୍ତ ହୋଇ ଅପରେସନ ହୋଇ ନପାରନ୍ତି । ଅର୍ଥାତ୍ ଜଣେ ନିଜ କର୍ମର ସୁଫଳ ହୁଏତ ପାଇବା ସମ୍ଭବ ନ ହୋଇପାରେ । ତେବେ ଅନ୍ୟ ସମ୍ଭାବନାଟି ହେବ ଜଣଙ୍କର ଭଲ କାର୍ଯ୍ୟର ସୁଫଳ ଅନ୍ୟମାନେ ପାଇବେ । ସେପରି ହେଲେ କର୍ମବାଦର ବିରୁଦ୍ଧାଚରଣ ହେବ, କାରଣ କର୍ମବାଦ ଅନୁଯାୟୀ ଯିଏ ଯେଉଁ ପରି କାର୍ଯ୍ୟକରେ, ସେ ସେହିପରି ଫଳ ପାଇବ । କିନ୍ତୁ ପ୍ରଦତ୍ତ ଉଦାହରଣରେ ବା ସାଧାରଣ ଜୀବନରେ କେତେକ ଅନୁଭୂତିରୁ ଏହା ସ୍ପଷ୍ଟ ହୋଇଥାଏ ଯେ ଜଣଙ୍କର ଭଲ କାର୍ଯ୍ୟର ସୁଫଳ ଅନ୍ୟମାନେ ପା'ନ୍ତି ଅଥଚ କର୍ତ୍ତା ନିଜେ ପାଏ ନାହିଁ, କିମ୍ବା ଏକ ମନ୍ଦ କାର୍ଯ୍ୟର କୁପରିଣତି ଜଣେ ନିରୀହ ବ୍ୟକ୍ତି ପାଇଥାଏ । 'ଗ' ଜଣେ ଶାନ୍ତି ପ୍ରିୟ ଲୋକ, ଜୀବନରେ କାହାର କ୍ଷତି କରନ୍ତି ନାହିଁ, ନିଜର କର୍ତ୍ତବ୍ୟ ସଠିକ୍ ଭାବେ ସମାପନକରନ୍ତି । କିନ୍ତୁ ଏକ ଜାତିଗତ ବା ସାଂପ୍ରଦାୟିକ ଦଙ୍ଗାରେ ସେ ସର୍ବସ୍ୱ ହରାଇ ଯନ୍ତଣା ଜର୍ଜରିତ ହୁଅନ୍ତି ଓ ଜୀବନରେ ନାନା ହତାଶା ଓ କଷ୍ଟ ଭିତରେ କାଳାତିପାତ କରନ୍ତି । ସୁତରାଂ କର୍ମ ସିଦ୍ଧାନ୍ତ କ୍ଷେତ୍ରରେ ଏହି ଜଟିଳତା ଆସେ ଯେ କର୍ତ୍ତା ନିଜର କର୍ମଫଳ ନିଜେ ଭୋଗ କରିବ ନା ତାର କର୍ମଫଳ ଅନ୍ୟ କେହି ଭୋଗ କରିବ ? ସେ ଯଦି ନିଜ କର୍ମଫଳ ନିଜେ ଭୋଗ କରିବ ବୋଲି ଧରାଯାଏ, ତେବେ ଏହା ଆମର ବାସ୍ତବ ଅନୁଭୂତିରେ ସ୍ଥଳ ବିଶେଷରେ ମିଥ୍ୟା ପ୍ରମାଣିତ ହେବ । ଯଦି ଧରାଯାଏ ଯେ କର୍ମର ଫଳ କର୍ତ୍ତା ନିଜେ ନୁହେଁ ଅନ୍ୟମାନେ ଭୋଗ କରିବେ, ତେବେ ଏହା କର୍ମବାଦର ବିରୋଧାଭାସ ସୃଷ୍ଟି କରିବ । କାରଣ 'କ', 'ଖ' ଯାହା ଭଲ କାର୍ଯ୍ୟ କରିଛନ୍ତି, ତା'ର ସୁଫଳ ଅନ୍ୟମାନେ ପାଇଛନ୍ତି, ଅଥଚ 'ଗ' ନିଜେ ଭଲ କାର୍ଯ୍ୟ କରି ଅନ୍ୟମାନଙ୍କର ମନ୍ଦ କାର୍ଯ୍ୟର ଫଳ ଭୋଗୁଛନ୍ତି – ଏହା କର୍ମ ସିଦ୍ଧାନ୍ତର ବିପରୀତ ହେବ ।

ତେବେ ଏହି ଗୋଲକ ଧନ୍ଦା ଭିତରେ ଜଣେ କର୍ମବାଦୀଙ୍କର ଯୁକ୍ତି ହୋଇପାରେ ଯେ କର୍ମରୁ ଫଳ ଆସିଥାଏ, କର୍ମର ଫଳ ବି ଭୋଗ ହୋଇଥାଏ । ତେବେ ପ୍ରଶ୍ନ ହେବ କର୍ମର ଫଳ କିଏ ଭୋଗ କରିବ ? ଯଦି କର୍ତ୍ତା ଯେଉଁ କାର୍ଯ୍ୟ କରେ ତାର ପରିଣାମ 'ପ' ହୁଏ ଓ ସେ ନିଜେ ଯେଉଁ ପରିଣତି ପାଏ ତାହା 'ଫ' ହୁଏ, ତେବେ କର୍ମ ଓ 'ପ' ଭିତରେ ଏକ ସମ୍ବନ୍ଧ ରହିବା ଅନିବାର୍ଯ୍ୟ ମନେ ହୁଏ, କିନ୍ତୁ କର୍ମ ଓ 'ଫ' ଭିତରେ କୌଣସି ସମ୍ବନ୍ଧ ରହିବା ଅନିବାର୍ଯ୍ୟ ମନେ ହୁଏ ନାହିଁ । ଅର୍ଥାତ୍ ଜଣେ କରୁଥିବା କାର୍ଯ୍ୟର ନିଶ୍ଚୟ କିଛି ପରିଣାମ ରହିଛି, ସେହି ପରିଣାମ ଭଲ ବା ମନ୍ଦ ହୋଇପାରେ । ତେବେ ଜଣେ କର୍ତ୍ତାର କାର୍ଯ୍ୟର ପରିଣାମ ଅନ୍ୟମାନେ ବା ସ୍ଥଳ ବିଶେଷରେ କର୍ତ୍ତା ପାଇଥାଏ ଭାବିବାର ବିରୋଧାଭାସ ଆସି ନଥାଏ । କିନ୍ତୁ କର୍ମବାଦ ଅନୁଯାୟୀ 'କର୍ତ୍ତା ହିଁ ତାର କର୍ମର ଫଳ ପାଇଥାଏ' କହିବାରେ କେତେକ ଜଟିଳତା ଆସିଥାଏ । ପୁନଶ୍ଚ ଜଣେ ବ୍ୟକ୍ତି ନିଜର ଜୀବନ କାଳ ଭିତରେ ବହୁ କାର୍ଯ୍ୟ କରେ, ଭଲ କାର୍ଯ୍ୟ କରେ, ମନ୍ଦ କାର୍ଯ୍ୟ ବି କରେ । ତେବେ କେଉଁ କର୍ମରୁ କେଉଁ ଫଳ ମିଳେ ତାହାର ଏକ ବିବେଚନା କରିବା ସମ୍ଭବ କି ? ଅର୍ଥାତ୍ ପ୍ରତ୍ୟେକ କର୍ମର ଫଳାଫଳକୁ ସୁନିର୍ଦ୍ଦିଷ୍ଟ କରାଯାଇ ପାରିବ କି ? "ଭଲ କାର୍ଯ୍ୟରୁ ଭଲ ଫଳ ମିଳେ" ସିଦ୍ଧାନ୍ତ ଭିତରେ କେଉଁ ଭଲ କାର୍ଯ୍ୟରୁ କେଉଁ ନିର୍ଦ୍ଦିଷ୍ଟ ଭଲ ଫଳ ପରିଣତି ଭାବେ ଆସିଥାଏ ତାହା ପ୍ରତ୍ୟେକଟି କର୍ମ ପୃଷ୍ଠଭୂମିରେ ନିଧାର୍ଯ୍ୟ ହେବାର କୌଣସି ମାନଦଣ୍ଡ ଦେବା ଜୀବନର ଓ ସାମାଜିକ ସମ୍ବନ୍ଧର ଜଟିଳତା ହେତୁ ସମ୍ଭବ ହୋଇନପାରେ । ସାଧାରଣ ଭାବେ ସୁକର୍ମରୁ ଭଲ ପରିଣାମ ଓ ମନ୍ଦ କର୍ମରୁ ମନ୍ଦ ପରିଣାମ ଆସିବା ଏକ ସାଧାରଣ ତତ୍ତ୍ୱ ହୋଇପାରେ, ତେବେ ପ୍ରତ୍ୟେକଟି କାର୍ଯ୍ୟର ନୈତିକ ଫଳାଫଳକୁ ଏକକ ଭାବେ ଦର୍ଶାଇବା ହୁଏତ ସମ୍ଭବ ମନେ ହୁଏ ନାହିଁ । କର୍ମବାଦରେ ଯେପରି କର୍ତ୍ତା, କର୍ମ ଓ କର୍ମର ନୈତିକ ପରିଣାମ ଭିତରେ ଏକ ସ୍ୱତଃସିଦ୍ଧ ସଂପର୍କ ଥିବା କୁହାଯାଏ, ତାହାକୁ ସାମଗ୍ରିକ ଜୀବନ ପୃଷ୍ଠଭୂମିରେ ପ୍ରତ୍ୟେକ କର୍ମ ଓ ଏହାର ଫଳାଫଳକୁ ନିରୂପଣ କରିବା ସହଜ ମନେ ହୁଏନାହିଁ ।

ଏହି ସବୁ ଜଟିଳତା କର୍ମବାଦ ପାଖରେ ରହିବା ଦେଖାଯାଏ । ଏହି ସବୁ ଜଟିଳତାକୁ ବାଦ୍ ଦେଇ ବ୍ୟାବହାରିକ ଓ ନୈତିକ ସ୍ତରରେ କର୍ମବାଦକୁ ସ୍ୱୀକାର କରାଯାଇପାରେ । ବ୍ୟକ୍ତି ତାର କର୍ମର ଫଳ ଭୋଗିବାକୁ ବାଧ୍ୟ ଓ ଏହା ସଂସାରର ଅଲଂଘ୍ୟ ନିୟମ ବୋଲି କୁହାଯାଏ । ଜଣେ ଯେଉଁ ମଂଜି ବୁଣେ, ସେ ସେହି ଫଳ ଅମଳ କରେ, ଏହା ଯେପରି ପ୍ରକୃତିର ନିୟମ ସେହିପରି ଆମ ସଂସାରରେ ଏହି ନୈତିକ ନିୟମ ରହିଛି ଯେ, ଯେ ଯେଉଁ ପ୍ରକାରର କର୍ମ କରେ ସେ ସେହି ପ୍ରକାର ଫଳ ଲାଭ କରିଥାଏ । ହୁଏତ ପ୍ରତ୍ୟେକ କର୍ମର ଫଳ କିପରି ବ୍ୟକ୍ତି ପାଇଥାଏ ତାହା ବିଶେଷ ଭାବେ ନିରୂପଣ କରିବା ସମ୍ଭବ ନହେଲେ ମଧ୍ୟ ସାମଗ୍ରିକ ଭାବରେ ଯିଏ ଜୀବନରେ ଅଧିକ ମହତ୍ କାର୍ଯ୍ୟ କରିଥାଏ ସେ ଅଧିକ ସୁଖୀ ହୁଏ ଓ ଯିଏ ଜୀବନରେ ଅଧିକ ମନ୍ଦ କାର୍ଯ୍ୟ କରିଥାଏ ସେ ଜୀବନରେ ଅଧିକ ଦୁଃଖ ପାଏ । ଜୀବନର ଘଟଣା ପ୍ରବାହକୁ ନିରୀକ୍ଷଣ କଲେ ଜୀବନରେ ସୁଖର ମୁହୂର୍ତ୍ତ ଯେପରି ରହେ ସେହିପରି ଦୁଃଖର ମୁହୂର୍ତ୍ତ ମଧ୍ୟ ଆସେ । ଜଣେ ଜୀବନରେ ଯେପରି ଭଲ - ମନ୍ଦ କାର୍ଯ୍ୟ କରିଥାଏ, ସେହିପରି ସୁଖ ଦୁଃଖର ଅନୁଭୂତି ପାଇଥାଏ । ମୋଟ ଉପରେ କର୍ମର ଫଳକୁ ଜଣେ ଭୋଗିବାକୁ ବାଧ୍ୟ ଓ ଏହି ନିୟମ ପ୍ରାୟ ଅଲଂଘ୍ୟ ବୋଲି କର୍ମବାଦ ଧରିଥାଏ ।

'ଜଣେ ବ୍ୟକ୍ତିର ସାମଗ୍ରିକ ଜୀବନ ପରିପ୍ରେକ୍ଷୀରେ ଜଣଙ୍କର ଜୀବନର ପ୍ରତ୍ୟେକ କର୍ମରୁ କିଛି ଫଳ ଆସିଥାଏ, ଯେଉଁ ଫଳ କର୍ତ୍ତାକୁ ଭୋଗିବାକୁ ହୁଏ'- ବିଶ୍ୱାସ ପଶ୍ଚାତରେ ଏକ ନୈତିକ ବିଚାରବୋଧ ହୁଏତ ରହିଥାଏ । ମଣିଷର

ନୈତିକ ଚେତନାରୁ ଏହି ଭାବନା ଆସିଥାଏ ଯେ ଭଲ କାର୍ଯ୍ୟର ସୁଫଳ ଓ ମନ୍ଦ କାର୍ଯ୍ୟର କୁଫଳ କର୍ତ୍ତା ଭୋଗ କରିବା ଉଚିତ୍ । ଏହା ଆମ ନୈତିକ ବୋଧଶକ୍ତିର ଏକ ଅନୁଭବ । ତେବେ ପ୍ରଶ୍ନ ହେଉଛି କର୍ମର ଫଳ କର୍ତ୍ତା କିପରି ପାଏ ? କର୍ମରୁ ଫଳ ସ୍ୱତଃ ଫଳିଥାଏ ବା କର୍ମର ଫଳ କର୍ତ୍ତାକୁ କେହି ପ୍ରଦାନ କରେ ? 'ପ୍ରତ୍ୟେକ କର୍ମରୁ ଫଳ ଆସିଥାଏ ଓ କର୍ତ୍ତା ତାହା ଭୋଗିବାକୁ ବାଧ୍ୟ'- ସିଦ୍ଧାନ୍ତକୁ ଗ୍ରହଣ କରିନେବା ପରେ ପ୍ରଶ୍ନ ଆସିବ-କର୍ମରୁ ଫଳ କ'ଣ ସ୍ୱୟଂକ୍ରିୟ ଭାବେ ଉତ୍ପନ୍ନ ହୁଏ ନା କର୍ମର ଫଳ କର୍ତ୍ତାକୁ କେହି ପ୍ରଦାନ କରେ ? ଭାରତୀୟ ଦର୍ଶନ ପରିସରରେ ଯେଉଁ ସବୁ ଉତ୍ତର ଏହି ପ୍ରଶ୍ନକୁ ନେଇ ଦିଆଯାଇଛି ଯେ ସବୁକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଗୋଟିଏ ମତାନୁଯାୟୀ କର୍ମର ଫଳ ସ୍ୱୟଂକ୍ରିୟ, ଅର୍ଥାତ୍ କର୍ମରୁ ଫଳ ସ୍ୱତଃ ଆସିଥାଏ । ଅନ୍ୟ ମତଟି ଅନୁଯାୟୀ ଈଶ୍ୱର ତାଙ୍କର ବିଧାନ ଭିତରେ ପ୍ରତ୍ୟେକ ବ୍ୟକ୍ତିକୁ ତାର କର୍ମର ଉପଯୁକ୍ତ ଫଳ ଦେଇଥାନ୍ତି । ମୋଟ ଉପରେ କହିଲେ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରୁ ନଥିବା ଦାର୍ଶନିକ ବିଦ୍ୟାଳୟ ସକଳ କର୍ମରୁ ଫଳ ସ୍ୱତଃ ଆସିଥାଏ ବୋଲି ମନେ କରିଥାନ୍ତି । ତେବେ ଏହା କିପରି ଆସେ ସେ କ୍ଷେତ୍ରରେ ନାନା କାଳ୍ପନିକ ସିଦ୍ଧାନ୍ତର ଅବତାରଣା ଭାରତୀୟ ଦର୍ଶନରେ ଦେଖିବାକୁ ମିଳେ । ସାଂଖ୍ୟ ଦର୍ଶନରେ କୈବଲ୍ୟ ଓ ମୀମାଂସା ଦର୍ଶନରେ ଅପୂର୍ବ ପରି କାଳ୍ପନିକ ଭାବନା ଜରିଆରେ କର୍ମରୁ କର୍ମଫଳ ବା ମୁକ୍ତି ଆସିଥାଏ ବୋଲି ପରିକଳ୍ପନା କରାଯାଇଛି । ସେହିପରି ବୌଦ୍ଧ ଦର୍ଶନ ଓ ଜୈନ ଦର୍ଶନରେ ଈଶ୍ୱର ବିଶ୍ୱାସ ନଥିବାରୁ କର୍ମରୁ କିପରି କର୍ମଫଳ କର୍ତ୍ତା ପାଏ ତାହାର ବ୍ୟାଖ୍ୟା ନେଇ ମଧ ନାନା କଳ୍ପନାର ଅବତାରଣା କରାଯାଇଛି । ଯେଉଁ ଦାର୍ଶନିକ ବିଦ୍ୟାଳୟ ମାନଙ୍କରେ କର୍ତ୍ତାକୁ ଈଶ୍ୱର ହିଁ କର୍ମଫଳ ଦିଅନ୍ତି ବୋଲି କଳ୍ପନା କରାଯାଇଛି, ସେ କ୍ଷେତ୍ରରେ ମଧ ନାନା କାଳ୍ପନିକ ତତ୍ତ୍ୱର ଅବତାରଣା କରାଯାଇଛି । ଯେଉଁ ଦର୍ଶନ ବିଦ୍ୟାଳୟ ମାନଙ୍କରେ ଈଶ୍ୱର କର୍ତ୍ତାକୁ କର୍ମଫଳ ଦିଅନ୍ତି ବୋଲି ଗ୍ରହଣ କରାଯାଇଛି ସେ କ୍ଷେତ୍ରରେ ଈଶ୍ୱରଙ୍କ ସ୍ୱରୂପ, ଆତ୍ମାର ସ୍ୱରୂପ, ଈଶ୍ୱର କେବେ ଫଳ ଦିଅନ୍ତି ଓ କିପରି ଦିଅନ୍ତି ପ୍ରସଙ୍ଗକୁ ନେଇ ପରସ୍ପର ବିରୋଧୀ ମତର ଅବତାରଣା ଦେଖିବାକୁ ମିଳେ ।

କର୍ମରୁ ଫଳ ସ୍ୱତଃ ମିଳିଥାଏ ବୋଲି ଯେଉଁମାନେ କଳ୍ପନା କରିଛନ୍ତି, ସେମାନଙ୍କ ପାଇଁ ପ୍ରଶ୍ନ ଉଠିବ, କର୍ମର ଫଳ କର୍ତ୍ତା ପାଖରେ କେଉଁ ରୂପରେ ରୁହେ ? ଅନୁମାନ କରାଯାଇପାରେ ଯେ କର୍ମର ଫଳ କର୍ତ୍ତା ଭୋଗ କରିବା ପର୍ଯ୍ୟନ୍ତ ଏହା କର୍ତ୍ତା ପାଖରେ ଥାଏ ଓ ଉପଯୁକ୍ତ ବାତାବରଣ ପାଇଲେ ଏହି ଫଳ କର୍ତ୍ତାକୁ ମିଳିଥାଏ । ଅନ୍ୟ ସମ୍ଭାବନାଟି ହେବ କର୍ମର ଫଳ କର୍ତ୍ତା ବାହାରେ ଥାଏ ଓ କର୍ତ୍ତା ଏହା ଦିନେ ନା ଦିନେ ପ୍ରାପ୍ତ ହୁଏ । ତେବେ ପ୍ରତ୍ୟେକଟି ସମ୍ଭାବନା କ୍ଷେତ୍ରରେ ନାନା ଜଟିଳତା ସଂଶ୍ଳିଷ୍ଟ ହେବା ଦେଖାଯାଏ । ଏ ସବୁର ବ୍ୟାଖ୍ୟା କ୍ଷେତ୍ରରେ ନାନା ଜଟିଳ ତର୍କର ଆଶ୍ରୟ ନିଆଯାଇ ପ୍ରତ୍ୟେକଟିର ଜଟିଳତା ବା ବିରୋଧାଭାସକୁ ଦର୍ଶାଯାଇପାରେ । ତେବେ ଏଠାରେ ଜଟିଳ ତର୍କକୁ ଆଲୋଚନା ନକରି ଏହା କୁହାଯାଇପାରେ ଯେ କର୍ମର ପରିଣାମ କର୍ତ୍ତା ପାଖରେ ବା କର୍ତ୍ତା ବାହାରେ ଯଦି ସଞ୍ଚିତ ହୋଇ ରହେ, ତେବେ ପ୍ରଶ୍ନ ହେବ କର୍ମଫଳ କର୍ତ୍ତାକୁ କିପରି ଜୀବଦ୍ଦଶାରେ ମିଳିବ ? କର୍ମବାଦ ଅନୁଯାୟୀ କର୍ମର ଫଳ ରହେ ଓ ବ୍ୟକ୍ତି ସେହି ଫଳକୁ ଏ ଜନ୍ମରେ ନ ପାଇଲେ ମଧ ଆଗାମୀ ଜନ୍ମ ମାନଙ୍କରେ ପାଇଥାଏ । କର୍ମର ଫଳ ଉପଭୋଗ୍ୟ ନ ହେବା ପର୍ଯ୍ୟନ୍ତ ଯଦି ସଞ୍ଚିତ ହୋଇ ରୁହେ, ତେବେ ବ୍ୟକ୍ତିର ମୃତ୍ୟୁ ପରେ ବ୍ୟକ୍ତି କିପରି ତାର ଫଳ ପାଇବ ? ବ୍ୟକ୍ତି ମୃତ ହେଲେ ମଧ ତାର ଫଳ ରହିଛି କହିବା ଦ୍ୱାରା କର୍ମଫଳ ଯେ ଭୋଗ ନହେବା ପର୍ଯ୍ୟନ୍ତ ଅକ୍ଷୟ ଏହା ସ୍ୱୀକାର କରିବାକୁ ହେବ । ସେହିପରି କର୍ମଫଳ ରହିଥାଏ ଓ

ଉପଯୁକ୍ତ ପରିବେଶରେ କର୍ତ୍ତାକୁ ପ୍ରାପ୍ତ ହୁଏ କହିବା ଅବାନ୍ତର ଏହି ଦୃଷ୍ଟିରୁ ଯେ କର୍ମଫଳ କୌଣସି ବସ୍ତୁ ସତ୍ତା ବା ଶକ୍ତି ନୁହେଁ ଯେ ଏହା କେଉଁଠି ରହିଥାଏ ଓ ପରିବେଶ ପାଇଲେ ଖୋଜି ଖୋଜି ତାର କର୍ତ୍ତାକୁ ମିଳେ । କର୍ମଫଳ ଯାହା ଏକ କର୍ମର ନୈତିକ ପରିଣାମ ତାହା ବସ୍ତୁ ପରି ସଂରକ୍ଷିତ ରହିବା ଓ ବ୍ୟକ୍ତିକୁ ସମୟ ଓ ସୁଯୋଗ ଦେଖି ପ୍ରାପ୍ତ ହେବା ସମ୍ଭାବନା ତର୍କ ଦୃଷ୍ଟିରୁ ଓ ଅନୁଭୂତି ଦୃଷ୍ଟିରୁ କେବଳ ଯେ ରହସ୍ୟମୟ ବୋଧ ହୁଏ ତାହା ନୁହେଁ ବରଂ ଅବାନ୍ତର ଓ ଦୁର୍ବୋଧ ମନେ ହୋଇଥାଏ ।

(୩)

କେତେକ ଦାର୍ଶନିକ ବିଦ୍ୟାଳୟର ମତାନୁଯାୟୀ ପ୍ରତ୍ୟେକ କର୍ମରୁ କର୍ମଫଳ ଆସିଥାଏ ଓ ସେହି କର୍ମଫଳ କର୍ତ୍ତାକୁ ଏ ଜନ୍ମରେ ହେଉ ବା ପରଜନ୍ମରେ ହେଉ ନିଶ୍ଚୟ ପ୍ରାପ୍ତ ହୁଏ । ଈଶ୍ୱରୀୟ ବିଧାନରେ କର୍ତ୍ତା କର୍ମଫଳ ପାଇବାକୁ ବାଧ୍ୟ । ଏହି ସିଦ୍ଧାନ୍ତର ଯାହା କିଛି ତାର୍କିକ ଅସଂଗତି ବା ଦୁର୍ବୋଧତା ରହିଲେ ମଧ୍ୟ ଅନ୍ତତଃ ଏହାକୁ ଜୀବନର ଜଟିଳତାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ କେତେକ ସମୟରେ ପ୍ରୟୋଗ କରାଯାଏ । କର୍ମବାଦ ସାମାଜିକ ଜୀବନର ଯେଉଁ ଘଟଣାକୁ ବ୍ୟାଖ୍ୟା କରିପାରିବ ବୋଲି ଗ୍ରହଣ କରାଯାଏ ତାହାର ଯଥାର୍ଥତା ଆମେ ଆଲୋଚନା କରିବା ।

ସମାଜରେ ଆମେ ଯେଉଁ ବୈଷମ୍ୟ ଓ ବ୍ୟକ୍ତି ବ୍ୟକ୍ତି ଭିତରେ ପାର୍ଥକ୍ୟ ଦେଖେ ତାହା ନେଇ ଭାବନା ଆସେ ଯେ ଏହାର କାରଣ କ'ଣ ହୋଇପାରେ ? ଆମ ଅନୁଭୂତିରୁ ଆମେ ଦେଖେ ଯେ କେହି ଉତ୍ତମ ପରିବେଶ, ସଚେତନ ପିତା-ମାତା ଓ ସମୃଦ୍ଧ ପରିବାରରେ ଜନ୍ମ ନେଇ ଜୀବନରେ ସୁଖ ଶାନ୍ତିରେ ରହେ ଅଥଚ ଅନ୍ୟ କେହି ଦୁଃଖୀ ଓ ଅସହାୟ ପରିବାରରେ ଜନ୍ମ ଗ୍ରହଣ କରି ଜୀବନ ସାରା ହତାଶା ଓ ଯନ୍ତ୍ରଣା ଭିତରେ ଜୀବନ ଅତିବାହିତ କରେ । କେହି ସୁନ୍ଦର ସ୍ୱାସ୍ଥ୍ୟ ଅଧିକାରୀ ହୋଇଥାଏ ତ ଅନ୍ୟ କେହି ଜନ୍ମରୁ ରୋଗ ନେଇ ଆସିଥାଏ ବା ଶାରୀରିକ ବିକଳାଙ୍ଗ ହୋଇ ଜୀବନ ଅତିବାହିତ କରେ । ଏପରିକି ଏକା ବାପା, ମା'ଙ୍କ ପାଖରେ ଜନ୍ମ ନେଇଥିବା ଓ ସମାନ ପରିବେଶରେ ଗଢ଼ି ଉଠିଥିବା ପିଲାମାନେ ସେମାନଙ୍କର ପରବର୍ତ୍ତୀ ଜୀବନରେ ଦୃଷ୍ଟିଭଙ୍ଗୀରେ ଓ ମାନସିକତାରେ ପରସ୍ପରଠାରୁ ପୂରା ଅଲଗା ହୁଅନ୍ତି । କେହି ଅତି ସୁଖ ଆନନ୍ଦରେ ଜୀବନ ବଞ୍ଚେ ତ ତାର ଭାଇଟି ନାନା ଦୁଃଖ କଷ୍ଟରେ ତାର ସଂସାର ଚଳାଇଥାଏ । ଏହି ଯେଉଁ ବୈଷମ୍ୟ ଓ ଭିନ୍ନତା ସମାଜରେ ଦେଖାଯାଏ ତା'ର କାରଣ କଣ ହୋଇପାରେ ? ଭାରତୀୟ ଦର୍ଶନ ମାନଙ୍କରେ ଏହାର କାରଣକୁ କର୍ମର ଫଳ ବୋଲି କୁହାଯାଏ । ଜଣେ ପୂର୍ବ ଜନ୍ମମାନଙ୍କରେ ଯେଉଁ କର୍ମ କରିଛି ତାର ଫଳ ଏଠାରେ ପାଉଛି । ସେହିପରି ଆମେ ସମାଜରେ ଏପରି ଅନେକ ଦୃଷ୍ଟାନ୍ତ ପାଏ ଯେ ଜଣେ ଖୁବ୍ ଭଲ ମଣିଷ, ନିରୀହ ଓ ନ୍ୟାୟ ପରାୟଣ ତଥାପି ଜୀବନର ଘଟଣା ପ୍ରବାହ ତାଙ୍କ ପାଇଁ ପ୍ରତିକୂଳ ଓ ତାଙ୍କର ଅମାପ ଦୁଃଖ । ଅପର ପକ୍ଷରେ ଜଣେ ଅତ୍ୟନ୍ତ ଧୂର୍ତ୍ତ, ମିଥ୍ୟାବାଦୀ, କପଟୀ ଓ ଅନ୍ୟାୟୀ ତଥାପି ସକଳ ପ୍ରାଚୁର୍ଯ୍ୟର ଅଧିକାରୀ ଓ ତାଙ୍କର ସୁଖ ଓ ଉପଭୋଗ୍ୟର ଜୀବନ ।

ଏହି ବାସ୍ତବ ଅନୁଭବ ଆମକୁ ନୈତିକ ସ୍ତରରେ ପ୍ରହେଳିକା ପୂର୍ଣ୍ଣ ମନେହୁଏ । ଦାର୍ଶନିକମାନେ ଏହି ଅସଂଗତିର ଉତ୍ତର କର୍ମବାଦରୁ ହିଁ ଦେଇଥାନ୍ତି । କର୍ମବାଦରେ ଏହାର ବ୍ୟାଖ୍ୟା ହୁଏ ଯେ ଭଲ କାର୍ଯ୍ୟ କରି ମଧ୍ୟ ଯେ ଦୁଃଖ କଷ୍ଟରେ ବଞ୍ଚୁଛି ତାହା ତାଙ୍କ ପୂର୍ବ ଜନ୍ମର କର୍ମଫଳ ଓ ଯେ ଅନ୍ୟାୟ ଓ ଅସତ୍ୟରେ ରହି ସୁଖ ଭୋଗ କରୁଛି  ସେ ପରବର୍ତ୍ତୀ ଜୀବନରେ ତାର ଫଳ ପାଇବ । ବସ୍ତୁତଃ ସମାଜରେ ରହିଥିବା ଅନ୍ୟାୟ ଓ ବୈଷମ୍ୟର ଉତ୍ତର କର୍ମବାଦ ହିଁ ଦେଇଥାଏ ।

କର୍ମର ଫଳ କର୍ତ୍ତାକୁ ଭୋଗିବାକୁ ପଡ଼ିବ, ଏ ଜନ୍ମରେ ହେଉ ବା ଆଗାମୀ ଜନ୍ମମାନଙ୍କରେ ହେଉ । ଏହା ହିଁ କର୍ମବାଦର ଅଲଂଘ୍ୟ ନିୟମ । କୃତ କର୍ମର ଫଳ କେବେ ବି ନଷ୍ଟ ହେବ ନାହିଁ- ଏହା ଏକ ଈଶ୍ୱରୀୟ ବିଧାନ ଓ ଏହାର ଉଲଂଘନ ଅସମ୍ଭବ ।

ଏହି ପରିପ୍ରେକ୍ଷୀରେ କର୍ମମାନଙ୍କର ବି ବିଭାଜନ ଦାର୍ଶନିକ ଚିନ୍ତନରେ ଦେଖିବାକୁ ମିଳେ । ସମସ୍ତ କାର୍ଯ୍ୟମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ ଯଥା ସକାମ ଓ ନିଷ୍କାମ । ସକାମ କର୍ମ କାମନାଯୁକ୍ତ ଓ ଏଥିରୁ କର୍ତ୍ତା ଫଳ ପାଇବାକୁ ବାଧ । ନିଷ୍କାମ କର୍ମର ବିଭାଜନ ଭିତରେ ଅନେକ ଜଟିଳତା ଓ ବିରୋଧାଭାସ ରହିଛି, ତେବେ ତାହା ଏଠାରେ ଆମର ଆଲୋଚନାର ବିଷୟ ନୁହେଁ । ସକାମ କର୍ମମାନଙ୍କୁ ପୁନଶ୍ଚ ଦୁଇ ଶ୍ରେଣୀରେ ବିଭାଜନ କରାଯାଏ ଯଥା ପ୍ରାରବ୍ଧ ଓ ଅନାରବ୍ଧ । ଯେଉଁ କର୍ମର ଫଳ କର୍ତ୍ତାକୁ ମିଳୁଛି ବା ମିଳିଲାଣି ତାହା ହେଲା ପ୍ରାରବ୍ଧ, ଯେଉଁ କର୍ମର ଫଳ କର୍ତ୍ତାକୁ ମିଳି ନାହିଁ ତାହା ହେଲା ଅନାରବ୍ଧ । ପୁନଶ୍ଚ ଅନାରବ୍ଧ କର୍ମକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ ଯଥା ସଂଚିତ ଓ କ୍ରିୟମାଣ । ପୂର୍ବ ଜନ୍ମରୁ ସଞ୍ଚିତ ହୋଇ ରହିଥିବା କର୍ମର ଫଳ ଯାହା ଏ ପର୍ଯ୍ୟନ୍ତ ଫଳିନାହିଁ ତାହା ହେଲା ସଞ୍ଚିତ କର୍ମ । ବର୍ତ୍ତମାନ ଆମେ ଯେଉଁ ସବୁ କର୍ମ କରୁଅଛେ ତାହା ହେଲା କ୍ରିୟମାଣ କର୍ମ । ମୋଟ ଉପରେ କାମନାଯୁକ୍ତ କର୍ମମାନ ତିନି ଶ୍ରେଣୀର- ଯାହାର ଫଳ ଫଳିଲାଣି (ପ୍ରାରବ୍ଧ) , ଯାହାର ଫଳ ଫଳି ନାହିଁ ସଞ୍ଚିତ ହୋଇ ରହିଛି (ସଞ୍ଚିତ କର୍ମ) ଓ ଏହି ଜୀବନରେ ଆମେ ଯାହା ସବୁ କରିଚାଲିଛେ (କ୍ରିୟମାଣ କର୍ମ) । ତେବେ କ୍ରିୟମାଣ କର୍ମ ଓ ସଞ୍ଚିତ କର୍ମର ଫଳ କିପରି ଓ କେଉଁଠି ସଞ୍ଚିତ ହୋଇ ରହେ ଓ କେତେ ବ୍ୟବଧାନରେ ଓ କେଉଁ ପରିସ୍ଥିତିରେ କର୍ତ୍ତାକୁ ମିଳେ ସେ ନେଇ ଯାହା କିଛି ଦାର୍ଶନିକ ବିଚାର ଦେଖାଯାଏ ସେ ସବୁ କ୍ଷେତ୍ରରେ ବହୁ ଜଟିଳତା ଓ କେତେକ ବିରୋଧାଭାସ ମଧ ରହିଛି ଯାହାର କିଞ୍ଚିତ ସୂଚନା ପୂର୍ବରୁ ଦିଆଯାଇଛି । ତେବେ ଏ ସବୁ ଯେ କୌଣସି କାର୍ଯ୍ୟ - କାରଣ ନିୟମ ଆଧାରିତ ନୁହେଁ କିମ୍ବା ଏକ ପରୀକ୍ଷିତ ତଥ୍ୟ ନୁହେଁ ଏହା କୁହାଯାଇପାରେ ।

ତେବେ ଏଠାରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି ଯେ ଏ ଜନ୍ମରେ କର୍ମର ଫଳ କିପରି ଆଗାମୀ ଜୀବନ ମାନଙ୍କରେ ଫଳିବ କିମ୍ବା ପୂର୍ବ ଜୀବନ ମାନଙ୍କର ଫଳ ଏବେ କିପରି ଫଳୁଛି ସେ କ୍ଷେତ୍ରରେ ଅନେକ କଥାକୁ କଳ୍ପନା ବା ସ୍ୱୀକାର କରିନେବାକୁ ପଡିବ । ଭାରତୀୟ ଦର୍ଶନ ବିଦ୍ୟାଳୟ ମାନଙ୍କରେ ଅବିନାଶୀ ଆତ୍ମା, ଜନ୍ମାନ୍ତରବାଦକୁ ଯେପରି ଗ୍ରହଣ କରିନିଆଯାଇଛି, ସେହିପରି ଆତ୍ମା, ଶରୀର ଓ ମୃତ୍ୟୁ ନେଇ ଗୁଡ଼ିଏ କଳ୍ପନା ମଧ କରାଯାଇଛି । ବିଶ୍ୱାସ କରି ନିଆଯାଇଛି ଯେ ମଣିଷର ଏକ ଅବିନାଶୀ ଆତ୍ମା ରହିଛି, ଯାହା ଜନ୍ମ ମୃତ୍ୟୁର ଉର୍ଦ୍ଧ୍ୱରେ । ପୁନଶ୍ଚ ଶରୀରକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଛି ଯଥା ସ୍ଥୁଳ ଶରୀର ଓ ସୂକ୍ଷ୍ମ ଶରୀର । ମୃତ୍ୟୁ ସହ ସ୍ଥୁଳ ଶରୀର ନଷ୍ଟ ହୋଇଥାଏ ଅଥଚ ଆତ୍ମା ଓ ସୂକ୍ଷ୍ମ ଶରୀର ରହେ । ସୂକ୍ଷ୍ମ ଶରୀରରେ କର୍ମର ଫଳ ସଞ୍ଚିତ ହୋଇରହେ ଓ ଆତ୍ମାର ପୁନର୍ଜନ୍ମ ପରେ ସୂକ୍ଷ୍ମ ଶରୀରରେ ସଞ୍ଚିତ ହୋଇ ରହିଥିବା କର୍ମର ଫଳ ଫଳିଥାଏ ।

ବସ୍ତୁତଃ କର୍ମଫଳ ଭାବନାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଦର୍ଶନ ପରିସରରେ ଅବିନାଶୀ ଆତ୍ମା, ଜନ୍ମାନ୍ତରବାଦ ଓ ସୂକ୍ଷ୍ମ ଶରୀରକୁ ସ୍ୱୀକାର କରିନିଆଯାଇଛି ବା କଳ୍ପନା କରାଯାଇଛି । ତେବେ ଆତ୍ମାର ସ୍ୱରୂପ କ'ଣ ? ଏହି ପ୍ରଶ୍ନ ଉପରେ ଭାରତୀୟ ଦର୍ଶନରେ ନାନା କଳ୍ପନାର ଅବତାରଣା ଦେଖିବାକୁ ମିଳେ । କଳ୍ପନା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି (ଏପରିକି

ଇତର ପ୍ରାଣୀଙ୍କର ମଧ୍ୟ) ଭିତରେ ଏକ ଆତ୍ମା ବା ଚେତନଶୀଳ ସତ୍ତା ରହିଛି । ଅର୍ଥାତ୍ ମଣିଷ ଶରୀର ଓ ଆତ୍ମା ଏପରି ଦୁଇଟି ପୃଥକ୍ ସତ୍ତାର ସମାହାର । ମୃତ୍ୟୁ ପରେ ଆତ୍ମାର ଅସ୍ତିତ୍ୱ ରହେ । ଏହା ପୁନର୍ଜନ୍ମ ନିଏ, ଭାରତୀୟ ଚିନ୍ତନରେ ପୁନର୍ଜନ୍ମର ଭାବନା ରହିଛି । ତେବେ ଆତ୍ମାର ସ୍ୱରୂପ ନେଇ ଅଦ୍ୱୈତ ବେଦାନ୍ତ, ବିଶିଷ୍ଟାଦ୍ୱୈତ ବେଦାନ୍ତ, ନ୍ୟାୟ, ବୌଦ୍ଧ, ଚାର୍ବାକ ମତଗୁଡ଼ିକ ପରସ୍ପର ଠାରୁ ସଂପୂର୍ଣ୍ଣ ପୃଥକ୍ ଓ ଏପରିକି ପରସ୍ପର ବିରୋଧୀ । (ଏହି ପୁସ୍ତକରେ ପ୍ରକାଶିତ ପ୍ରବନ୍ଧ 'ଭାରତୀୟ ଚିନ୍ତନରେ ଆତ୍ମା ଓ ପୁନର୍ଜନ୍ମ' ଦ୍ରଷ୍ଟବ୍ୟ- ସେଠାରେ ଏହି ପ୍ରସଙ୍ଗ ଉପରେ ବିସ୍ତୃତ ଆଲୋଚନା କରାଯାଇଛି ।) ସେହିପରି ବ୍ୟକ୍ତିର ମୃତ୍ୟୁ ପରେ ବ୍ୟକ୍ତିର ଯେଉଁ ସୂକ୍ଷ୍ମ ଶରୀରର ପରିକଳ୍ପନା କରାଯାଇଛି ଯାହା କି ଭୋଗ୍ୟ ହୋଇନଥିବା କର୍ମର ଫଳର ବାହକ, ଏକ କାଳ୍ପନିକ ତତ୍ତ୍ୱ ମାତ୍ର । ବ୍ୟକ୍ତିର ପୁନର୍ଜନ୍ମ ମଧ୍ୟ ଏକ ତାତ୍ତ୍ୱିକ କଳ୍ପନା । ଆତ୍ମା, ସଞ୍ଚିତ କର୍ମଫଳ, ସୂକ୍ଷ୍ମ ଶରୀର, ପୁନର୍ଜନ୍ମ, ଈଶ୍ୱରୀୟ ବିଧାନ, ମୋକ୍ଷ ଇତ୍ୟାଦି ଭାବନା ନେଇ ଯେତେ ସବୁ କାଳ୍ପନିକ କାହାଣୀ ଧର୍ମ ଓ ଦର୍ଶନ ପରିସରରେ ଆଲୋଚିତ ହୋଇଛି ସେ ସବୁର କୌଣସି ବସ୍ତୁନିଷ୍ଠ ଭିତ୍ତି ନାହିଁ, ଏଗୁଡ଼ିକ କେବଳ କାଳ୍ପନିକ କାହାଣୀ ବା gross assumption । କୌତୂହଳର ବିଷୟ ଏଗୁଡ଼ିକ କାଳ୍ପନିକ ବିଚାର ହୋଇଥିବାରୁ ଏ ସବୁର ବ୍ୟାଖ୍ୟା କ୍ଷେତ୍ରରେ କୌଣସି ସହମତି ଦେଖିବାକୁ ମିଳେ ନାହିଁ । ବରଂ ବିଭିନ୍ନ ଦାର୍ଶନିକ ସିଷ୍ଟମମାନଙ୍କରେ ସେମାନଙ୍କର ତାତ୍ତ୍ୱିକ ଅବବୋଧ ନେଇ ସେମାନେ ଆତ୍ମା, କର୍ମଫଳ ସଂକ୍ରାନ୍ତରେ ବିଭିନ୍ନ ଅନୁମାନ କରିଛନ୍ତି । ଫଳତଃ ବିଭିନ୍ନ ବିଦ୍ୟାଳୟ ମାନଙ୍କ ମତର ଏକ ତୁଳନାତ୍ମକ ବ୍ୟାଖ୍ୟା କଲାବେଳେ ସେମାନଙ୍କର ବିରୋଧାଭାସ ସ୍ପଷ୍ଟ ହୋଇଥାଏ ।

ତେବେ ବ୍ୟକ୍ତି ସ୍ୱଭାବର ଭିନ୍ନତା, ସାମାଜିକ ଜୀବନରେ ବହୁ ବିରୋଧାଭାସ (ଯେପରିକି ଭଲ ମଣିଷ ମାନେ ଦୁଃଖ କଷ୍ଟରେ ଜୀବନ ବଞ୍ଚିବା ଅଥଚ ମନ୍ଦ ଲୋକମାନେ ସୁଖ ଶାନ୍ତିରେ ରହିବା) ସାମାଜିକ ଜଟିଳତା ପରିପ୍ରେକ୍ଷୀରେ ଏହାର ଏକ ବୋଧଗମ୍ୟ ସମାଧାନ ପାଇଁ ଦାର୍ଶନିକ ମାନେ କର୍ମଫଳର ଭାବନାକୁ ସୃଷ୍ଟି କରିଥିଲେ । ସବୁ ଧର୍ମରେ ଏହି ପ୍ରକାରର ନାନା କାଳ୍ପନିକ ଓ ତାତ୍ତ୍ୱିକ ଅନୁଚିନ୍ତନର ଚିତ୍ର ଦେଖିବାକୁ ମିଳେ । ସ୍ୱର୍ଗ, ନରକ, ବିଚାର ଦିବସ, ଆତ୍ମା, ପୁନର୍ଜନ୍ମ, କର୍ମଫଳ, ମୁକ୍ତି, ମୋକ୍ଷ, କୈବଲ୍ୟ ପରି ବହୁ ଭାବନା ଏହାର ପରିଣତି । ତେବେ ଏ ସବୁ ନେଇ ବିଭିନ୍ନ ସାଂସ୍କୃତିକ ପରିବେଶରେ ଜୀବନର କେତେକ ଅସମାହିତ ପ୍ରଶ୍ନର ଉତ୍ତର ଦେବା ପାଇଁ ନାନା କଳ୍ପନା ଭିତରେ ମଣିଷର ପ୍ରଜ୍ଞାକୁ ଗଭୀରତମ ସୋପାନକୁ ନେବାକୁ ପ୍ରୟାସ କରିଥିଲେ ମଧ୍ୟ ଏଗୁଡିକ କେବଳ କଳ୍ପନା ମାତ୍ର ଓ ଏସବୁ ପଶ୍ଚାତରେ ବସ୍ତୁନିଷ୍ଠ ସତ୍ୟତା ବା ତାର୍କିକ ସମର୍ଥନ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୪)

କର୍ମବାଦ କ୍ଷେତ୍ରରେ ଯେତେ ସବୁ ଭାବନାକୁ ସ୍ୱୀକାର କରାଯାଇଛି ( ଯଥା ଆତ୍ମା, ପୁନର୍ଜନ୍ମ, ଅଲଂଘ୍ୟ ଦୈବୀ ନିୟମ.... ଇତ୍ୟାଦି) ସେ ସବୁ କ୍ଷେତ୍ରରେ ନାନା ଅସଂଗତି ଦେଖିବାକୁ ମିଳେ । ତେବେ ସେ ସବୁକୁ ଯଦି ଏଡାଇ ଦିଆଯାଇ କର୍ମବାଦକୁ ଗ୍ରହଣ କରାଯାଏ, ତେବେ କର୍ମବାଦ ପ୍ରକୃତରେ କ'ଣ ମାନବିକ ଦୁଃଖ ଦୁର୍ଦ୍ଦଶାର ଏକ ସନ୍ତୋଷଜନକ ବ୍ୟାଖ୍ୟା ଦିଏ ? ଭଲ ମଣିଷମାନେ ଦୁଃଖ ଭୋଗ କରନ୍ତି ଓ ଦୁଷ୍ଟ ଲୋକମାନେ ସୁଖ ଆନନ୍ଦରେ ରହିବାର ଯେତେ ସବୁ ଦୃଷ୍ଟାନ୍ତ ଆମେ ସମାଜରେ ଦେଖେ, ଆମେ କ'ଣ କହିବା ଯେ ସେ ସବୁ ତାଙ୍କର ପୂର୍ବ ଜନ୍ମମାନଙ୍କର କର୍ମଫଳ ? ବ୍ୟକ୍ତିମାନଙ୍କର ଦୁଃଖ, କଷ୍ଟ, ଯନ୍ତ୍ରଣା ବା ସମାଜର ବ୍ୟକ୍ତିମାନଙ୍କ ଭିତରେ ଥିବା ବୈଷମ୍ୟକୁ ପୂର୍ବ ଜନ୍ମ ବା ଜନ୍ମମାନଙ୍କର

କର୍ମଫଳ କହି ବ୍ୟାଖ୍ୟା କରିବା ସମ୍ଭବ କି ? କର୍ମଫଳ ଯେ ଅଲଂଘ୍ୟ ଓ କର୍ମଫଳର ପ୍ରଭାବରୁ କେହି ଯେ ମୁକ୍ତ ନୁହଁନ୍ତି ଏହା କେତେକ ବିଶିଷ୍ଟ ଅଧ୍ୟାତ୍ମବାଦୀ ଦର୍ଶାଇଛନ୍ତି । ଭାରତୀୟ ସଂସ୍କୃତି ଓ ହିନ୍ଦୁ ଧର୍ମର ମହାନ୍ ପ୍ରବକ୍ତା ଶ୍ରୀରାମକୃଷ୍ଣ କର୍କଟ ରୋଗରେ ଆକ୍ରାନ୍ତ ହେବା, ସ୍ୱାମୀ ବିବେକାନନ୍ଦ ବହୁମୂତ୍ର ରୋଗରେ ପୀଡ଼ିତ ହୋଇ ଅଳ୍ପ ବୟସରେ ମୃତ୍ୟୁ ବରଣ କରିବା (ସେତେବେଳେ ଏହି ସବୁ ରୋଗର ଚିକିତ୍ସା ବାହାରି ନଥିଲା), ଜଣେ ବିଶିଷ୍ଟ ସ୍ୱାମୀ ପୃଥୁଳକାୟ ଯୋଗୁଁ ନାନା କଷ୍ଟ ଭୋଗ କରିବା ସୁବିଦିତ । ଏହିପରି ଅସଂଖ୍ୟ ଉଦାହରଣ ଜନ ଜୀବନରୁ ବା ଅନୁଭୂତିରୁ ଦିଆଯାଇପାରେ । ତେବେ ପ୍ରଶ୍ନ ହେଉଛି ଜୀବନର ଦୁଃଖ, ଘନଘଟା ଓ ନୈରାଶ୍ୟକୁ କର୍ମବାଦ ବୁଝାଇବାରେ ସମର୍ଥ କି ? କର୍ମବାଦ ଅନୁଯାୟୀ ଜନ୍ମାନ୍ତରବାଦ ରହିଛି ଓ ବ୍ୟକ୍ତି ଯେଉଁ କର୍ମ କରେ ତାର ଫଳ ଏ ଜନ୍ମରେ ହେଉ ବା ଆଗାମୀ ଜନ୍ମମାନଙ୍କରେ ହେଉ ସେ ଭୋଗ କରିବ । ଏହାନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଏକ ସୁଦୀର୍ଘ ଅତୀତ ଇତିହାସ ରହିଛି । ଏବେ ଯେ 'କ' ହୋଇଛି, ସେ ଅତୀତରେ ଅ, ଆ, ଇ.... ହୋଇ କ ପାଖରେ ପହଞ୍ଚିଛି ଓ ଭବିଷ୍ୟତରେ ସେ ଖ, ଗ, ଘ.... ଜନ୍ମ ନେଇ ଚାଲିବ ଯେ ପର୍ଯ୍ୟନ୍ତ ସେ ମୁକ୍ତି ବା ମୋକ୍ଷ ପାଇନାହିଁ । ମୁକ୍ତିର ଭାବନା ମଧ୍ୟ ଅତ୍ୟନ୍ତ ରହସ୍ୟମୟ ଓ ତାର୍କିକ ମାନଦଣ୍ଡରୁ ନାନା ଜଟିଳତା ସହ ସଂପୃକ୍ତ । ତେବେ ତାହା ଏଠାରେ ଆମର ଆଲୋଚ୍ୟ ବିଷୟ ନୁହେଁ । କର୍ମଫଳ ଅନୁଯାୟୀ 'ଅ' ଜୀବନର କର୍ମ 'ଆ' ଜୀବନକୁ ଓ 'ଆ' ଜୀବନର କର୍ମ 'ଇ' ଜୀବନକୁ ରୂପ ଦେଇଥାଏ । ଅ, ଆ, ଇ... ଜୀବନର କର୍ମର ସଞ୍ଚିତ ଫଳ ଏବେ 'କ' ପାଖରେ ମଧ୍ୟ ଭୋଗ୍ୟ ହୋଇପାରେ । ଆଜି 'କ' ଜୀବନର ସୁଖ ଦୁଃଖ 'ଅ' ଠାରୁ ଆରମ୍ଭ ହୋଇଥିବା ଜୀବନଠାରୁ ଗଡ଼ି ଆସିଛି । ଏହି ସିଦ୍ଧାନ୍ତର ଯଥାର୍ଥତାକୁ ବ୍ୟାଖ୍ୟା କରିବାରେ ବହୁ ତାର୍କିକ ସମସ୍ୟା ଓ ଜଟିଳତା ରହିଛି । ସେସବୁ ବାଦ୍ ଦେଇ ଯଦି ବି କର୍ମବାଦକୁ ଗ୍ରହଣ କରାଯାଏ, ତେବେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଆସିବ । ସମସ୍ତେ ଯଦି 'ଅ' ରୁ ଜୀବନ ଆରମ୍ଭ କରିଥାନ୍ତି, ତେବେ ପୂର୍ବରୁ 'ଅ'ର ଜୀବନ ନଥିଲା । ସୁତରାଂ 'ଅ'ର ଜୀବନ ପୂର୍ବଜନ୍ମର କର୍ମଫଳ ଦ୍ୱାରା ପ୍ରଭାବିତ ହୋଇନାହିଁ । ସୁତରାଂ ପ୍ରତ୍ୟେକ ଜୀବନ ଯେ ପୂର୍ବଜନ୍ମର କର୍ମଫଳ ଦ୍ୱାରା ସ୍ଥିରୀକୃତ ଏହା କୁହାଯିବ ନାହିଁ । ତେବେ ଧରାଯାଉ 'ଅ' ରୁ ଜୀବନ ଆରମ୍ଭ । ସେପରି ସ୍ଥଳେ 'ଅ୧'ରୁ ଜଣେ ନାନା ଜନ୍ମ ଦେଇ ବର୍ତ୍ତମାନ 'କ୧' ହୋଇଛି, ଅ୨, କ୨ ହୋଇଛି, ଅ୩, କ ୩..... ହୋଇଛି ବୋଲି କୁହାଯିବ । ତେବେ ଆମେ କ୧, କ୨, କ ୩... ମଧ୍ୟରେ ଯେତେବେଳେ ଏତେ ବିଭେଦ ଓ ପାର୍ଥକ୍ୟ ଦେଖୁଛେ, ତାହାର ପାର୍ଥକ୍ୟକୁ କର୍ମବାଦ ଅନୁଯାୟୀ ଆମେ ଅ୧, ଅ୨, ଅ୩... ପାଖକୁ ପଛକୁ ପଛ ନେଇପାରିବା । ତେବେ ପ୍ରଶ୍ନ ହେବ ଯେହେତୁ ଜୀବନ ଅ୧,ଅ୨,ଅ୩... ଠାରୁ ଆରମ୍ଭ ତେଣୁ ଅ୧, ଅ୨, ଅ୩... ମଧ୍ୟରେ ନିଶ୍ଚୟ ଅନ୍ତର୍ନିହିତ ପାର୍ଥକ୍ୟ ରହିଥିବ, ନହେଲେ ସେମାନେ କାହିଁକି ଭିନ୍ନ ଭିନ୍ନ କର୍ମ କରି ଭିନ୍ନ ଭିନ୍ନ ଜନ୍ମ ନେଇଛନ୍ତି ଓ ଭିନ୍ନ ଭିନ୍ନ ଫଳ ଲାଭ କରୁଛନ୍ତି ? ଯଦି କର୍ମଫଳ ସହିତ ଈଶ୍ୱରୀୟ ବିଧାନକୁ ସଂଶ୍ଳିଷ୍ଟ କରାଯିବ ତେବେ ଆମେ କହିବାକୁ ବାଧ୍ୟ ହେବା ଯେ ଅ୧,ଅ୨,ଅ୩... ଆତ୍ମାମାନଙ୍କୁ ଈଶ୍ୱର ବୈଷମ୍ୟପୂର୍ଣ୍ଣ ଭାବେ ଭିନ୍ନ ଭିନ୍ନ ସାମର୍ଥ୍ୟ ଦେଇ ସୃଷ୍ଟି କରିଛନ୍ତି ।

ଅବଶ୍ୟ ଏଠାରେ ଯୁକ୍ତି ହେବ ଯେ ଈଶ୍ୱର ଆତ୍ମାମାନଙ୍କୁ (ଅ୧, ଅ୨, ଅ୩... ଇତ୍ୟାଦିଙ୍କୁ) ସମାନ ସାମର୍ଥ୍ୟ ଦେଇ ଜନ୍ମ ଦେଇଥିଲେ । ତେବେ ଅ୧, ଅ୨, ଅ୩..... ନିଜର ସ୍ୱାଧୀନତା ଯୋଗୁଁ ଭଲ ମନ୍ଦ କାର୍ଯ୍ୟ କରିଛନ୍ତି ଓ ତାର ପରିଣତି ପରବର୍ତ୍ତୀ ଜୀବନରେ ଭୋଗ କରୁଛନ୍ତି । ତେବେ ଏଠାରେ ପ୍ରଶ୍ନ ଉଠିବ ଯେ ସମାନ ସମାନ ଆତ୍ମାମାନଙ୍କ

ଭିତରେ ତଥା ଏକ ଈଶ୍ୱର ନିୟନ୍ତ୍ରିତ ବିଧାନ ଭିତରେ କେତେକ ଆତ୍ମା ଭଲ କାର୍ଯ୍ୟ ପ୍ରତି ଆଗ୍ରହୀ ହେବା ଓ କେତେକ ମନ୍ଦ କାର୍ଯ୍ୟ ପ୍ରତି ଆଗ୍ରହୀ ହେବା ଦ୍ୱାରା ସେମାନଙ୍କର ଅନ୍ତର୍ନିହିତ ଅସମତା ସ୍ୱୀକୃତ ହେବ ନାହିଁ କି ? ଏହି ଅନ୍ତର୍ନିହିତ ବୈଷମ୍ୟ ପରବର୍ତ୍ତୀ କାଳରେ ଅଧିକ ବିକଶିତ ହୋଇ ଆଜିର ଏକ ବୈଷମ୍ୟ ପୂର୍ଣ୍ଣ ଦୁନିଆଁର ଚିତ୍ର ଦେଉଛି । ମୋଟ ଉପରେ ଆତ୍ମାମାନେ ଈଶ୍ୱରୀୟ ବିଧାନର ପରିଣତି ଓ ସବୁକିଛି ଦୈବୀ ବିଧାନ ଦ୍ୱାରା ପରିଚାଳିତ କହିବା ଦ୍ୱାରା ଆଜିର ବୈଷମ୍ୟପୂର୍ଣ୍ଣ ପରିଣତି ପାଇଁ ଈଶ୍ୱର ବା  ଈଶ୍ୱରୀୟ ବିଧାନକୁ ଦାୟୀ କରାଯିବ ନାହିଁ କି ? ଅର୍ଥାତ୍ ଏହି ଈଶ୍ୱରୀୟ ବୈଷମ୍ୟପୂର୍ଣ୍ଣ ସୃଷ୍ଟି ଯୋଗୁଁ ଭିନ୍ନ ଭିନ୍ନ ଆତ୍ମା ସେମାନଙ୍କର ଅନ୍ତର୍ନିହିତ ପାର୍ଥକ୍ୟ ଯୋଗୁଁ ଆଜିର ଏତେ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହେଉଛନ୍ତି । ସେପରି ସ୍ଥଳେ ଈଶ୍ୱରୀୟ ବିଧାନ ଯେ ସଂପୂର୍ଣ୍ଣ ଅନୈତିକ ଓ ବୈଷମ୍ୟ ପୂର୍ଣ୍ଣ ଏହା ହିଁ ତାର୍କିକ ପରିଣତି ଆସିବ ।

ଯଦି ଈଶ୍ୱରଙ୍କୁ ଏହି କର୍ମ ସିଦ୍ଧାନ୍ତରୁ ବାଦ୍ ଦିଆଯିବ (କାରଣ ଈଶ୍ୱର କେବେ ହେଲେ ଏକ ଅନୈତିକ ଓ ବୈଷମ୍ୟପୂର୍ଣ୍ଣ ବ୍ୟବସ୍ଥାର ପ୍ରବର୍ତ୍ତକ ବୋଲି ଈଶ୍ୱରବାଦୀମାନେ ଗ୍ରହଣ କରିବେ ନାହିଁ), ତେବେ ଏହାର ଅନ୍ୟ ଏକ ବ୍ୟାଖ୍ୟା ସମ୍ଭବ ହୋଇପାରେ । ଆଜି 'କ'ର ଏତେ ଦୁଃଖ କାହିଁକି ରହିଛି ବୋଲି ପ୍ରଶ୍ନ କଲେ ଉତ୍ତର ହେବ ଏହା ତାର ପୂର୍ବଜନ୍ମ ଔର କର୍ମଫଳ, ତେବେ ଔ କାହିଁକି ଏପରି ସବୁ କର୍ମ ସେ ଜନ୍ମରେ କରିଥିଲା ପ୍ରଶ୍ନର ଉତ୍ତର ହେବ ଏହା ଓ ଜନ୍ମର କର୍ମଫଳ । ପୁନଶ୍ଚ ଓ କାହିଁକି ସେପରି ଜୀବନ ବଞ୍ଚିଥିଲା ତାହାର ଉତ୍ତର ହେବ ଏହା ଐ ଜୀବନର ସଂସ୍କାର ଯୋଗୁଁ, ଐର ସଂସ୍କାର ଏପରି କାହିଁକି ହୋଇଥିଲାର ଉତ୍ତର ହେବ ଏହା ଏ ଜୀବନର କର୍ମର ପରିଣାମ ଯୋଗୁଁ । ସେପରି ସ୍ଥଳେ ଏହି ଧାରା ଅନନ୍ତକାଳ ପର୍ଯ୍ୟନ୍ତ ସୀମାହୀନ କ୍ରମରେ ପଛକୁ ପଛକୁ ଯିବ । କେତେକ ଦାର୍ଶନିକ ବିଦ୍ୟାଳୟ ଜୀବନକୁ ଏକ ଅନନ୍ତ ପ୍ରବାହ ଭାବେ ନେଇଛନ୍ତି ଓ ଆତ୍ମାମାନଙ୍କୁ ମଧ୍ୟ ଅନନ୍ତ ଓ ଅବିନାଶୀ ବୋଲି ସ୍ୱୀକାର କରିଛନ୍ତି । ଆତ୍ମାକୁ ଏକ ଅବିନାଶୀ ସତ୍ତା ଭାବେ ନେଇ ଜୀବନକୁ ଏକ ଅନନ୍ତ ପ୍ରବାହ ବୋଲି  ସ୍ୱୀକାର କରି ବ୍ୟକ୍ତିର ଦୁଃଖ ବା  ବାସ୍ତବ ଜୀବନର ବୈଷମ୍ୟକୁ ଅନନ୍ତ କ୍ରମରେ ପଛକୁ ପଛ ଠେଲିବା ଦ୍ୱାରା ଏହା ଅର୍ଥହୀନ ହେଉ ନାହିଁ କି ?

ବସ୍ତୁତଃ ବ୍ୟକ୍ତିମାନଙ୍କର ଦୁଃଖ ଦୁର୍ଦ୍ଦଶା ବା ସାମାଜିକ ସ୍ତରରେ ବୈଷମ୍ୟକୁ ବୁଝାଇବା ପରିପ୍ରେକ୍ଷୀରେ କର୍ମବାଦ ଓ ଜନ୍ମାନ୍ତରବାଦ ସେପରି କିଛି ଅର୍ଥପୂର୍ଣ୍ଣ ସିଦ୍ଧାନ୍ତ ହୋଇପାରିବା ମନେ ହୁଏ ନାହିଁ । କର୍ମବାଦ ଓ ଆତ୍ମା ସଂପର୍କିତ ବିଶ୍ୱାସଗୁଡ଼ିକ ଭିତରେ ଭାରତୀୟ ଦର୍ଶନରେ ଯାହା ସବୁ  ପରସ୍ପର ବିରୋଧୀ ମତ ରହିଛି ସେ ସବୁକୁ ଏଡ଼ାଇଗଲେ ମଧ୍ୟ ଜୀବନର ଘନଘଟା ଓ ସାମାଜିକ ସ୍ତରର ବୈଷମ୍ୟକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଏହା ସେପରି ଯୁକ୍ତିଶୀଳ ଭିତ୍ତି ଯୋଗାଇ ପାରିବ ନାହିଁ । କର୍ମ ସିଦ୍ଧାନ୍ତକୁ ଯେତେ ତର୍କଶୀଳ ଆଧାରରେ ସ୍ୱୀକାର କରିବାକୁ ଚାହିଁଲେ ମଧ୍ୟ ଏହାର ପରିଣତି ସ୍ୱରୂପ ହୁଏତ ଈଶ୍ୱରୀୟ ବ୍ୟବସ୍ଥାକୁ ଅନୈତିକ ବୋଲି ଗ୍ରହଣ କରିବାକୁ ହେବ ଅଥବା ସମସ୍ୟାଟିକୁ ଅନନ୍ତ କ୍ରମରେ ପଛକୁ ପଛକୁ ନେଇ ଅର୍ଥହୀନ କରିବାକୁ ହେବ । ସେପରି ସ୍ଥଳେ ମଣିଷ ସମାଜରେ ରହିଥିବା ରାଶି ରାଶି ଦୁଃଖ ଦୁର୍ଦ୍ଦଶାର ବା ବ୍ୟକ୍ତି ସ୍ୱଭାବର ଭିନ୍ନତା ବ୍ୟାଖ୍ୟା କରିବା କ୍ଷେତ୍ରରେ କର୍ମବାଦ ଏକ ଅର୍ଥଶୂନ୍ୟ ସିଦ୍ଧାନ୍ତରେ ପରିଣତ ହେବ ।

(୪)

କର୍ମ ଓ କର୍ମଫଳ ମଧ୍ୟରେ କେତେକ କାର୍ଯ୍ୟ କାରଣ ସଂପର୍କକୁ ଯୋଡ଼ିଥାନ୍ତି ଯାହାର ସୂଚନା ପୂର୍ବରୁ ଦିଆଯାଇଛି । ଯଦି କୁହାଯାଏ ଯେ ଜଣେ ମଣିଷର ଜୀବନର ସୁଖ, ଦୁଃଖ ବା ପ୍ରାପ୍ତି କେବଳ ଅତୀତ ଜୀବନର କର୍ମର ପରିଣାମ ମାତ୍ର,

ତେବେ ସେ କ୍ଷେତ୍ରରେ ଏହା ଏକ 'ପୂର୍ବ ନିର୍ଦ୍ଦିଷ୍ଟବାଦ' କୁ ସ୍ୱୀକୃତି ଦେବ । ପୂର୍ବନିର୍ଦ୍ଦିଷ୍ଟବାଦ ଅନୁଯାୟୀ ସବୁ କିଛି ପୂର୍ବରୁ ସ୍ଥିରୀକୃତ ଓ ଭାଗ୍ୟର ଫଳ କେହି ଅତିକ୍ରମ କରିପାରିବ ନାହିଁ । ଜଣେ ମଣିଷ କ'ଣ ହେବ, କେଉଁ କାର୍ଯ୍ୟ କରିବ, କିପରି ଜୀବନ ବଞ୍ଚିବ, ବିବାହ କରିବ କି ଅବିବାହିତ ରହିବ, ବିବାହ କଲେ କେଉଁଠି ବିବାହ କରିବ, ବୈବାହିକ ଜୀବନରେ ସୁଖୀ ହେବ କି ନାହିଁ ଏସବୁ ପୂର୍ବରୁ ନିର୍ଦ୍ଦିଷ୍ଟ ଓ ନିର୍ଦ୍ଧାରିତ; ତାର ସ୍ୱାଧୀନତାର କୌଣସି ଅର୍ଥ ହିଁ ନାହିଁ । କର୍ମ ଓ କର୍ମଫଳ ମଧ୍ୟରେ କାର୍ଯ୍ୟ କାରଣ ସଂପର୍କ ସ୍ଥାପନ କଲେ ପରିଣତି ହେବ ପୂର୍ବ ନିର୍ଦ୍ଦିଷ୍ଟବାଦ । କାରଣରୁ ଯେପରି କାର୍ଯ୍ୟ ନିଃସୃତ ହୁଏ ଓ ଏହା ଅପରିବର୍ତ୍ତନୀୟ, ସେହିପରି କର୍ମରୁ କର୍ମଫଳ ହିଁ ନିସୃତ ହେବ ଓ କର୍ତ୍ତା ତାହା ଭୋଗ କରିବ । ଏହି ଯୁକ୍ତିର ପରିଣାମ ହେବ ଯେ ଜଣେ ବ୍ୟକ୍ତି ଯେପରି କାର୍ଯ୍ୟ-କାରଣ ନିୟମକୁ ଲଂଘନ କରିପାରିବ ନାହିଁ, ସେହିପରି 'କର୍ମ-କର୍ମଫଳ-କର୍ମଫଳ ପ୍ରାପ୍ତି' ଶୃଙ୍ଖଳାକୁ ଏଡ଼ାଇ ପାରିବ ନାହିଁ ।

କର୍ମ, କର୍ମଫଳ ଓ କର୍ତ୍ତାର କର୍ମଫଳ ପ୍ରାପ୍ତି ଭିତରେ କାର୍ଯ୍ୟ-କାରଣ ନିୟମକୁ ସଂଶ୍ଳିଷ୍ଟ କରିବା ଦ୍ୱାରା ଯେଉଁ ପୂର୍ବ ନିର୍ଦ୍ଦିଷ୍ଟବାଦର ଉଦ୍ଭବ ହେବ ତାହାର ଏକ ନକାରାତ୍ମକ ପ୍ରଭାବ ରହିପାରେ । ଭାରତୀୟ ପୃଷ୍ଠଭୂମିରେ ଉଚ୍ଚ-ନୀଚ ଭେଦଭାବପୂର୍ଣ୍ଣ ବର୍ଣ୍ଣ ବ୍ୟବସ୍ଥା ଓ ଜାତିବାଦ ଯେତେ ତର୍କବରୋଧୀ ଓ ନୀତିବିରୋଧୀ ହେଲେ ମଧ୍ୟ ଯୁଗ ଯୁଗ ଧରି ତିଷ୍ଠି ରହିବାର ଏକ କାରଣ ହେଉଛି, 'ପୂର୍ବ ନିର୍ଦ୍ଦିଷ୍ଟବାଦୀ' ଜୀବନ ଦର୍ଶନ । ଯେ ଉଚ୍ଚ ଜାତିରେ ଜନ୍ମ ନେଇଛି ସେ ତାର ପୂର୍ବ ଜନ୍ମର କର୍ମଫଳ ଯୋଗୁଁ ଉଚ୍ଚ ବର୍ଣ୍ଣରେ ଜନ୍ମ ନେଇଛି, ଯେ ଦଳିତ, ଶୂଦ୍ର ବା ଅତିଶୂଦ୍ର ହୋଇଛି ସେ ତାର ପୂର୍ବ ଜନ୍ମର ଦୁଃଷ୍କୃତି ଯୋଗୁଁ ଏପରି ହୋଇଛି । ସୁତରାଂ ଏହି ବ୍ୟବସ୍ଥା ଈଶ୍ୱରୀୟ ବିଧାନର ପରିଣତି ମାତ୍ର ଓ ପୂର୍ବନିର୍ଦ୍ଦିଷ୍ଟ । ଏହାର ଉଲ୍ଲଂଘନ ନୀତିବିରୋଧୀ ଓ ଧର୍ମବିରୋଧୀ । ଯେଉଁମାନେ ସମାଜ ସଂସ୍କାରର ସ୍ୱର ଉଠାଇଛନ୍ତି, ସେମାନଙ୍କ ବିରୁଦ୍ଧରେ ଏହି ପ୍ରକାର ଯୁକ୍ତି ଦିଆଯାଇ ଆସିଛି । ଫଳତଃ ଜାତିବାଦ ଏକ ଧାର୍ମିକ ସ୍ୱୀକୃତି ନେଇ ଯୁଗ ଯୁଗ ଧରି ଭାରତୀୟ ସମାଜରେ ତିଷ୍ଠି ରହିଛି । କୌଣସି ସାମାଜିକ ମନ୍ଦ ବ୍ୟବସ୍ଥାକୁ ଜାବୁଡ଼ି ଧରିଥିବା ରକ୍ଷଣଶୀଳ ବ୍ୟକ୍ତିମାନେ ହିଁ କାର୍ଯ୍ୟ-କାରଣ ନିୟମର ସାଦୃଶ୍ୟରେ ବର୍ତ୍ତମାନର ସ୍ଥିତିକୁ ଅତୀତର କର୍ମ, କର୍ମଫଳ ଓ କର୍ତ୍ତାର କର୍ମଫଳ ପ୍ରାପ୍ତି ଆଧାରରେ ବ୍ୟାଖ୍ୟା କରିବା ଦେଖାଯାଏ ।

ଯେଉଁମାନେ ଭାଗ୍ୟ ଓ ପୂର୍ବନିର୍ଦ୍ଦିଷ୍ଟବାଦରେ ବିଶ୍ୱାସ କରନ୍ତି ସେମାନେ ବ୍ୟକ୍ତି ସ୍ୱାଧୀନତା, ମାନବିକ ପ୍ରୟାସ, ଜ୍ଞାନ ବିଜ୍ଞାନର ବିକାଶ ଦ୍ୱାରା ପରିସ୍ଥିତି ଉପରେ କର୍ତ୍ତୃତ୍ୱବୋଧ ଉପରେ ଗୁରୁତ୍ୱ ପ୍ରଦାନ କରନ୍ତି ନାହିଁ । ଅପର ପକ୍ଷରେ ଭାଗ୍ୟ, ନିୟତି, ସମର୍ପଣ, ଅସହାୟବୋଧ ହିଁ ଏହି ଜୀବନଦର୍ଶନର ମୂଳମନ୍ତ୍ର ହୋଇଥାଏ । ଜୀବନରେ ମହାନ ହୋଇଥିବା ବ୍ୟକ୍ତିଗଣ କେବଳ ସେମାନଙ୍କର ପୂର୍ବ ଜନ୍ମର ସଂଚିତ ସୁକର୍ମ ପରିଣତିରୁ ଯେ ମହାନ ହୋଇଛନ୍ତି ଏହି ପ୍ରକାରର ଯୁକ୍ତି ଧାର୍ମିକ ରକ୍ଷଣଶୀଳ ଲୋକମାନେ ପ୍ରାୟ ଦେଇଥାନ୍ତି । କେହି ଇଚ୍ଛା କଲେ ସକ୍ରେଟିସ୍ ବା ଗାନ୍ଧୀଙ୍କ ସ୍ତରକୁ ଆସିପାରିବ ନାହିଁ । ସକ୍ରେଟିସ୍ କେତେ ଜନ୍ମର ସୁକର୍ମର ପରିଣତିରୁ ମହାନ ହେଲେ ଓ ଗାନ୍ଧୀ ସେହିପରି ଅତୀତ ଜୀବନର ସଂଚିତ ସୁକର୍ମରୁ ଜଣେ ମହାତ୍ମା ହେଲେ । ଏହି ପ୍ରକାରର ଯୁକ୍ତି ଗ୍ରହଣଯୋଗ୍ୟ କି ? ଏହାକୁ ଗ୍ରହଣ କରିବା ପଶ୍ଚାତରେ କ'ଣ ଆଧାର ରହିଛି ? ସକ୍ରେଟିସ୍, ଗାନ୍ଧୀ ବା କେହି ସେମାନଙ୍କର ପୂର୍ବଜନ୍ମମାନଙ୍କର ସଞ୍ଚିତ ମହାନ କର୍ମର ଫଳ ସ୍ୱରୂପ ଜୀବନରେ ସଫଳ ହୋଇଛନ୍ତି କହିବା ଏକ ଆଧାରହୀନ ବିଶ୍ୱାସ । ବରଂ ସେମାନଙ୍କର ଜୀବନର ଘଟଣାବଳୀକୁ ବିଶ୍ଳେଷଣ

କରି ନାନା ପାରିପାର୍ଶ୍ୱିକ ପରିସ୍ଥିତି, ସେମାନଙ୍କର ଗଭୀର ଚିନ୍ତନ, ଆତ୍ମ ବିଶ୍ୱାସ, ସତ୍ୟ, ନ୍ୟାୟ ପ୍ରତି ନିଷ୍ଠା ଇତ୍ୟାଦି ନାନା କାରଣର ସମ୍ମିଳିତ ପ୍ରଭାବର ପରିଣାମରୁ ସେମାନେ ଇତିହାସ ପୃଷ୍ଠାରେ ମହାନ ଜୀବନର ଅଧିକାରୀ ହୋଇଛନ୍ତି ବୋଲି କୁହାଯାଇପାରିବ । ପୂର୍ବନିର୍ଦ୍ଧିଷ୍ଟବାଦୀଙ୍କର ଯୁକ୍ତି ବିଶ୍ଳେଷଣ କଲେ ଏକ ଅରୁଚିକର ଓ ଏପରିକି ଅନୁପାଦେୟ ସିଦ୍ଧାନ୍ତ ଆସିପାରିବ । ପ୍ରଦତ୍ତ ଉଦାହରଣରେ ସକ୍ରେଟିସ୍ ବିଚାରାଳୟ ଦ୍ୱାରା ମୃତ୍ୟୁ ଦଣ୍ଡ ପାଇବା (ଏହା ଯେତେ ଅନ୍ୟାୟପୂର୍ଣ୍ଣ ହେଲେ ମଧ୍ୟ) ଓ ଗାନ୍ଧୀ ଆତତାୟୀର ଗୁଳିରେ ମୃତ୍ୟୁବରଣ କରିବା ମଧ୍ୟ ସେମାନଙ୍କର ଜୀବନର ଘଟଣା । ତେବେ ଯଦି ଏଥିରୁ ମଧ୍ୟ ଅନୁମାନ କରାଯିବ ଯେ ସକ୍ରେଟିସ୍ ଓ ଗାନ୍ଧୀ ସେମାନଙ୍କ ପୂର୍ବ ଜନ୍ମ ମାନଙ୍କରେ କାହାକୁ ହତ୍ୟା କରିଥିବେ ବା ପାପ ଅର୍ଜନ କରିଥିବେ ଫଳରେ ସେମାନେ ଏପରି ପରିଣତି ପାଇଲେ, ତେବେ ତାହା ଏହି ଯୁକ୍ତିକୁ ଅତ୍ୟନ୍ତ ଅରୁଚିକର ସ୍ଥିତିକୁ ନେବ । ମୋଟ ଉପରେ କର୍ମ, କର୍ମଫଳ ଓ କର୍ତ୍ତାର କର୍ମଫଳ ପ୍ରାପ୍ତି ସହ ଅବିନାଶୀ ଆତ୍ମା, ଜନ୍ମାନ୍ତରବାଦ, ସଞ୍ଚିତ କର୍ମର ଫଳ ଇତ୍ୟାଦି ଭାବନାକୁ ସଂଶ୍ଳିଷ୍ଟ କରାଯାଇ ଯଦି ପୂର୍ବନିର୍ଦ୍ଧିଷ୍ଟବାଦକୁ ସ୍ୱୀକାର କରାଯିବ ତେବେ ସେଥିରୁ ନକାରାତ୍ମକ ଓ ଅରୁଚିକର ସିଦ୍ଧାନ୍ତର ପରିଣତି ଆସିବ ।

ଉପସଂହାରରେ ଏହା କହିବାକୁ ଉଚିତ୍ ମନେ କରୁଛି ଯେ କର୍ମ ଓ କର୍ମଫଳ କୌଣସି କାର୍ଯ୍ୟକାରଣ ନିୟମ ଉପରେ ଆଧାରିତ ନୁହେଁ । ଏହି ସିଦ୍ଧାନ୍ତ ସହ ଅବିନାଶୀ ଆତ୍ମା, ଜନ୍ମାନ୍ତରବାଦ, ଈଶ୍ୱରୀୟ ବିଧାନ ଇତ୍ୟାଦି ସଂଶ୍ଳିଷ୍ଟ ହେଲେ ବହୁ ଅସଂଗତି ଓ ଜଟିଳତା ଆସିବ ଓ ପରିଣାମତଃ କର୍ମବାଦ ଅଧିକ ରହସ୍ୟମୟ ହୋଇଯିବ । ସେହିପରି କର୍ମସିଦ୍ଧାନ୍ତ ସହ ପୂର୍ବନିର୍ଦ୍ଧିଷ୍ଟବାଦକୁ ସଂଲଗ୍ନ କଲେ ଏଥିରୁ ଅତ୍ୟନ୍ତ ଅରୁଚିକର ସିଦ୍ଧାନ୍ତ ମଧ୍ୟ ଉଦ୍ଭବ ହେବ । ସୁତରାଂ କର୍ମବାଦ ଏକ ବୈଜ୍ଞାନିକ ସତ୍ୟ ବା କାର୍ଯ୍ୟକାରଣ ନିୟମ ଆଧାରିତ ସିଦ୍ଧାନ୍ତ ନୁହେଁ ।

ତେବେ କର୍ମବାଦର ଏକ ନୈତିକ ତାତ୍ପର୍ଯ୍ୟ ରହିଛି ଓ ଏହାକୁ ଏକ ନୈତିକ ସିଦ୍ଧାନ୍ତ ଭାବେ ସାମାଜିକ ଜୀବନ ପ୍ରବାହରେ ନିଆଯାଇପାରେ । ଆମର ବିଚାରଶୀଳତା ଓ ନୈତିକ ରୁଚିବୋଧରୁ ଆମେ ଆଶା କରେ ଯେ ଭଲ କାର୍ଯ୍ୟକୁ ପ୍ରଶଂସା ଓ ମନ୍ଦ କାର୍ଯ୍ୟକୁ ନିନ୍ଦା କରାଯିବା ଦରକାର । ସେହିପରି ସୁକର୍ମକୁ ସାମାଜିକ ସ୍ୱୀକୃତି ଓ କୁକର୍ମକୁ ଦଣ୍ଡ ମିଳିବା ଆବଶ୍ୟକ । ପୁନଶ୍ଚ କର୍ତ୍ତାର ସ୍ୱାଧୀନତାକୁ ମଧ୍ୟ ସ୍ୱୀକାର କରାଯିବା ଦରକାର, ନହେଲେ କର୍ମର କୌଣସି ନୈତିକ ମୂଲ୍ୟାୟନ ସମ୍ଭବ ନୁହେଁ । କର୍ତ୍ତା ସ୍ୱାଧୀନ ଭାବେ ନିଜର ବୁଦ୍ଧି ପ୍ରୟୋଗ କରି ଯାହା ନିଷ୍ପତ୍ତି କରି କରେ ତାହା ନୈତିକ ମୂଲ୍ୟାୟନର ପରିସରଭୁକ୍ତ ହୋଇଥାଏ । ଆମର ନୈତିକ ଅବବୋଧ ଭିତରେ କର୍ତ୍ତା ତାହାର ନିଷ୍ପତ୍ତି ମୂଳକ କର୍ମ ପାଇଁ ସଂପୂର୍ଣ୍ଣ ଉତ୍ତରଦାୟୀ । ସୁତରାଂ କର୍ତ୍ତାର ସ୍ୱାଧୀନତା, କର୍ମର ମନୋନୟନ କ୍ଷେତ୍ରରେ ନିଜର ନିଷ୍ପତ୍ତି, ଉତ୍ତରଦାୟିତ୍ୱବୋଧ, ସାମାଜିକ ସ୍ୱୀକୃତି ବା ଅସ୍ୱୀକୃତି, ପୁରସ୍କାର ବା ଦଣ୍ଡବିଧାନ ଇତ୍ୟାଦି ପ୍ରସଙ୍ଗ କର୍ମବାଦ ସହ ସଂଶ୍ଳିଷ୍ଟ ହେବା ଯୋଗୁଁ କର୍ମବାଦର ଏକ ନୈତିକ ତାତ୍ପର୍ଯ୍ୟ ରହିବା ଦେଖାଯାଏ ।

ସମାଜରେ ବ୍ୟକ୍ତିମାନଙ୍କର କର୍ମର ନୈତିକ ମାନ ଉପରେ ସାମାଜିକ ଜୀବନର ଗୁଣାତ୍ମକ ମାନ ନିର୍ଭର କରେ । ଯେଉଁ ସମାଜରେ ନାଗରିକ ଶୃଙ୍ଖଳାବୋଧ, ବ୍ୟକ୍ତି ମର୍ଯ୍ୟାଦାବୋଧ, କୌଣସି ଲକ୍ଷ୍ୟ ହାସଲ କ୍ଷେତ୍ରରେ ପ୍ରୟୋଗ କରୁଥିବା ସାଧନ ବା ପନ୍ଥାର ପବିତ୍ରତା ନେଇ ଜନମାନସରେ ଶୃଙ୍ଖଳା ଥାଏ ଓ ଏସବୁ ବହୁଳ ଭାବେ ବ୍ୟକ୍ତିମାନଙ୍କର ଆଚରଣରେ ପ୍ରତିଫଳିତ ହେଉଥାଏ ସେଠାରେ ସମାଜ ଉନ୍ନତ ହୁଏ । ଏସବୁ ଦ୍ୱାରା ସାମାଜିକ ଜୀବନର ଗୁଣାତ୍ମକ ମାନ ଉନ୍ନତ ହେବା

ଅନୁଭୂତିରୁ **ସ୍ପଷ୍ଟ** । ଅପର ପକ୍ଷରେ ନାଗରିକ ବିଶୃଙ୍ଖଳା, ଯେକୌଣସି ପନ୍ଥା ପ୍ରୟୋଗ କରି ନିଜର ଅଭିଳଷିତ ଲକ୍ଷ୍ୟ ହାସଲ କରିବାର ମାନସିକତା ଓ ମଣିଷ ପ୍ରତି ସମ୍ମାନବୋଧ ପରିବର୍ତ୍ତେ ବୈଷମ୍ୟପୂର୍ଣ୍ଣ ଦୃଷ୍ଟିକୋଣର ପ୍ରାବଲ୍ୟ ଯେଉଁଠି ଥାଏ, ତାହା କୌଣସି ଉନ୍ନତ ସମାଜର ଚିତ୍ର ଦେଇନଥାଏ । କର୍ମର ଗୁଣାତ୍ମକ ମାନଦ୍ୱାରା ସମାଜ ଉନ୍ନତ ହୁଏ, ସଂସ୍କୃତିସଂପନ୍ନ ଜୀବନର ବିକାଶ ହୁଏ ଓ ମାନବିକ ସଂପ୍ରୀତି ସମାଜରେ ସୁଦୃଢ଼ ହୁଏ ।

କର୍ମବାଦକୁ ଏକ ନୈତିକ ଆଦର୍ଶର ଭିତ୍ତି ଉପରେ ଗ୍ରହଣ କଲେ ଏହାର ଏକ ବ୍ୟାବହାରିକ ମହତ୍ତ୍ୱ ମଧ୍ୟ ରହିବ । କର୍ମର ପରିଣାମ ବ୍ୟକ୍ତିର ଆଗାମୀ ଜୀବନକୁ ପ୍ରଭାବିତ କରିବ ନାହିଁ, କାରଣ ଜନ୍ମାନ୍ତରବାଦ ଭାବନାଟି ସଂପୂର୍ଣ୍ଣ ଭାବେ ଏକ ଧାର୍ମିକ କଳ୍ପନା । ବରଂ ବ୍ୟକ୍ତିମାନଙ୍କର ମହତ୍ତର କର୍ମ ଆଗାମୀ ପିଢ଼ିକୁ ପ୍ରଭାବିତ କରିବ ଓ ସାମାଜିକ ଜୀବନର ଗୁଣାତ୍ମକ ବିକାଶରେ ସହାୟକ ହେବ । ସମାଜରେ ମହତ୍ତର କର୍ମ ବା ନୈତିକ ଶୃଙ୍ଖଳା ପ୍ରତି ଯେଉଁ ସ୍ୱୀକୃତି ରହିଛି ତାହା ସଭ୍ୟତାର ବିକାଶ ଧାରାରେ ଅଭ୍ୟୁଦୟ ହୋଇଛି । ସୁତରାଂ ସମାଜରେ ବ୍ୟକ୍ତିମାନେ ଯଦି ମହତ୍ତର କର୍ମରେ ବ୍ରତୀ ହେବେ, ତେବେ ସମାଜରେ ଉନ୍ନତ ପରମ୍ପରା ସୃଷ୍ଟି ହେବ ଓ ସମାଜର ନୈତିକ ଉତ୍ତରଣ ଘଟିବ । ସମାଜର ନୈତିକ ଉତ୍ତରଣ ଦ୍ୱାରା ବ୍ୟକ୍ତିଗତ ତଥା ସମଷ୍ଟିଗତ ଜୀବନ ମହତ୍ତର, ସଂସ୍କୃତିସଂପନ୍ନ ଓ ଗୁଣାତ୍ମକ ପ୍ରଗତି ଦିଗରେ ଅଗ୍ରସର ହେବ ।



# ଧର୍ମ ଜିଜ୍ଞାସା : ଏକ ଅନୁଶୀଳନ

ଯୁଗ ଯୁଗ ଧରି ଧର୍ମଭାବନା ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ପ୍ରଭାବିତ କରିଆସିଛି । ଧର୍ମର ଉତ୍ପତ୍ତି ସମୟରୁ ଏପର୍ଯ୍ୟନ୍ତ ଏହା ଅନେକାଂଶରେ ସାମାଜିକ ନିୟନ୍ତ୍ରଣର ଭିତ୍ତି ହୋଇ ରହିଛି । ସମାଜର ସାଂସ୍କୃତିକ ବିକାଶର ଇତିହାସ ସହ ଧର୍ମଭାବନା ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ ହୋଇଆସିଛି । କୌଣସି ରାଷ୍ଟ୍ରର ଇତିହାସ ପର୍ଯ୍ୟାଲୋଚନା କଲେ ଧର୍ମ ଭାବନା କିପରି ସେହି ରାଷ୍ଟ୍ର ବା ସମାଜର ସାଂସ୍କୃତିକ ଉନ୍ମେଷ ଘଟାଇବା ସହିତ ସାମାଜିକ ନିୟନ୍ତ୍ରଣ ଓ ଐକ୍ୟ ଭାବରେ କାର୍ଯ୍ୟ କରିଛି ତାହା ଦେଖିବାକୁ ମିଳିଥାଏ । ବସ୍ତୁତଃ ଧର୍ମଭାବନା ସହିତ ମଣିଷର ଭାବଗତ ସମ୍ବନ୍ଧ ରହିଯାଇଛି । ହୁଏତ ସାର୍ବଭୌମ ରାଷ୍ଟ୍ରର ପରିକଳ୍ପନା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ସହିତ ଧର୍ମ ପ୍ରତି ମଣିଷର ଦୃଷ୍ଟିକୋଣରେ ପରିବର୍ତ୍ତନ ଆସିଛି । ସମାଜର ପରିବର୍ତ୍ତିତ ମୂଲ୍ୟବୋଧ ଓ ପରିସ୍ଥିତି ଯୋଗୁଁ ଧର୍ମ ସାମାଜିକ ନିୟନ୍ତ୍ରଣର ଏକକ ଭିତ୍ତି ଭାବରେ ଗୃହୀତ ହୋଇନାହିଁ । ତଥାପି ବହୁ ସମାଜରେ ଧର୍ମ ଚେତନା ଅନେକ ସମୟରେ ରାଷ୍ଟ୍ରୀୟ ବା ସାମାଜିକ ସଂଗଠନ କ୍ଷେତ୍ରରେ ପ୍ରମୁଖ ସ୍ଥାନ ନେଇଆସିଛି । କେତେକ ବ୍ୟକ୍ତି ଧର୍ମକୁ ଜୀବନର ଚରମ ଲକ୍ଷ୍ୟ ଭାବରେ ଗ୍ରହଣ କରିବା ସହିତ ରାଷ୍ଟ୍ରୀୟ ବ୍ୟବସ୍ଥାକୁ ଧର୍ମୀୟ ଅନୁଶାସନ ଉପରେ ପର୍ଯ୍ୟବସିତ କରିବାକୁ ମତପୋଷଣ କରିଥାନ୍ତି । ସେହିପରି ଅନ୍ୟ କେତେକ ଧର୍ମ ଯେ ଜନଗଣଙ୍କର ଏକ ଅଫିମ ନିଶା ଏହା ବିଚାରକରି ସମାଜକୁ ସମସ୍ତ ଧର୍ମ ଭାବନାଠାରୁ ମୁକ୍ତ ରଖିବାକୁ ସାମାଜିକ ଲକ୍ଷ୍ୟ ଭାବରେ ଗ୍ରହଣ କରିଥାନ୍ତି । ବସ୍ତୁତଃ କେତେକଙ୍କ ପାଇଁ ଧର୍ମ ଜୀବନର ସର୍ବୋତ୍ତମ ପ୍ରାପ୍ତି ଭାବରେ ଗ୍ରହଣୀୟ ହେବା ବେଳେ ଅନ୍ୟମାନଙ୍କ ପାଇଁ ଏହା ସଂସ୍କୃତି ସଂପନ୍ନ ଜୀବନର ପରିପନ୍ଥୀ ଭାବରେ ଗ୍ରହଣୀୟ ହୋଇଥାଏ । ଧର୍ମଭାବନା ସହିତ ଏପରି ପରସ୍ପର ବିରୋଧୀ ଦୃଷ୍ଟିଭଙ୍ଗୀ ଅନେକ ସମୟରେ ଦେଖିବାକୁ ମିଳିଥାଏ ।

କୌଣସି ପ୍ରକାରର ଭାବପ୍ରବଣତା ଯେକୌଣସି ପ୍ରତ୍ୟୟର ମୌଳିକ ଅର୍ଥ ବୁଝିବାରେ ଅନ୍ତରାୟ ହୋଇଥାଏ । ବିଶେଷ କରି 'ଧର୍ମ' କ୍ଷେତ୍ରରେ ଏହି ଭାବପ୍ରବଣତା ଯୋଗୁଁ ଏହାର ଯଥାର୍ଥ ଓ ବସ୍ତୁନିଷ୍ଠ ବ୍ୟାଖ୍ୟା ବାଧାପ୍ରାପ୍ତ ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ଶବ୍ଦ ସାଧାରଣ ପରିଭାଷାରେ ବହୁବିଧ ଅର୍ଥରେ ବ୍ୟବହୃତ ହେଉଥିଲେ ତାହା ଚିନ୍ତାସ୍ତରରେ ସମୟରେ ବିଭ୍ରାଟ ସୃଷ୍ଟି କରିଥାଏ । ଅବଶ୍ୟ ଆମର ସାଧାରଣ ଭାଷା ବ୍ୟବହାରରେ ଓ ବୌଦ୍ଧିକ ଆଲୋଚନା (Discourse) ରେ କେତେକ ଶବ୍ଦ ବହୁ ଅର୍ଥରେ ବ୍ୟବହୃତ ହୋଇଥାନ୍ତି । ଶବ୍ଦମାନଙ୍କର ଅର୍ଥଗତ ଭିନ୍ନତା ପରିପ୍ରେକ୍ଷୀରେ ଏକ ଶବ୍ଦକୁ ଭିନ୍ନ ଭିନ୍ନ ପ୍ରତ୍ୟୟରେ ବ୍ୟବହାର କରାଯାଉଥିବାରୁ ତାହା ବିଚାର ବିମର୍ଶରେ ଅସ୍ପଷ୍ଟତା ଆଣିଥାଏ । ଅର୍ଥାତ୍ ସାଧାରଣ ପରିଭାଷାରେ କୌଣସି ଶବ୍ଦ ସ୍ଥଳ ବିଶେଷରେ ବହୁବିଧ ଅର୍ଥରେ ବ୍ୟବହୃତ ହେଉଥିଲେ ତା'ର ସୈଦ୍ଧାନ୍ତିକ ଭିତ୍ତି ନେଇ ସମସ୍ୟା ଆସିଥାଏ । ଏହି ପରିପ୍ରେକ୍ଷୀରେ ଧର୍ମ ଶବ୍ଦ ଭାରତୀୟ ପରିଭାଷାରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହେବା ଦେଖାଯାଏ । ନିମ୍ନରେ ଏହାର ଅନ୍ତତଃ ଚାରୋଟି ପୃଥକ୍ ଅର୍ଥ ଦର୍ଶାଯାଇଛି । ଗୋଟିଏ ଶବ୍ଦରୁ ଚାରୋଟି ପୃଥକ୍ ପ୍ରତ୍ୟୟ ଆସୁଥିବାରୁ

ଏହାର ସଂଜ୍ଞା ପ୍ରଦାନରେ ଅସୁବିଧା ହୋଇଥାଏ । ଧର୍ମକୁ କିପରି ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର କରାଯାଇଥାଏ ତାହା ବିଚାର କରାଯାଉ ।

ଭାରତୀୟ ଦର୍ଶନଶାସ୍ତ୍ର ପରିପ୍ରେକ୍ଷୀରେ ଧର୍ମ ଶବ୍ଦ ଏକ ବୈଷୟିକ ଅର୍ଥରେ ବ୍ୟବହୃତ ହୋଇଥାଏ । ବିଶେଷ କରି ଜୈନ ଦର୍ଶନରେ ଧର୍ମ ଓ ଅଧର୍ମ ଶବ୍ଦକୁ କୌଣସି ବସ୍ତୁର ଗତିଶୀଳତା ବା ଅଚଳ ଅବସ୍ଥା ଅର୍ଥରେ ଯଥାକ୍ରମେ ବ୍ୟବହାର କରାଯାଇଥାଏ । ବସ୍ତୁରେ ଧର୍ମ ଥିବାରୁ ତାହା ଗତିଶୀଳ ହୋଇଥାଏ ଓ ଅଧର୍ମ ଯୋଗୁଁ ଗତିହୀନ ବା ଅଚଳ ହୋଇଥାଏ । ଜୈନମାନେ ଏହି ଭାବରେ ଧର୍ମ ଓ ଅଧର୍ମକୁ ଏକ ବସ୍ତୁସତ୍ତା ଭାବରେ ଗ୍ରହଣ କରିଥାନ୍ତି । ଜୈନ ଦର୍ଶନର ଏହି ବୈଷୟିକ ଅର୍ଥକୁ ବାଦ୍ ଦେଲେ ଧର୍ମକୁ ଅନ୍ୟ ତିନୋଟି ପୃଥକ୍ ଅର୍ଥରେ ବ୍ୟବହାର କରାଯାଇଥାଏ । ଧର୍ମକୁ ଗୁଣ ବା ଲକ୍ଷଣ (Property) ଅର୍ଥରେ ବ୍ୟବହାର କରାଯାଏ । ଯେପରି କୁହାଯାଏ ଜଳର ଧର୍ମ ନିମ୍ନଗାମୀ ହେବା ବା ଅଗ୍ନିର ଧର୍ମ ଦାହନ କରିବା ଇତ୍ୟାଦି । ସେହିପରି ଧର୍ମକୁ ସମୟରେ ନୈତିକତା ବା ମୂଲ୍ୟବୋଧ (values) ଅର୍ଥରେ ବ୍ୟବହାର କରାଯାଇଥାଏ । ସାଧାରଣ ଭାବରେ ଏହା କୁହାଯାଏ ଯେ ସମାଜର ପ୍ରଗତି ପାଇଁ ଧର୍ମ ସଚେତନତା ଆବଶ୍ୟକ, ମଣିଷର କର୍ମ ଧର୍ମ ଉପରେ ଆଧାରିତ ହେବା ଉଚିତ ଇତ୍ୟାଦି । ଏତଦ୍‌ବ୍ୟତୀତ ଧର୍ମକୁ ସଂପ୍ରଦାୟ (religion) ଅର୍ଥରେ ମଧ୍ୟ ବ୍ୟବହାର କରାଯାଏ । ହିନ୍ଦୁଧର୍ମ, ବୌଦ୍ଧଧର୍ମ ବା ଖ୍ରୀଷ୍ଟଧର୍ମ ଇତ୍ୟାଦି କହିବା ବେଳେ ଶେଷୋକ୍ତ ଅର୍ଥଟି ପ୍ରକାଶ ପାଇଥାଏ । ସୁତରାଂ ପ୍ରଥମ ବୈଷୟିକ ଅର୍ଥଟିକୁ ଛାଡ଼ି ଦେଲେ ଧର୍ମ ଶବ୍ଦଟି ତିନୋଟି ଭିନ୍ନ ପ୍ରତ୍ୟୟ ଯଥା ଲକ୍ଷଣ (Property), ମୂଲ୍ୟବୋଧ (Value) ଓ ସଂପ୍ରଦାୟ (Religion) ଅର୍ଥରେ ଆମ ପରିଭାଷାରେ ବ୍ୟବହୃତ ହୋଇଥାଏ । 'ଲକ୍ଷଣ', 'ମୂଲ୍ୟବୋଧ' ଓ 'ସମ୍ପ୍ରଦାୟ' ସଂପୂର୍ଣ୍ଣ ଭାବରେ ଭିନ୍ନ ଭିନ୍ନ ପ୍ରତ୍ୟୟ ହୋଇଥିବାରୁ ଧର୍ମକୁ ସ୍ଥଳ ବିଶେଷରେ ଗୋଟିଏ ଅର୍ଥରେ ବ୍ୟବହାର କରାଯାଇ ଅନ୍ୟ ମାନଦଣ୍ଡରେ ବୁଝିବା ହେତୁ ଚିନ୍ତା ସ୍ତରରେ ଅସ୍ପଷ୍ଟତା ଆସିଥାଏ । ଶଂସିତ ପ୍ରବନ୍ଧରେ ଧର୍ମକୁ ସଂପ୍ରଦାୟ ବା ରିଲିଜିଅନ ଅର୍ଥରେ ବ୍ୟବହାର କରାଯାଇଛି ।

ପ୍ରଥମେ ଦୁଇଟି ପ୍ରଶ୍ନ ବିଚାରକୁ ନିଆଯାଉ- ୧. ଧର୍ମର ଏକ ସାର୍ବଜନୀନ ସଂଜ୍ଞା ଦେଇହେବ କି ? ୨. ସମସ୍ତ ଧର୍ମ ସମାନ କି ? ଅର୍ଥାତ୍ ମଣିଷ ସମାଜର ଇତିହାସରେ ପ୍ରଚଳିତ ଥିବା ଯେ କୌଣସି ଦୁଇଟି ଧର୍ମର ମୌଳିକ ଭିତ୍ତି, ଲକ୍ଷ୍ୟ ବା ସିଦ୍ଧାନ୍ତ ସମାନ ଅଟେ କି ?

ପ୍ରଥମ ପ୍ରଶ୍ନଟି ଉପରେ ଏହା କୁହାଯାଇ ପାରେ ଯେ ଧର୍ମର ଯେକୌଣସି ସଂଜ୍ଞା ସାର୍ବଜନୀନ ହୋଇପାରିବ ନାହିଁ । ମଣିଷ ସମାଜରେ ରହି ଆସିଥିବା ଯେଉଁସବୁ ବିଶ୍ୱାସ, ଆଚରଣ ଓ ଜିଜ୍ଞାସାକୁ ଧର୍ମ ନାମରେ ନାମିତ କରାଯାଇଥାଏ ତାହା ପରସ୍ପରଠାରୁ ଏପରି ପୃଥକ୍ ଓ ସ୍ଥଳ ବିଶେଷରେ ଏପରି ପରସ୍ପର ବିରୋଧୀ ଯେ ସକଳ ଧର୍ମ ଭାବନାକୁ ଏକକ ମାନଦଣ୍ଡରେ ବୁଝିବା ସମ୍ଭବପର ହୁଏ ନାହିଁ । ଧର୍ମ ଭାବନା ସହ ଏତେ ପ୍ରକାରର ଭିନ୍ନତା ଓ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ଯେ ଧର୍ମର ସାର୍ବଜନୀନ ସଂଜ୍ଞା ରହିବା ଏକ ପ୍ରକାର ଅସମ୍ଭବ ମନେହୁଏ । ବିଶେଷ କରି ଧର୍ମର ଉତ୍ପତ୍ତି, ବିକାଶ ଓ ସିଦ୍ଧାନ୍ତ ସମୂହ ଉପରେ ଯେତିକି ଯେତିକି ବସ୍ତୁନିଷ୍ଠ ଅନୁଶୀଳନ ହେଉଛି ସେ କ୍ଷେତ୍ରରେ ସେତିକି ନୂଆ ନୂଆ ସିଦ୍ଧାନ୍ତମାନ ଗଢ଼ି ଉଠୁଛି । ବିଶେଷ କରି ଧର୍ମର ନୃତାତ୍ତ୍ୱିକ, ମନସ୍ତାତ୍ତ୍ୱିକ ଓ ସମାଜଶାସ୍ତ୍ରିକ ଅଧ୍ୟୟନରୁ ବହୁବିଧ ଆନୁଭବିକ ସିଦ୍ଧାନ୍ତ ମାନ (empirical theories) ଗଢ଼ି ଉଠିଛି । ବସ୍ତୁତଃ ଧର୍ମ ପ୍ରତ୍ୟୟର ଏକ ନିର୍ଦ୍ଦିଷ୍ଟ ବା ସାର୍ବିକ ଅର୍ଥ ନ ଥାଇ

ଏହା ବହୁବିଧ ବିଶ୍ୱାସ, ଦୃଷ୍ଟିଭଙ୍ଗୀ, ସିଦ୍ଧାନ୍ତ ଇତ୍ୟାଦିର ଲକ୍ଷଣ ଉପରେ ପର୍ଯ୍ୟବସିତ ବୋଲି କୁହାଯାଇପାରେ । ସେହିପରି ସବୁ ଧର୍ମ ଭିତରେ କୌଣସି ସାର୍ବଜନୀନ ନିଷ୍କର୍ଷ ସାଧାରଣ ଭାବରେ ରହିବା ଦେଖିବାକୁ ମିଳେ ନାହିଁ । ଅର୍ଥାତ୍ ବିଭିନ୍ନ ଧର୍ମ ପରିପ୍ରେକ୍ଷୀରେ ସବୁ ଧର୍ମର ଏକ ମୌଳିକ ସାଧାରଣ ନିଷ୍କର୍ଷ ପରିଲକ୍ଷିତ ହୁଏ ନାହିଁ । ବରଂ ବହୁବିଧ ଧର୍ମ ଲକ୍ଷଣଗୁଡ଼ିକ ଧର୍ମ ଭିତରେ ପରସ୍ପର ସଂଯୁକ୍ତ ଓ ଉଦ୍‌ବ୍ୟାପ୍ତ ହୋଇ ରହିଥିବା ଦେଖାଯାଏ । ଯେକୌଣସି ଦୁଇଟି ଧର୍ମର ତୁଳନାତ୍ମକ ଅନୁଶୀଳନ ଭିତରେ ସେମାନଙ୍କ ମଧ୍ୟରେ କିଛି ସାମଞ୍ଜସ୍ୟ ଥିବା ବେଳେ କେତେକ କ୍ଷେତ୍ରରେ ମୌଳିକ ପାର୍ଥକ୍ୟ ରହିବା ପରିଲକ୍ଷିତ ହୋଇଥାଏ । ସୁତରାଂ ସମସ୍ତ ଧର୍ମ ଭିତରେ ମୌଳିକ ନିଷ୍କର୍ଷ ସାଧାରଣ ଭାବେ ନ ଥାଇ ବହୁବିଧ ଗୁଣ ପରସ୍ପର ସଂଯୋଜିତ ଓ ପରିବ୍ୟାପ୍ତ ହୋଇ ରହିବା ଦେଖାଯାଏ ।

ଯେକୌଣସି ଦୁଇଟି ଧର୍ମ ଭିତରେ ସୈଦ୍ଧାନ୍ତିକ ପାର୍ଥକ୍ୟ ରହିଥିଲେ ବି ପ୍ରତ୍ୟେକ ଧର୍ମର କେତେକ ମୌଳିକ ଭିତ୍ତି ରହିଥାଏ । ଏହାର ମୌଳିକ ଆଧାରଗୁଡ଼ିକୁ ପର୍ଯ୍ୟାଲୋଚନା କରିବା ପୂର୍ବରୁ ଧର୍ମର ଐତିହାସିକତା ନେଇ ବିଚାର କରାଯାଉ । ପ୍ରତ୍ୟେକ ଧର୍ମ ଓ ତାହାର ସାଂସ୍କୃତିକ ପରମ୍ପରାର ଐତିହାସିକ ଭିତ୍ତି ରହିଆସିଛି । ଖ୍ରୀଷ୍ଟପୂର୍ବ ଏକ ହଜାର ବର୍ଷଠାରୁ ପୃଥିବୀର ବିଭିନ୍ନ ଭୌଗୋଳିକ ପରିବେଶରେ ଭିନ୍ନ ଭିନ୍ନ ଧର୍ମଧାରଣା ସୃଷ୍ଟି ହୋଇଛି ଓ ସ୍ଥଳ ବିଶେଷରେ କେତେକ କ୍ରାନ୍ତିକାରୀ ବ୍ୟକ୍ତି ଜନ୍ମ ନେଇ ସମାଜକୁ ନିର୍ଦ୍ଦିଷ୍ଟ ଧର୍ମଧାରଣା ଦେଇଛନ୍ତି । ସଭ୍ୟତାର ଆରମ୍ଭ ପର୍ବରେ ମଣିଷର ସାମାଜିକ ଓ ମନସ୍ତାତ୍ତ୍ୱିକ ଅବସ୍ଥା ଏପରି ସ୍ତରରେ ରହିଥିଲା ଯେତେବେଳେ ନାନା ପ୍ରକାର ଅଲୌକିକ ଓ ଆଧିଦୈବିକ ବିଚାରକୁ ମଣିଷ ଅନାୟାସରେ ବିଶ୍ୱାସ କରି ନେଉଥିଲା । ପ୍ରକୃତିର ଅସଂଖ୍ୟ ଘଟଣାବଳୀ ଓ ରହସ୍ୟକୁ ବୁଝିବା ପାଇଁ ସେପରି ମାନସିକ ସାମର୍ଥ୍ୟ ମଣିଷର ସୃଷ୍ଟି ହୋଇନଥିଲା, ସୁତରାଂ ସବୁକିଛିକୁ ଏକ ଅଲୌକିକ ପ୍ରକ୍ରିୟାର ପରିଣାମ ବୋଲି ଗ୍ରହଣ କରିନେବା ମଣିଷର ସ୍ୱାଭାବିକ ମନସ୍ତତ୍ତ୍ୱ ଥିଲା । ଏହା ସହିତ ଜନ୍ମ, ମୃତ୍ୟୁ, ଜରା ଓ ଜୀବନର ସମସ୍ତ ବୈଚିତ୍ର୍ୟର ଉତ୍ତର ସେ ଧର୍ମବିଶ୍ୱାସର ମାନଦଣ୍ଡରେ- ତାହା ଯେତେ ଅବାସ୍ତବ ହେଲେବି-ଅନାୟାସରେ ଗ୍ରହଣ କରି ପାରୁଥିଲା । ଗୋଟିଏ ପଟରେ ପ୍ରାକୃତିକ ଘଟଣାବଳୀ ଓ ବୈଚିତ୍ର୍ୟ ଏବଂ ଅପରପକ୍ଷରେ ଜୀବନର ଘନଘଟା ଓ ରହସ୍ୟକୁ ବୁଝିବା ପାଇଁ ଧର୍ମ ଧାରଣା ଏକମାତ୍ର ବୌଦ୍ଧିକ ଭିତ୍ତି ଯୋଗାଇଥିଲା । ଏହା ସହିତ ନାନା ପ୍ରକାରର ମନସ୍ତାତ୍ତ୍ୱିକ ଭୟ ବା ବିପର୍ଯ୍ୟୟରୁ ନିଜକୁ ରକ୍ଷା କରିବା ପାଇଁ ଆଧିଭୌତିକ ବିଶ୍ୱାସ ଓ ଧର୍ମଧାରଣା ଯଥେଷ୍ଟ ସହାୟକ ହେଉଥିଲା । ବସ୍ତୁତଃ ସାମାଜିକ ଓ ମନସ୍ତାତ୍ତ୍ୱିକ ଆବଶ୍ୟକତାରୁ ଧର୍ମ ଧାରଣାର ଅଭ୍ୟୁଦୟ ହୋଇପାରିଲା । ପୃଥିବୀର ବିଭିନ୍ନ ଭୌଗୋଳିକ ପରିବେଶରେ ବାସ କରୁଥିବା ଗୋଷ୍ଠୀମାନଙ୍କ ଭିତରେ ଭିନ୍ନ ଭିନ୍ନ ଧର୍ମଧାରଣା ବା ଧର୍ମ ଜିଜ୍ଞାସା ସୃଷ୍ଟି ହୋଇଥିଲା । ଏହା ସହିତ ସେହି ସମୟରେ କେତେକ ଚିନ୍ତାଶୀଳ ବ୍ୟକ୍ତି ଜୀବନର ପରମ ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ଉନ୍ନତ ସାମାଜିକ ଜୀବନ ବିଷୟରେ କେତେକ ଭାବନା ସୃଷ୍ଟି କରିଥିଲେ । ବ୍ୟକ୍ତି ଓ ସାମୂହିକ ଜୀବନ ପାଇଁ ଶ୍ରେୟ ଭାବନା ଓ ନୈତିକ ବିଚାର ମଧ୍ୟରୁ ଆସ୍ତେ ଆସ୍ତେ ଆନୁଷ୍ଠାନିକ ଧର୍ମ ଭାବର ସୃଷ୍ଟି ହେବାକୁ ଲାଗିଲା । ସମାଜର ପ୍ରଚଳିତ ବିଶ୍ୱାସ, ପରମ୍ପରା ଓ ସାମାଜିକ ଅନୁଶାସନ ଉପରେ ପର୍ଯ୍ୟବେକ୍ଷଣ କରାଯାଇ ଧର୍ମର ସୈଦ୍ଧାନ୍ତିକ ଭିତ୍ତି ଗଢ଼ି ଉଠିଲା । ବିଭିନ୍ନ ସଭ୍ୟତାର ବିକାଶ ସହିତ ସାମାଜିକ ଜୀବନ ପ୍ରବାହରେ ଧର୍ମ ଅବଶ୍ୟମ୍ଭାବୀ ମନେ ହେଲା । ସମାଜର ଚିନ୍ତାଶୀଳ ବ୍ୟକ୍ତିଗଣ ଧର୍ମ ସଂପର୍କରେ ଯେଉଁ ଭାବନା ଦେଲେ ସେଥିରୁ ଧର୍ମର ତାତ୍ତ୍ୱିକ ଓ ସୈଦ୍ଧାନ୍ତିକ ଭିତ୍ତି ସୁଦୃଢ଼ ହେବାରେ ଲାଗିଲା । ପ୍ରତ୍ୟେକ ଧର୍ମର ଇତିହାସରେ କେତେକ

ଦାର୍ଶନିକ ସମୟାନୁକ୍ରମେ ଧର୍ମଧାରଣା ଉପରେ ଗଭୀର ଅନୁଧ୍ୟାନ କରି ତା'ର ତାତ୍ତ୍ୱିକ ଭିତ୍ତିକୁ ନିର୍ଦ୍ଦିଷ୍ଟ ଯୁକ୍ତି ଉପରେ ପ୍ରତିଷ୍ଠିତ କରାଇଦେଲେ । ଏହିପରି ସଭ୍ୟତାର ବିକାଶ ସହିତ ଧର୍ମଚେତନାର ଅଭ୍ୟୁଦୟ ହେବା ଏକ ଐତିହାସିକ ସତ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କେତେକ ମନସ୍ତାତ୍ତ୍ୱିକ, ସାମାଜିକ ଓ ବୌଦ୍ଧିକ ଆବଶ୍ୟକତାରୁ ଧର୍ମ ଚେତନାର ଅଭ୍ୟୁଦୟ ହୋଇଥିଲେ ବି ପ୍ରତ୍ୟେକ ଧର୍ମ କେତେକ ମୌଳିକ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିବା ଦେଖାଯାଏ । ବିଶେଷ କରି ସୃଷ୍ଟି ସଂକ୍ରାନ୍ତୀୟ ପ୍ରଶ୍ନମାନ ମଣିଷକୁ ଉଦ୍‌ବେଳିତ କରୁଥିବା ବେଳେ ଧର୍ମ ସୃଷ୍ଟିର ରହସ୍ୟ କ'ଣ, ମଣିଷ କିପରି ସୃଷ୍ଟି ହେଲା, ଈଶ୍ୱର ଓ ଆତ୍ମାର ସ୍ୱରୂପ କ'ଣ ଇତ୍ୟାଦି ପ୍ରଶ୍ନମାନଙ୍କ ଉପରେ ନିର୍ଦ୍ଦିଷ୍ଟ ବିଶ୍ୱାସମାନ ସୃଷ୍ଟି କଲା । ପ୍ରତ୍ୟେକ ଧର୍ମରେ ସୃଷ୍ଟି ମୀମାଂସା ନେଇ ନିର୍ଦ୍ଦିଷ୍ଟ ବିଚାର ବିମର୍ଶ ଦେଖିବାକୁ ମିଳିଥାଏ । ସେହିପରି ପ୍ରତ୍ୟେକ ଧର୍ମର ଏକ ତତ୍ତ୍ୱ ମୀମାଂସା ମଧ୍ୟ ରହିଥିବା ପରିଲକ୍ଷିତ ହୋଇଥାଏ । ଆତ୍ମାର ସ୍ୱରୂପ କି ପ୍ରକାର, ଚିରନ୍ତନ ସତ୍ୟ କ'ଣ, ମନ୍ଦର ସୃଷ୍ଟି କିପରି ହେଲା ଓ କାହିଁକି ହେଲା, ଈଶ୍ୱର ଏକ ନା ଅନେକ, ଈଶ୍ୱର ଅବତାର ନିଅନ୍ତି କି ନାହିଁ ଇତ୍ୟାଦି ବିଷୟସୂଚୀ ଉପରେ ପ୍ରତ୍ୟେକ ଧର୍ମର ନିର୍ଦ୍ଦିଷ୍ଟ ବିଶ୍ୱାସ ରହିଛି । ପୃଥିବୀର ଯେକୌଣସି ଧର୍ମ ଭିତରେ ଏକ ତତ୍ତ୍ୱମୀମାଂସା ରହିଥିବା ଦେଖାଯାଏ । ଯେଉଁସବୁ ପ୍ରଶ୍ନ ମଣିଷ ପାଇଁ ପ୍ରହେଳିକା ସୃଷ୍ଟି କରୁଥିଲା, ସେସବୁ ପ୍ରଶ୍ନର ଏକ କାଳ୍ପନିକ ବ୍ୟାଖ୍ୟା ଧର୍ମ ଯୋଗାଇ ଦେଲା ଓ ତାରି ଉପରେ ଧର୍ମର ମୂଳ ଭିତ୍ତି ଗଢ଼ିଉଠିଲା । ଏହା ସହିତ ପ୍ରତ୍ୟେକ ଧର୍ମର କର୍ମକାଣ୍ଡ ବା ଉପଚାର ବିଧି ସୃଷ୍ଟି ହେଲା । ପ୍ରତ୍ୟେକ ଧର୍ମ ପରମ୍ପରାରେ ଜନ୍ମ, ମୃତ୍ୟୁ, ବିବାହ ଉତ୍ସବ ପାଳନ ଇତ୍ୟାଦିରେ ନିର୍ଦ୍ଦିଷ୍ଟ ଉପାସନା ଓ କର୍ମକାଣ୍ଡ ସଂଶ୍ଲିଷ୍ଟ ରହିଲା । ଏହି ଉପାସନା ପଦ୍ଧତି ବା କର୍ମକାଣ୍ଡ ପ୍ରତ୍ୟେକ ଧର୍ମ ପରମ୍ପରାରେ ପୁରୁଷାନୁକ୍ରମିକ ଭାବରେ ଚଳି ଆସିବା ଯୋଗୁଁ ଗୋଟିଏ ଧର୍ମର ପୃଷ୍ଠପୋଷକମାନଙ୍କ ମଧ୍ୟରେ ସାଂସ୍କୃତିକ ଓ ଭାବଗତ ସଂହତି ସୃଷ୍ଟି ହେଲା । ଅବଶ୍ୟ ସମୟାନୁକ୍ରମେ କେତେକ ସଂସ୍କାରକଙ୍କ ଦ୍ୱାରା, ଅନ୍ୟ ଧର୍ମ ବା ସଂସ୍କୃତିର ପ୍ରଭାବ ଯୋଗୁଁ କିମ୍ବା ସାମାଜିକ ବା ଆର୍ଥନୀତିକ ଆବଶ୍ୟକତାରୁ ଧର୍ମର ଉପାସନା ପଦ୍ଧତି ବା କର୍ମକାଣ୍ଡରେ ପରିବର୍ତ୍ତନ ହୋଇଛି । ତଥାପି ପ୍ରତ୍ୟେକ ଧର୍ମରେ ନିର୍ଦ୍ଦିଷ୍ଟ ଉପାସନା ରହିଛି ଓ ଯେକୌଣସି ଦୁଇଟି ଧର୍ମରେ ଏହି ପାର୍ଥକ୍ୟ ସବୁଠାରୁ ସୁସ୍ପଷ୍ଟ । ବସ୍ତୁତଃ ନିର୍ଦ୍ଦିଷ୍ଟ ସୃଷ୍ଟି ତତ୍ତ୍ୱ, ତତ୍ତ୍ୱ ମୀମାଂସା ଓ କର୍ମକାଣ୍ଡ ପ୍ରତ୍ୟେକ ଧର୍ମର ଭିତ୍ତି ସ୍ଥାପନରେ ସହାୟକ ହେଲା । ଏହି ସବୁ ବିଷୟ ଯେଉଁଥିରେ ଲିପିବଦ୍ଧ ହୋଇ ରହିଲା, ତାକୁ ପ୍ରତ୍ୟେକ ଧର୍ମ ପରମ୍ପରାରେ ଧର୍ମଗ୍ରନ୍ଥ ବୋଲି କୁହାଗଲା ଓ ପ୍ରତ୍ୟେକ ଧର୍ମ ତା'ର ଧର୍ମଗ୍ରନ୍ଥକୁ ପବିତ୍ର ବୋଲି ଗ୍ରହଣ କଲା । ପ୍ରତ୍ୟେକ ଧର୍ମର ଉତ୍ପତ୍ତି ଓ ବିକାଶ ନେଇ ଧର୍ମଗ୍ରନ୍ଥ ଏକ ପ୍ରମୁଖ ଭୂମିକା ଗ୍ରହଣ କଲା ଓ ଏଥିରେ ସନ୍ନିବେଶିତ ପ୍ରତ୍ୟେକ ବିଚାରାଦର୍ଶ ଈଶ୍ୱରଙ୍କ ପ୍ରଦତ୍ତ ବାଣୀ ବୋଲି ବଶ୍ୱାସ କରାଗଲା । ଏହା ସହିତ ପ୍ରତ୍ୟେକ ଧର୍ମ ସହିତ ଏକ ଦିବ୍ୟ ପୁରୁଷ ବା ଦିବ୍ୟ ଗ୍ରନ୍ଥକୁ ସଂଶ୍ଲିଷ୍ଟ କରାଗଲା । କେତେକ ଧର୍ମର ଦିବ୍ୟ ପ୍ରବର୍ତ୍ତକ ରହିଥିବା ବେଳେ ଅନ୍ୟ ଧର୍ମରେ ପବିତ୍ର ଧର୍ମଗ୍ରନ୍ଥ ସଂପୃକ୍ତ ରହିଲା । ପ୍ରତ୍ୟେକ ଧର୍ମସହିତ ସଂଯୁକ୍ତ ଥିବା ତା'ର ଦିବ୍ୟ ପ୍ରବର୍ତ୍ତକ ବା ଧର୍ମଗ୍ରନ୍ଥର ବାଣୀକୁ ଶାଶ୍ୱତ ଓ ଚିରନ୍ତନ ଭାବରେ ଧର୍ମ ପରମ୍ପରାରେ ବିଶ୍ୱାସ ଓ ଗ୍ରହଣ କରାଗଲା । ବସ୍ତୁତଃ ଯେକୌଣସି ଧର୍ମ ଏକ ତତ୍ତ୍ୱମୀମାଂସା, ନିର୍ଦ୍ଦିଷ୍ଟ ଉପଚାରବିଧି ଓ ଦିବ୍ୟ ପ୍ରବର୍ତ୍ତକ ବା ଗ୍ରନ୍ଥର ଭିତ୍ତି ଉପରେ ପ୍ରତିଷ୍ଠିତ ହେଲା ।

ଧର୍ମ ମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ଏହା ସ୍ପଷ୍ଟ ହେଲା ଯେ ଦୁଇଟି ଧର୍ମ ମଧ୍ୟରେ ସାମଞ୍ଜସ୍ୟ ଅପେକ୍ଷା ସେମାନଙ୍କ ଭିତରେ ପାର୍ଥକ୍ୟ ଅଧିକ । କାରଣ ଯେକୌଣସି ଦୁଇଟି ଆନୁଷ୍ଠାନିକ ଧର୍ମ ଭିତରେ ଯେ କେବଳ ଔପଚାରିକ

ପାର୍ଥକ୍ୟ ବିଦ୍ୟମାନ ତା' ନୁହଁ, ତାତ୍ତ୍ୱିକ ପ୍ରଶ୍ନମାନଙ୍କ ଉପରେ ସେମାନଙ୍କ ବିଚାରଧାରା ସଂପୂର୍ଣ୍ଣ ପୃଥକ୍ ଓ ସମୟରେ ପରସ୍ପର ବିରୋଧୀ । ଆତ୍ମାର ସ୍ୱରୂପ କ'ଣ, ମୃତ୍ୟୁ ପରେ ଆତ୍ମାର ସ୍ଥିତି କ'ଣ ହୁଏ, ପୁନର୍ଜନ୍ମ ରହିଛି କି ନାହିଁ, ଈଶ୍ୱର ସଗୁଣ ନା ନିର୍ଗୁଣ, ବିଶ୍ୱ କେବେ ସୃଷ୍ଟି ହେଲା ବା ବିବର୍ତ୍ତିତ ହେଲା, ଜୀବନରେ ଦୁଃଖର କାରଣ କ'ଣ ଇତ୍ୟାଦି ପ୍ରଶ୍ନ ଉପରେ ପ୍ରତ୍ୟେକ ଧର୍ମ ନିର୍ଦ୍ଦିଷ୍ଟ ଉତ୍ତର ଦେଲା ଓ ଗୋଟିଏ ଧର୍ମର ବିଶ୍ୱାସକୁ ଗ୍ରହଣ କରିବା ଅର୍ଥ ଅନ୍ୟ ଧର୍ମର ବିଚାରଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିବା ସଦୃଶ ହେଲା । ଏହି ପରିପ୍ରେକ୍ଷୀରେ ବୈଜ୍ଞାନିକ ବିଚାରଧାରାର ଅଭ୍ୟୁଦୟ ସହିତ ଧର୍ମୀୟ ଧାରଣା ଗୁଡ଼ିକ ଯେ ନିରର୍ଥକ ଓ ପ୍ରମାଣ ରହିତ ଏହା ଜଣା ପଡିଲା । ମଣିଷ ଯେ ଈଶ୍ୱରଙ୍କଠାରୁ ସୃଷ୍ଟ ଏହି ପ୍ରକାରର ଏକ ସହଜ ଧାର୍ମିକ ମତବାଦ ତାହା ବୈଜ୍ଞାନିକ ବିଚାରଧାରାରେ ମିଥ୍ୟା ପ୍ରମାଣିତ ହେଲା । ମଣିଷ ଏକ ଜୈବିକ ବିବର୍ତ୍ତନର ପ୍ରକ୍ରିୟା ମଧ୍ୟ ଦେଇ ଲକ୍ଷ ଲକ୍ଷ ବର୍ଷ ପରେ ସୃଷ୍ଟି ହୋଇଛି ଓ ଆମ ପୃଥିବୀ କୋଟି କୋଟି ବର୍ଷ ତଳେ ନାନା ପରିବର୍ତ୍ତନ ମଧ୍ୟ ଦେଇ ଗତିକରିଛି, ଏହା ବିଜ୍ଞାନ ପ୍ରତିଷ୍ଠା କଲା । ଫଳରେ ସୃଷ୍ଟି ତତ୍ତ୍ୱ ବିଷୟରେ ଧର୍ମୀୟ କାହାଣୀଗୁଡିକ କେବଳ କଳ୍ପନା ବୋଲି ଜଣାପଡିଲା । ଏହା ସହିତ ଦାର୍ଶନିକ ବିଚାରର ଉତ୍କର୍ଷ ସାଧନ ହେବା ଫଳରେ ଆତ୍ମା, ଈଶ୍ୱର, ପୁନର୍ଜନ୍ମ ଇତ୍ୟାଦି ସଂକ୍ରାନ୍ତରେ ଦିଆ ଯାଉଥିବା ଯୁକ୍ତିଗୁଡ଼ିକ ଅବୈଧ ବୋଲି ଦର୍ଶନ ପ୍ରମାଣ କଲା । ଜ୍ଞାନର ସ୍ୱରୂପ, ସୀମା ଇତ୍ୟାଦି ଗୁରୁତର ବିଷୟଗୁଡ଼ିକୁ ଦର୍ଶନ ବିଶ୍ଳେଷଣ କରି ଈଶ୍ୱର, ଆତ୍ମା ସଂକ୍ରାନ୍ତୀୟ ବିଶ୍ୱାସ କିପରି ଯୁକ୍ତି ବା ପ୍ରମାଣ ବହିର୍ଭୂତ ଓ ସେ କ୍ଷେତ୍ରରେ ପ୍ରଦତ୍ତ ପ୍ରମାଣଗୁଡିକ କିପରି ତାର୍କିକ ମାନଦଣ୍ଡରୁ ଭ୍ରମାତ୍ମକ ତାହା ଦର୍ଶାଇଲା । ଗୋଟିଏ ପଟରେ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ ଓ ଅପର ପକ୍ଷରେ ବିଜ୍ଞାନ ଓ ଦର୍ଶନ କ୍ଷେତ୍ରରେ ଉତ୍କର୍ଷ ସାଧନ ଯୋଗୁଁ ଧର୍ମୀୟ ବିଶ୍ୱାସ ଗୁଡ଼ିକ ଯେ ପରସ୍ପର ବିରୋଧୀ ଓ ଅଯୌକ୍ତିକ ତାହା ଜଣାପଡିଲା । ପୁନଶ୍ଚ ଏହି ପରିପ୍ରେକ୍ଷୀରେ ସମାଜଶାସ୍ତ୍ରିକ ଓ ନୃତାତ୍ତ୍ୱିକ ଅଧ୍ୟୟନ ଧର୍ମୀୟ ଧାରଣା ସବୁ କିପରି ମନସ୍ତାତ୍ତ୍ୱିକ କାରଣ ଓ ବୌଦ୍ଧିକ ଆବଶ୍ୟକତାରୁ ସୃଷ୍ଟି ହେଲା, ତାହା ବସ୍ତୁନିଷ୍ଠ ଭାବରେ ଦର୍ଶାଇଲା । ଏସବୁ କାରଣ ଯୋଗୁଁ ଧର୍ମଧାରଣା କିପରି ନିରର୍ଥକ ଓ ସୁସ୍ଥ ସମାଜ ଓ ମାନବବାଦର ପରିପନ୍ଥୀ, ତାହା କେତେକ ଦାର୍ଶନିକ ଓ ହେତୁବାଦୀଙ୍କ ବିଚାରଧାରାରୁ ସୃଷ୍ଟି ହେଲା । ବର୍ଟ୍ରାଣ୍ଡ ରସେଲଙ୍କ ପରି ଦାର୍ଶନିକମାନେ ମତ ପୋଷଣ କଲେ ଯେ ସମସ୍ତ ଧର୍ମ ଯେ ଅସତ୍ୟ ତା' ନୁହେଁ, ସେମାନେ ସଭ୍ୟତାର ବିକାଶ ଦିଗରେ ମଧ୍ୟ ବିପଦ୍‌ଜନକ । (" All the great religions of the world-Buddhism, Hinduism, Christianity, Islam andCommunism both untrue and harmful. I am convinced that religions do harm as I am that they are untrue".(Bertrand Russell ଙ୍କ Why I am not a Christian'?" ପୁସ୍ତକରୁ ଉଦ୍ଧୃତ) ।

ପୃଥିବୀର ଅନେକ ସ୍ୱାଧୀନ ଚିନ୍ତାନାୟକ ଓ ଦାର୍ଶନିକ ଧର୍ମ ସଂକ୍ରାନ୍ତରେ ଏହି ପ୍ରକାର ମତ ପୋଷଣ କରିବା ପଶ୍ଚାତରେ କେତେକ ଐତିହାସିକ କାରଣ ବିଦ୍ୟମାନ । ମଣିଷର ସାଂସ୍କୃତିକ ଇତିହାସ କ୍ଷେତ୍ରରେ ଧର୍ମଗତ ଅସୂୟା ବହୁ କ୍ଷେତ୍ରରେ ବୈଜ୍ଞାନିକ ଗବେଷଣା ଓ ସ୍ୱାଧୀନ ଚିନ୍ତାର ବିକାଶରେ ଅନ୍ତରାୟ ହୋଇଛି । ବହୁ ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ ଧର୍ମଗତ କାରଣରୁ ବହୁ ନିର୍ଯ୍ୟାତନା ସହିବାକୁ ହୋଇଛି ଏବଂ ବୈଜ୍ଞାନିକ ତଥା ଦାର୍ଶନିକ କ୍ରିୟାଶୀଳତା ଏହି କାରଣରୁ ବାଧାପ୍ରାପ୍ତ ହୋଇଛି । ଏହା ସହିତ ସାଂପ୍ରଦାୟିକ ତିକ୍ତତାକୁ କେନ୍ଦ୍ର କରି ପୃଥିବୀ ପୃଷ୍ଠରେ ବହୁ ରକ୍ତପାତ ଓ ହିଂସାତ୍ମକ ଯୁଦ୍ଧ

ଘଟିଯାଉଛି । ଏସବୁ କାରଣରୁ ହୁଏତ ଧର୍ମଦ୍ୱାରା ମଣିଷ ସମାଜର ଉପକାର ହେବା ପରିବର୍ତ୍ତେ ସାଂସ୍କୃତିକ କ୍ଷୟଶୀଳତା ଆସିଛି ବୋଲି କେହି ବିଶ୍ୱାସ କରିପାରନ୍ତି ।

ଅବଶ୍ୟ ଏହି ଅପକାର ବ୍ୟତୀତ ଧର୍ମଦ୍ୱାରା ସମାଜର ଅନେକ ଉତ୍କର୍ଷ ମଧ୍ୟ ସାଧିତ ହୋଇଛି ବୋଲି କେହି ଯୁକ୍ତି କରିପାରନ୍ତି । ସଭ୍ୟତାର ଆରମ୍ଭ କାଳରେ ଧର୍ମ ହିଁ ସାମାଜିକ ସଂଗଠନର ବିକାଶ ଓ ନିୟନ୍ତ୍ରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ନେଇଛି । ଧର୍ମଗତ ବିଶ୍ୱାସକୁ କେନ୍ଦ୍ରକରି ସାଂସ୍କୃତିକ ଜାଗରଣ ଆସିପାରିଛି ଓ ଏହା ସହିତ ନୈତିକ ମୂଲ୍ୟଚୟ ମଧ୍ୟ ସୃଷ୍ଟି ହୋଇଛି । ଧର୍ମଭାବନା ଭିତରୁ ନୈତିକ ଚେତନା ଓ ଜୀବନର ଆଧାତ୍ମିକ ଉନ୍ମେଷ ପାଇଁ ଅଭିନିବେଶ ମିଳିପାରିଛି । ଧର୍ମଜିଜ୍ଞାସା ସହ ନୈତିକ ବିଚାରବୋଧ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇ ରହିଛି । ବସ୍ତୁତଃ ଧର୍ମ ମଣିଷ ସମାଜର ଉତ୍କର୍ଷ ବା ଅପକର୍ଷ ସାଧନ ଦିଗରେ  ଅଧିକ ସହାୟକ ହୋଇଛି, ତାହା ଏକ ମୁକ୍ତ ପ୍ରଶ୍ନ ଓ ଏଠାରେ ବିଚାର୍ଯ୍ୟ ନୁହେଁ ।

କିନ୍ତୁ ଧର୍ମ ଓ ନୈତିକତା ଏ ଦୁଇ ପ୍ରତ୍ୟୟ ମଧ୍ୟରେ ଥିବା ସମ୍ବନ୍ଧ ବିଚାର କରାଯାଉ । ଅବଶ୍ୟ ବହୁ ସମୟରେ ଏ ଦୁଇଟି ପ୍ରତ୍ୟୟକୁ ସମାର୍ଥ ଭାବରେ ଗ୍ରହଣ କରାଯାଏ ଅର୍ଥାତ୍ ଯେକୌଣସି ନୈତିକ ଆଚରଣକୁ ଏକ ଧର୍ମାଚରଣ କୁହାଯାଏ ଏବଂ ଧର୍ମଚେତନା ସହ ନୈତିକତାକୁ ଅବିଚ୍ଛିନ୍ନ ଭାବରେ ସଂଶ୍ଳିଷ୍ଟ କରାଯାଏ । ସେ କ୍ଷେତ୍ରରେ ଧର୍ମକୁ କେବଳ ନୈତିକତା ଅର୍ଥରେ ବୁଝାଯାଏ ଓ ଏହି ପ୍ରକାରର ସଂଜ୍ଞାଦ୍ୱାରା ଧର୍ମ ଓ ନୈତିକତା ଭିତରେ ଏକ ପାରିଭାଷିକ ତାଦାତ୍ମ୍ୟ ବା ସମତା ଛଡ଼ା କୌଣସି ଉଦ୍ଦେଶ୍ୟ ସାଧିତ ହୋଇପାରେ ନାହିଁ । କିନ୍ତୁ ଧର୍ମକୁ ସାଂପ୍ରଦାୟିକ ମାନଦଣ୍ଡରୁ ବିଚାର କଲେ ଧର୍ମ ଓ ନୈତିକତା ଭିତରେ ରହିଥିବା ପାର୍ଥକ୍ୟ ବିଶେଷ ଭାବେ ଜଣାପଡ଼େ ।

ଧର୍ମ ଓ ନୈତିକତା ଭିତରେ ଥିବା ସମ୍ବନ୍ଧ ପ୍ରଶ୍ନଟିକୁ ନାନା ଦିଗରୁ ଆଲୋଚନା କରାଯାଇପାରେ । ସେମାନଙ୍କ ଭିତରେ ଏକ ମନସ୍ତାତ୍ତ୍ୱିକ ବା କାର୍ଯ୍ୟକାରଣ ଭିତ୍ତିକ ସମ୍ବନ୍ଧ ଥିବା କେହି ଦର୍ଶାଇପାରନ୍ତି । ଏଠାରେ ଦୁଇଟି ପ୍ରଶ୍ନ ବିଚାରକୁ ନିଆଯାଉ । ପ୍ରଥମରେ, ନୈତିକତା ସମ୍ବନ୍ଧୀୟ ପ୍ରଶ୍ନଗୁଡ଼ିକ ଧର୍ମଧାରଣା ଉପରେ ନିର୍ଭରଶୀଳ ନା ସେମାନେ ଧର୍ମନିରପେକ୍ଷ ? ଦ୍ୱିତୀୟରେ, ପ୍ରତ୍ୟେକ ନୈତିକ ଆଚରଣ ପଶ୍ଚାତରେ ଧର୍ମଜିଜ୍ଞାସା ଥାଏ କି, ଅର୍ଥାତ୍ ଧର୍ମ ଜିଜ୍ଞାସାରୁ ନୈତିକ ଜୀବନ ପାଇଁ ଅଭିନିବେଶ ସବୁ କ୍ଷେତ୍ରରେ ଆସିଥାଏ କି ?

ନୈତିକ ନିୟମ କିମ୍ବା ଆଚରଣଗୁଡ଼ିକ କେତେକ କ୍ଷେତ୍ରରେ ଧର୍ମଗତ ଅନୁଜ୍ଞାରୁ ଆସିଥିଲେ ସୁଦ୍ଧା ସେଗୁଡ଼ିକୁ ଧର୍ମଠାରୁ ପୃଥକ୍ କରିହେବ ଓ ତାର୍କିକ ମାନଦଣ୍ଡରୁ ନୈତିକତାକୁ ଧର୍ମ ଉପରେ ନିର୍ଭରଶୀଳ କରାଇହେବ ନାହିଁ । ନୈତିକତାକୁ ସଂପୂର୍ଣ୍ଣ ଭାବରେ ଏକ ସାମାଜିକ ଆବଶ୍ୟକତା ବୋଲି କେହି ଗ୍ରହଣ କରିପାରନ୍ତି । ସମାଜରେ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ ଓ ସାମାଜିକ ଆଚରଣରୁ ନୈତିକ ଆଚରଣ ଏକ ସଂସ୍କୃତିସଂପନ୍ନ ଜୀବନର ମାନଦଣ୍ଡ ହୋଇଥାଏ । ଏପରିକି ସଂପ୍ରତି ଧର୍ମନିରପେକ୍ଷ ମୂଲ୍ୟବୋଧ ଓ ଧର୍ମୋତ୍ତର ସମାଜକୁ କେତେକ ସମାଜରେ ସାମାଜିକ ଶ୍ରେୟ ଭାବରେ ଗ୍ରହଣ କରାଯାଏ; କିନ୍ତୁ ଏକ ମୂଲ୍ୟବୋଧ ରହିତ ସମାଜ କେବେ ବି ଚିନ୍ତା କରାଯାଇ ପାରିବ ନାହିଁ । ବସ୍ତୁତଃ ଧର୍ମ ଓ ନୈତିକତା ପରସ୍ପରଠାରୁ ପୃଥକ୍ ଓ ନୈତିକତାକୁ ଧର୍ମ ଉପରେ ପ୍ରତିଷ୍ଠା କରାଯାଇ ପାରିବ ନାହିଁ ।

ଅବଶ୍ୟ ଧର୍ମଗତ ବିଶ୍ୱାସରୁ ନୈତିକ ଜୀବନ ପାଇଁ କେହି ପ୍ରେରଣା ଲାଭ କରି ପାରନ୍ତି ଏବଂ ଧର୍ମ ଓ ନୈତିକତା ଭିତରେ ଏକ ମନସ୍ତାତ୍ତ୍ୱିକ ସଂପର୍କ ଦର୍ଶାଇ ପାରନ୍ତି । କିନ୍ତୁ ଧର୍ମ ବିଶ୍ୱାସରୁ ନୈତିକ ଆଚରଣ ପାଇଁ ଅଭିନିବେଶ ସ୍ଥଳ

ବିଶେଷରେ ମିଳୁଥିଲେ ବି ନୈତିକତା ପାଇଁ ଧର୍ମକୁ ଏକମାତ୍ର ଅଭିନିବେଶ ଭାବରେ ନିଆଯାଇ ପାରିବ ନାହିଁ । ନୈତିକ ଆଚରଣକୁ କେହି ସାମାଜିକ ସଂହତି ଓ ଶୃଙ୍ଖଳା ପାଇଁ ଗ୍ରହଣ କରିପାରନ୍ତି ଓ ସେ ଦୃଷ୍ଟିରୁ ନୈତିକ ଜୀବନ ଯାପନ ପାଇଁ ପ୍ରେରଣା ଲାଭ କରିପାରନ୍ତି । ଅନୈତିକ ଆଚରଣ ଦ୍ୱାରା ନିଜର ସମ୍ମାନ ହରାଇ ସାମାଜିକ କଟାକ୍ଷ ଲାଭ କରୁଥିବାର ସମ୍ଭାବନାରୁ କେହି ନୈତିକ ଆଚରଣ ପ୍ରତି ଆଗ୍ରହୀ ରହିପାରନ୍ତି । କିମ୍ବା ନୈତିକ ଜୀବନର ଅନ୍ତର୍ନିହିତ ପବିତ୍ରତା ଉପରେ ବିଶ୍ୱାସ ରଖି କେହି ନୈତିକ ଜୀବନ ପାଇଁ ଅଭିନିବେଶ ଲାଭ କରିପାରନ୍ତି । ଏତଦ୍‌ବ୍ୟତୀତ ପ୍ରତ୍ୟେକଟି ନୈତିକ ଆଚରଣ ପଶ୍ଚାତରେ ଧର୍ମଗତ ମନୋଭାବ ରହିବା ଦେଖାଯାଏ ନାହିଁ । ଜଣେ ନିରୀଶ୍ୱରବାଦୀ ବା ଧର୍ମନିରପେକ୍ଷବାଦୀ ବ୍ୟକ୍ତିଙ୍କର ନୈତିକ ଆଚରଣ ଅତି ଉଚ୍ଚମାନର ହୋଇପାରେ, ଅଥଚ ଧର୍ମଗତ କାରଣରୁ ଜଣେ ଅତ୍ୟନ୍ତ ଅନୈତିକ କାର୍ଯ୍ୟର ଆଶ୍ରୟ ନେଇପାରେ । ସୁତରାଂ ଧର୍ମ ଓ ନୈତିକତାକୁ ସଂପୂର୍ଣ୍ଣ ଭାବରେ ପୃଥକ୍ କରାଯାଇପାରେ ଓ ସେମାନଙ୍କର ଭିତ୍ତି ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ ବୋଲି ଦର୍ଶାଯାଇପାରେ । ବସ୍ତୁତ ଧର୍ମ ଓ ଈଶ୍ୱର ବିଶ୍ୱାସ ସହିତ ନୈତିକତାକୁ ତାର୍କିକ ଦୃଷ୍ଟିକୋଣରୁ ସଂଶ୍ଳିଷ୍ଟ କରାଯାଇ ପାରିବ ନାହିଁ ।

ସାଂପ୍ରତିକ ବିଶ୍ୱରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଧିକରୁ ଅଧିକ ସ୍ୱୀକୃତି ଲାଭ କରିବାରେ ଲାଗିଛି । ପରିଣାମ ସ୍ୱରୂପ ଧର୍ମନିରପେକ୍ଷ ଆଦର୍ଶ ଏକ ସଭ୍ୟ ଜୀବନଧାରାର ପ୍ରତୀକ ଭାବେ ଆଜି ଆନ୍ତର୍ଜାତିକ ସ୍ତରରେ ଗ୍ରହଣଯୋଗ୍ୟ ହେବାରେ ଲାଗିଛି । ଫଳରେ ଧର୍ମର ପ୍ରଭାବ ସାମାଜିକ ଜୀବନ ପ୍ରବାହରେ ହ୍ରାସ ପାଉଥିବା ମନେହୁଏ । ଅବଶ୍ୟ କେତେକ ରାଷ୍ଟ୍ରରେ କେତେକ କ୍ଷମତାଲିପ୍ସୁ ଶାସକ ନିଜର ରାଜନୈତିକ ଲକ୍ଷ୍ୟ ସାଧନ ପାଇଁ ଧର୍ମର ଦ୍ୱାହି ଦେଇ ସାମ୍ପ୍ରଦାୟିକ ମନୋଭାବ ସୃଷ୍ଟି କରୁଛନ୍ତି ଓ ଜନଗଣଙ୍କର ଧର୍ମଗତ ଭାବପ୍ରବଣତାର ସୁଯୋଗ ନେଉଛନ୍ତି । ତଥାପି ଅତୀତ ସମାଜରେ ଧର୍ମ ଯେପରି ଏକ ସର୍ବଗ୍ରାସୀ ଭୂମିକା ନେଇ ସମାଜରେ ସକଳ ସଂଗଠନ ଓ ନିୟନ୍ତ୍ରଣକୁ ପ୍ରଭାବିତ କରି ରଖିଥିଲା, ତାହା ପରିବର୍ତ୍ତିତ ହୋଇ ଧର୍ମୋତ୍ତର ମୂଲ୍ୟବୋଧ ଆଜି ଅଛ ବହୁତ ପ୍ରତ୍ୟେକ ସମାଜରେ ସ୍ୱୀକୃତ ହେବାରେ ଲାଗିଛି । ବିଶେଷ କରି ସଂପ୍ରତି ବିଶ୍ୱଜନୀନ ଓ ଆନ୍ତର୍ଜାତିକ ମନୋଭାବର ଯେପରି ବିକାଶ ହେଉଛି, ସେ କ୍ଷେତ୍ରରେ ଧର୍ମନିରପେକ୍ଷ ମୂଲ୍ୟବୋଧ ଓ ଏକ ଧର୍ମୋତ୍ତର ସମାଜକୁ ସାମାଜିକ ଶ୍ରେୟ ଭାବରେ ଗ୍ରହଣ କରିବା ଅଧିକ ପ୍ରାସଙ୍ଗିକ ମନେହୁଏ । ଅଧୁନା ଧର୍ମର ଆହ୍ୱାନ ଅପେକ୍ଷା ଧର୍ମ ନିରପେକ୍ଷ ମୂଲ୍ୟବୋଧ, ମାନବବାଦ ଓ ଆନ୍ତର୍ଜାତିକ ମନୋଭାବର ଆହ୍ୱାନ ଆଧୁନିକ ମଣିଷ ପାଇଁ ଅଧିକ ଗ୍ରହଣଯୋଗ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ ।

❑❑❑

# ଧର୍ମ ନିରପେକ୍ଷତା : ଏକ ଅନୁଶୀଳନ

ଧର୍ମନିରପେକ୍ଷତା ଧର୍ମ ଭାବନା ସହ ସଂପୃକ୍ତ । ଏହାର ଅନୁଶୀଳନ ଧର୍ମ ଭାବନାକୁ ବାଦ୍‌ଦେଇ ସମ୍ଭବ ନୁହେଁ, ବରଂ ଧର୍ମ ପୃଷ୍ଠଭୂମିରେ ହିଁ ଏହା ବିଚାର୍ଯ୍ୟ । ମଣିଷର ସାମାଜିକ ବିକାଶ ଧାରାରେ ଧର୍ମର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଇତିହାସରୁ ଏହା ଜଣାପଡ଼େ ଯେ ପୃଥିବୀର ବିଭିନ୍ନ ଭୌଗୋଳିକ ପରିବେଶରେ ସୁସଂହତ, ସଂଘବଦ୍ଧ ସାମାଜିକ ଜୀବନର ବିକାଶ ସହିତ ଧାର୍ମିକ ମାନସିକତା ସୃଷ୍ଟି ହେଲା । ଗୋଟିଏ କ୍ଷୁଦ୍ର ଭୌଗୋଳିକ ପରିବେଶରେ ସୃଷ୍ଟି ହୋଇଥିବା ଧାର୍ମିକ ବିଶ୍ୱାସ କାଳକ୍ରମେ ବୃହତ୍ତର ପରିବେଶକୁ ପ୍ରସାରିତ ହେଲା ଓ ଗୋଟିଏ ବ୍ୟାପକ ପରିସରରେ ସାମାଜିକ ସଂହତି ସୃଷ୍ଟି କଲା । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ଜାଗରଣ ଭାବରେ ଗୋଟିଏ ସୀମିତ ଗୋଷ୍ଠୀ ମଧ୍ୟରେ ଉଦ୍ଭବ ହୋଇଥିଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ଏହା ବୃହତ୍ତର ସାମାଜିକ ଗୋଷ୍ଠୀ ଭିତରେ ପ୍ରସାର ଲାଭ କରି ସମନ୍ୱୟ ଓ ସଂହତି ଆଣିପାରିଲା । ପ୍ରତ୍ୟେକ ଧର୍ମ ଜଗତ ଓ ଜୀବନର ରହସ୍ୟକୁ ବୁଝିବା ପାଇଁ ଏକ ବୌଦ୍ଧିକ ଭିତ୍ତି ସେ ସମୟରେ ଯୋଗାଇଥିଲା । ପ୍ରତ୍ୟେକ ଧର୍ମ ଭିତରେ ଜଗତ ଓ ଜୀବନ ବିଷୟରେ ସୃଷ୍ଟି ହୋଇଥିବା ଭାବନା ସକଳ ଜାଗତିକ ଘଟଣା ଓ ଜୀବନର ଅନୁଭୂତି ସକଳକୁ ବୁଝିବା ପାଇଁ ପଥ ଦେଖାଇଲା । ଧର୍ମୀୟ ବିଶ୍ୱାସର ମାନଦଣ୍ଡରେ ଜୀବନର ଘନଘଟା ଓ ପ୍ରକୃତିର ରହସ୍ୟକୁ ଅବଧାରଣା କରାଯାଇ ବ୍ୟାଖ୍ୟା କରାଗଲା । ଏତଦ୍‌ବ୍ୟତୀତ ଧର୍ମ ବସ୍ତୁତଃ ଏକ ସାମାଜିକ ଘଟଣା ହୋଇଥିବାରୁ ପ୍ରତ୍ୟେକ ଧର୍ମୀୟ ପରମ୍ପରାରେ କାଳକ୍ରମେ ନାନା ଉପାସନା ବିଧି, ସମ୍ମିଳିତ ଆରାଧନା, ପୂଜାପାର୍ବଣ ଜନିତ କର୍ମକାଣ୍ଡ ଇତ୍ୟାଦି ସୃଷ୍ଟି ହେଲା । ଏହାରି ମାଧ୍ୟମରେ ଏକ ଧର୍ମୀୟ ସଂଗୋଷ୍ଠୀ ଭିତରେ ସାମାଜିକ ସଂହତି ସୁଦୃଢ଼ ହେଲା । ସେହିପରି ବ୍ୟକ୍ତିଗତ ବା ସାମୂହିକ ଲକ୍ଷ୍ୟ ପ୍ରାପ୍ତି ଦିଗରେ ଧର୍ମ କିଛି ଆଦର୍ଶ ଓ ଶ୍ରେୟ ସୃଷ୍ଟି କଲା । ସେହିପରି ନ୍ୟାୟ-ଅନ୍ୟାୟ, ନୀତିପୂର୍ଣ୍ଣ-ଅନୈତିକ କାର୍ଯ୍ୟ ମଧ୍ୟରେ ପାର୍ଥକ୍ୟ ଆସିଲା ଓ ନ୍ୟାୟ ଏବଂ ନୈତିକତା ଇତ୍ୟାଦି ଧର୍ମୀୟ ଭାବଧାରାରେ ଗୁରୁତ୍ୱପୂର୍ଣ୍ଣ ମନେ ହେଲା । ଧର୍ମୀୟ ମାନଦଣ୍ଡରେ ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ନିୟନ୍ତ୍ରିତ କରିବା ପାଇଁ ନୈତିକ ମୂଲ୍ୟଚୟର ଉଦ୍ରେକ ହେଲା । ମୋଟ ଉପରେ ଧର୍ମୀୟ ଅନୁଶାସନ ନୀତିପୂର୍ଣ୍ଣ ଜୀବନର ମାନଦଣ୍ଡ ହେଲା ।

ବସ୍ତୁତଃ ମଣିଷ ଜାତିର ସୁଦୀର୍ଘ ଇତିହାସରେ ବିଭିନ୍ନ ଭୌଗୋଳିକ ପରିବେଶରେ ସୃଷ୍ଟି ହୋଇଥିବା ଧର୍ମୀୟ ଭାବନାଗୁଡ଼ିକ କାଳକ୍ରମେ ଧର୍ମ ଅନୁଷ୍ଠାନରେ ପରିଣତ ହୋଇଗଲା ଓ ଧର୍ମ ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ଗ୍ରହଣ କଲା । ସାଂପ୍ରତିକ ଯୁଗରେ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ ଭିତରୁ ସେମାନଙ୍କ ମଧ୍ୟରେ ଥିବା ସୈଦ୍ଧାନ୍ତିକ ଓ ମୌଳିକ ପାର୍ଥକ୍ୟ ଜଣାପଡିଲେ ବି ଧର୍ମ-ଚେତନା ଭିତରେ କେତେକ ସାଧାରଣ ନିର୍ଯ୍ୟାସ ଦେଖିବାକୁ ମିଳେ । ଧର୍ମୀୟ ମାନସିକତାରେ ଏହି ଲକ୍ଷଣ ଗୁଡ଼ିକ ସଂଶ୍ଲିଷ୍ଟ ହୋଇ ରହିବା ଦେଖାଯାଏ ।

ମୋଟାମୋଟି ଭାବରେ ପ୍ରତ୍ୟେକ ଧର୍ମ କେତେକ ବିଶ୍ୱାସ ଉପରେ ଆଧାରିତ ହେବା ଦେଖାଯାଏ । ଧର୍ମର ଉତ୍ପତ୍ତି ସମୟରେ ମଣିଷର ମାନସିକତାକୁ ଅତୀନ୍ଦ୍ରିୟ ବିଶ୍ୱାସ କବଳିତ କରିଥିବାରୁ ପ୍ରତ୍ୟେକ ଧର୍ମଭିତରେ କିଛି ଅତୀନ୍ଦ୍ରିୟ

ପରିକଳ୍ପନା ଦେଖାଯାଏ । ଏପରିକି ପ୍ରାକୃତିକ ଘଟଣା ପ୍ରବାହକୁ ଆଲୌକିକ ମାନଦଣ୍ଡରେ ବ୍ୟାଖ୍ୟା କରାଯାଏ ଓ ନୈତିକ ଆଦର୍ଶ ସକଳକୁ ଈଶ୍ୱରୀୟ ନିର୍ଦ୍ଦେଶ ବୋଲି ଗ୍ରହଣ କରାଯାଏ । ମୃତ୍ୟୁପରେ ଜୀବନର ବା ଆତ୍ମାର ସ୍ଥିତି ବିଷୟରେ ଧର୍ମମାନଙ୍କରେ ପୃଥକ୍ ପୃଥକ୍ ପରିକଳ୍ପନା ମଧ୍ୟ ଦେଖାଯାଏ । ପରମ ସତ୍ତା, ପବିତ୍ର ଧର୍ମଗ୍ରନ୍ଥ ଓ ଅଲଙ୍ଘନୀୟ ଅନୁଶାସନ ଧର୍ମୀୟ ଚେତନାରେ ସଂଶ୍ଳିଷ୍ଟ ହେବା ଜଣାଯାଏ । କେତେକ ଧର୍ମରେ ମଣିଷର ଐହିକ ଜୀବନକୁ ନ୍ୟୂନ କରାଯାଇ ଏକ ପାରଲୌକିକ ସ୍ଥିତିକୁ ଗୁରୁତ୍ୱ ଦିଆଯାଏ । ମୋଟ ଉପରେ ଧର୍ମୀୟ ଚେତନା ମଧ୍ୟରେ ବିଚାରଶୀଳତା ଅପେକ୍ଷା ବିଶ୍ୱାସକୁ ପ୍ରାଧାନ୍ୟ ଦିଆଯାଏ କାରଣ ଧର୍ମର ବହୁ ସିଦ୍ଧାନ୍ତ ବିଶ୍ୱାସ ଉପରେ ନିର୍ଭର କରିଥାଏ ।

ସାଂସ୍କୃତିକ ପୃଷ୍ଠଭୂମିରୁ ଧର୍ମ ରାଜନୈତିକ ଆଦର୍ଶ, ଜଗଦଦୃଷ୍ଟି ଓ ବୌଦ୍ଧିକ ଆଧାରର ମଧ୍ୟ ସୂତ୍ରପାତ କରାଇଛି, ଯାହାକି ପରବର୍ତ୍ତୀ ପର୍ଯ୍ୟାୟରେ ଯଥାର୍ଥ ବୋଧ ହୋଇନାହିଁ । ବିଶେଷତଃ ମଧ୍ୟଯୁଗୀୟ ବିଚାରଧାରାରେ ଧର୍ମ ଏକ ପ୍ରମୁଖ ଭୂମିକା ଗ୍ରହଣ କରି ସମାଜର ସକଳ ସ୍ତରକୁ ପ୍ରଭାବିତ କରି ରଖିଥିଲା । ରାଜନୈତିକ ବିମର୍ଶ ସ୍ତରରେ ତତ୍କାଳୀନ ସମୟରେ ପ୍ରଚଳିତ ଥିବା ଏକଛତ୍ରବାଦ ଓ ସାମନ୍ତବାଦକୁ ଏହା ସ୍ୱୀକାର କରିବା ସହ ତାହାର ପବିତ୍ରତା ନେଇ ଭାବନା ସୃଷ୍ଟି କରିଥିଲା । ଧର୍ମଯାଜକମାନେ ଈଶ୍ୱର ଓ ଶାସକ ଗୋଷ୍ଠୀ ମଧ୍ୟରେ ମଧ୍ୟସ୍ଥ ଭଳି କାର୍ଯ୍ୟକରିବା ବିଧିସମ୍ମତ ଥିଲା । ସେହି ଯୁଗରେ ଈଶ୍ୱର, ଅତୀନ୍ଦ୍ରିୟ ବିଶ୍ୱାସ, ପାରଲୌକିକ ବିଚାର ଓ ରହସ୍ୟମୟ ଭାବନା ମଣିଷ ବୋଧିର ମୁଖ୍ୟ ବିଷୟ ହୋଇ ରହିଥିଲା । ଦୃଶ୍ୟମାନ ଜଗତ ଓ ସାମାଜିକ ଘଟଣା ପ୍ରବାହ ଅପେକ୍ଷା "ଅଦୃଷ୍ଟ" ମଣିଷ ଜ୍ଞାନର ପ୍ରଧାନ ଉପଜୀବ୍ୟ ହୋଇ ରହିଥିଲା । ଧର୍ମଗ୍ରନ୍ଥର ବାଣୀ ଚିରନ୍ତନ ବୋଲି ବିଶ୍ୱାସ କରାଯାଉଥିଲା । ସ୍ୱାଧୀନ ଚିନ୍ତା ଓ ବୈଜ୍ଞାନିକ ଭାବନା ଅଚିନ୍ତନୀୟ ଥିଲା । ସମାଜର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଚେତନା ଭିତରେ ସାମନ୍ତବାଦୀ ଦୃଷ୍ଟିକୋଣର ସ୍ପଷ୍ଟ ପ୍ରତିଫଳନ ଥିଲା । ସାଧାରଣ ମଣିଷ ନ୍ୟୂନ ହୋଇ ରହିଥିଲା ଓ ବ୍ୟକ୍ତି ମର୍ଯ୍ୟାଦାର କୌଣସି ମହତ୍ତ୍ୱ ନ ଥିଲା ।

ଏହିପରି ଏକ ପରିବେଶ ଯେତେବେଳେ ସର୍ବତ୍ର ରହିଥିଲା ସେତେବେଳେ ୟୁରୋପରେ ଏକ ନୂଆ ଆଲୋଡନ ଆସିଲା । ୟୁରୋପୀୟ ନବଜାଗରଣ ଏକ ନୂଆ ବୌଦ୍ଧିକ ସଂସ୍କୃତିର ଭିତ୍ତି ପକାଇଲା । ଏହାର ପୃଷ୍ଠଭୂମିରେ ବୈଜ୍ଞାନିକ କ୍ରିୟାଶୀଳତା ମୁଖ୍ୟ ଭୂମିକା ନେଇଥିଲା । ଆସ୍ତେ ଆସ୍ତେ ପ୍ରକୃତିର ବହୁ ରହସ୍ୟ ମଣିଷ ଜ୍ଞାନର ପରିସରରେ ବ୍ୟାଖ୍ୟା ହୋଇପାରିଲା । ପ୍ରକୃତିକୁ ବିଶ୍ଳେଷଣ କରିବାରେ କ୍ରମବର୍ଦ୍ଧିଷ୍ଣୁ ସାମର୍ଥ୍ୟ ଓ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଜୀବନର ମାନକୁ ଉନ୍ନତ କରିପାରିଲା । ଧର୍ମୀୟ ଜ୍ଞାନ ଓ ବିଚାରଗୁଡ଼ିକ ଯେଉଁ ଜଗତ-ଦୃଷ୍ଟିକୁ ପୁଷ୍ଟ କରି ଆସିଥିଲା ତାହା କାଳକ୍ରମେ ଭ୍ରମାତ୍ମକ ବୋଲି ସାବ୍ୟସ୍ତ ହେଲା । ମଣିଷର ଅନୁଭୂତି, ପ୍ରତ୍ୟକ୍ଷ ଜ୍ଞାନ, ବୌଦ୍ଧିକ ଅନୁଶୀଳନ ଓ ତର୍କଶୀଳ ଯୁକ୍ତି ପାଖରେ ଧର୍ମଭିତ୍ତିକ ଜଗତ ଭାବନା ଅପାଙ୍କ୍ତେୟ ହୋଇପଡିଲା । କାଳକ୍ରମେ ବିଜ୍ଞାନ ପର୍ଯ୍ୟବସିତ ଜଗତ ଭାବନା ଗ୍ରହଣଯୋଗ୍ୟ ହେଲା । ଏକ ନୂତନ ବୌଦ୍ଧିକ ଓ ସାଂସ୍କୃତିକ ଆଲୋଡ଼ନ ମଧ୍ୟରୁ ଧର୍ମନିରପେକ୍ଷତାର ଉଦ୍ଭବ ହେଲା । ଏହା ମଣିଷର ଅନୁସନ୍ଧିତ୍ସା, ବିଚାରବୋଧ ଓ ପ୍ରତ୍ୟକ୍ଷ ଜ୍ଞାନ ସହ ସମତାଳ ମନେ ହେଲା ।

ଧର୍ମ ଜନିତ ବିଚାରବୋଧ ରୁଦ୍ଧ ମାନସିକତା ଭିତରେ ଆବଦ୍ଧ ହେବାବେଳେ ଧର୍ମନିରପେକ୍ଷ ଜନିତ ମୂଲ୍ୟଚୟ ସ୍ୱାଧୀନ ଚିନ୍ତାର ବିକାଶ କ୍ଷେତ୍ରରେ ଯଥେଷ୍ଟ ଅନୁକୂଳ ହେଲା । ପ୍ରତ୍ୟେକ ଧର୍ମ ଶାସ୍ତ୍ରରେ ଥିବା ଭାବନା ସକଳକୁ ସେହି ଧର୍ମୀୟ ପରମ୍ପରାରେ ଯେପରି ଶାଶ୍ୱତ ଓ ଅଲଂଘନୀୟ ବୋଲି ଗ୍ରହଣ କରାଯାଉଥିଲା ସେହି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ

ହେଲା । ବିଚାରଶୀଳତାର ପ୍ରାଧାନ୍ୟକୁ ସ୍ୱୀକାର କରିବାରୁ ଧର୍ମନିରପେକ୍ଷ ଆଦର୍ଶ ଅଧିକରୁ ଅଧିକ ସ୍ୱୀକୃତ ହେଲା । ବିଜ୍ଞାନ, ଦର୍ଶନ, ନୈତିକତା ଇତ୍ୟାଦି ପ୍ରତ୍ୟେକ ବୌଦ୍ଧିକ ସ୍ତରରେ ବିଚାରଶୀଳ ମାନଦଣ୍ଡକୁ ଗ୍ରହଣ କରିବାଦ୍ୱାରା ଧର୍ମୀୟ ବିଚାର ଓ ତାର ଆନୁଷଙ୍ଗିକ ମୂଲ୍ୟଚୟ ପ୍ରତି ସନ୍ଦେହର ବୀଜ ବପନ ହେଲା । ବସ୍ତୁତଃ ପ୍ରକୃତିବାଦ, ନିରୀଶ୍ୱରବାଦ, ସଂଶୟବାଦ ପରି ବହୁ ସିଦ୍ଧାନ୍ତ ଆଧୁନିକ ଚନ୍ତା ମାନସରୁ ଉଦ୍ଭବ ହୋଇ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି । ବୈଜ୍ଞାନିକ ମାନଦଣ୍ଡ ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ଏକ ନର୍ଭରଶୀଳ ପ୍ରଣାଳୀ ଭାବେ ବିଶ୍ୱ ସଂକ୍ରାନ୍ତରେ ମଣିଷ ଜ୍ଞାନର ପରିସରକୁ ବହୁ ବ୍ୟାପକ କରିପାରିଛି । ନୈତିକ ମୂଲ୍ୟଚୟ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ ପରିପ୍ରେକ୍ଷୀରେ ଏକ ସାମାଜିକ ଆବଶ୍ୟକତା ଭାବରେ ଗ୍ରହଣୀୟ ହୋଇଛି । ଈଶ୍ୱର ଭାବନା ସହ ନୈତିକତାର ସମ୍ବନ୍ଧ ନେଇ ଧର୍ମକ୍ଷେତ୍ରରେ ଯେଉଁ ବିଶ୍ୱାସ ରହିଥିଲା ତାହାର ପରିବର୍ତ୍ତନ ହୋଇଛି । ବ୍ୟକ୍ତିର ପାରଲୌକିକ ସ୍ଥିତି ଅପେକ୍ଷା ଐହିକ ଜୀବନ ଓ ଜାଗତିକ ସ୍ଥିତି ଉପରେ ଗୁରୁତ୍ୱ ଦିଆଯାଇ ଜୀବନର ମାନକୁ ଉନ୍ନତ କରିବାକୁ ପ୍ରୟାସ ହୋଇଛି । ମୋଟ ଉପରେ କହିଲେ ଧର୍ମୀୟ ମୂଲ୍ୟଚୟଠାରୁ ଭିନ୍ନ ଏକ ବୌଦ୍ଧିକ ସଂସ୍କୃତିର ଉଦ୍ଭବ ସହ ଧର୍ମନିରପେକ୍ଷ ଜୀବନଦୃଷ୍ଟି ମଣିଷର ମାନସିକତାକୁ ଆକୃଷ୍ଟ କରିଛି ।

ୟୁରୋପୀୟ ନବଜାଗରଣରୁ ସୃଷ୍ଟ ସାଂସ୍କୃତିକ ବାତାବରଣ ମଧ୍ୟରୁ ଧର୍ମନିରପେକ୍ଷତା ଏକ ରାଜନୈତିକ ଆଦର୍ଶ ଭାବରେ ପାଶ୍ଚାତ୍ୟ ଚିନ୍ତା ମାନସକୁ ପ୍ରଭାବିତ କରିଥିଲା । ରାଜନୈତିକ ସଂଗଠନରେ ଧର୍ମର ପ୍ରଭାବ ନେଇ ଯେଉଁ ଧର୍ମତନ୍ତ୍ରୀୟ ରାଷ୍ଟ୍ର ବ୍ୟବସ୍ଥା ରହି ଆସିଥିଲା, ତାହା ବିରୁଦ୍ଧରେ ବିପ୍ଳବ ବା ଜନ ଜାଗରଣ ସୃଷ୍ଟି ହୋଇ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ଭିତ୍ତି ପଡିଲା । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଧର୍ମନିରପେକ୍ଷ ମୂଲ୍ୟବୋଧକୁ ଗ୍ରହଣ କଲା । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଧର୍ମନିରପେକ୍ଷ ମୂଲ୍ୟବୋଧକୁ ସ୍ୱୀକୃତି ଦେଉଥିଲେ ମଧ୍ୟ ଏକ ଧର୍ମନିରପେକ୍ଷ ବ୍ୟବସ୍ଥାରେ ଗଣତନ୍ତ୍ର ରହିବା ଅବଶ୍ୟମ୍ଭାବୀ ନୁହେଁ । ଭିନ୍ନ ଭିନ୍ନ ରାଜନୈତିକ ବ୍ୟବସ୍ଥାରେ ଧର୍ମନିରପେକ୍ଷତା ରହିପାରେ, ଅର୍ଥାତ୍ ରାଜନୈତିକ ସଂଗଠନରୁ ଧର୍ମକୁ ଦୂରେଇ ଦିଆଯାଇ ପାରେ । ଏକ ରାଷ୍ଟ୍ର ଧର୍ମର ବିକାଶ ପ୍ରତି ଉଦାସୀନ ରହିପାରେ କିମ୍ବା ଧର୍ମ ପ୍ରତି ଏକ ପ୍ରତିକୂଳ ଆଭିମୁଖ୍ୟ ଗ୍ରହଣ କରିପାରେ । ଏପରିକି ଏକ ରାଷ୍ଟ୍ର ଜନଗଣଙ୍କର ଧର୍ମଗତ ଅଧିକାରକୁ ସଙ୍କୁଚିତ କରିପାରେ ଓ ସାମୂହିକ ଧର୍ମଗତ କାର୍ଯ୍ୟକୁ ସାଧାରଣରେ ନିଷିଦ୍ଧ କରିପାରେ । ଧର୍ମ ପ୍ରତି କୌଣସି ପ୍ରତିକୂଳ ଆଭିମୁଖ୍ୟ ନ ରଖି ମଧ୍ୟ ରାଷ୍ଟ୍ର ଏହା ପ୍ରତି ଉଦାସୀନ ରହିପାରେ ଓ ଧର୍ମୀୟ ସଂଗଠନକୁ ଜାତୀୟ ଜୀବନରେ କୌଣସି ଗୁରୁତ୍ୱ ଦେଇନପାରେ । ବସ୍ତୁତଃ ରାଜନୈତିକ ସ୍ତରରେ ଧର୍ମନିରପେକ୍ଷତା ଏକ ଧର୍ମତାନ୍ତ୍ରିକ ରାଷ୍ଟ୍ର ବ୍ୟବସ୍ଥାର ବିରୋଧ କରିଥାଏ । ଧର୍ମ ନିରପେକ୍ଷ ରାଷ୍ଟ୍ରରେ ଧର୍ମଗତ ବିଶ୍ୱାସ ଓ ଧର୍ମୀୟ ଉତ୍ତରାଧିକାରକୁ ନେଇ ଜନଗଣଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ କରାଯାଇ ନଥାଏ । ଜନଗଣ ସେମାନଙ୍କର ଧର୍ମଗତ ବିଶ୍ୱାସ ବା ଆରାଧନାକୁ ନେଇ ନାଗରିକ ଅଧିକାର କ୍ଷେତ୍ରରେ ପରସ୍ପରଠାରୁ ପୃଥକ୍ ହୋଇ ନଥାନ୍ତି । ଧର୍ମ ନାଗରିକଙ୍କର ବ୍ୟକ୍ତିଗତ ସ୍ତରର ବିଶ୍ୱାସ ବା ଅବିଶ୍ୱାସ ସହ ସଂଶ୍ଳିଷ୍ଟ ହୋଇଥାଏ ଓ ରାଷ୍ଟ୍ରରେ ବ୍ୟକ୍ତିଗତ ଅଧିକାର ବା ନାଗରିକ ସୁବିଧା ସୁଯୋଗ କ୍ଷେତ୍ରରେ କୌଣସି ପ୍ରଭେଦ ଆଣି ନଥାଏ । ଫଳତଃ ଏକ ଧର୍ମନିରପେକ୍ଷ ରାଷ୍ଟ୍ରରେ ଜନଗଣଙ୍କ ମଧ୍ୟରେ ସଂହତି ରହିବା ସହଜ ହୋଇଥାଏ ।

ଅବଶ୍ୟ ଏକ ରାଷ୍ଟ୍ରରେ ଧର୍ମନିରପେକ୍ଷ ବ୍ୟବସ୍ଥାର ସଫଳତା ଏକ ଆନୁଷଙ୍ଗିକ ସାମାଜିକ ସ୍ଥିତି ଉପରେ ନିର୍ଭର କରିଥାଏ । କେବଳ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ଏକ ରାଷ୍ଟ୍ର ଧର୍ମନିରପେକ୍ଷତାକୁ ଏକ ରାଜନୈତିକ ଆଦର୍ଶ ଭାବେ ଗ୍ରହଣ

କରିବା ଯଥେଷ୍ଟ ନୁହେଁ । ଏକ ରାଜନୈତିକ ଆଦର୍ଶର ସଫଳତା ଅନୁରୂପ ସାମାଜିକ ଜୀବନଧାରା ଉପରେ ନିର୍ଭର କରେ । ସମାଜର ଜନଗଣ ସେମାନଙ୍କର ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ କ୍ଷେତ୍ରରେ ଯଦି ଧର୍ମନିରପେକ୍ଷ ମୂଲ୍ୟଚୟକୁ ସ୍ୱୀକୃତି ନ ଦିଅନ୍ତି ତେବେ ସାମ୍ବିଧାନିକ ବ୍ୟବସ୍ଥା ସତ୍ତ୍ୱେ ସାମାଜିକ ସ୍ଥିରତା ଓ ସଂହତି ବିପନ୍ନ ହୋଇଥାଏ । ସୁତରାଂ ଧର୍ମନିରପେକ୍ଷ ମୂଲ୍ୟଚୟ ପ୍ରତି ସାମାଜିକ ପ୍ରତିବଦ୍ଧତା ନ ରହିଲେ ରାଜନୈତିକ ସ୍ତରରେ ଧର୍ମନିରପେକ୍ଷତା ସଫଳ ହୋଇପାରେ ନାହିଁ । ଅବଶ୍ୟ ଏକ ଧର୍ମନିରପେକ୍ଷ ସମାଜ ପାଇଁ ସେପରି ନିରଙ୍କୁଶ ମାନଦଣ୍ଡ ବାହାର କରିବା ସମ୍ଭବ ନୁହେଁ, ତଥାପି ଆପେକ୍ଷିକ ଭାବରେ ଏହାର କେତେକ ମୌଳିକ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇପାରେ । ସାମାଜିକ ମନସ୍ତତ୍ତ୍ୱ ଭିତରେ ଧର୍ମଗତ ରକ୍ଷଣଶୀଳତା ଅପେକ୍ଷା ଧର୍ମଗତ ସହିଷ୍ଣୁତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ପ୍ରଗତିଶୀଳ ମୂଲ୍ୟଚୟ ପ୍ରତି ଅଧିକ ଗ୍ରହଣଶୀଳତା ରହିଥିବା ଆବଶ୍ୟକ । ସମାଜର ଶିକ୍ଷା ବ୍ୟବସ୍ଥା, ସାମାଜିକ ସଂଗଠନ ଇତ୍ୟାଦି ରକ୍ଷଣଶୀଳ ଭାବନା ପରିବର୍ତ୍ତେ ବିଚାରଶୀଳ ଆଦର୍ଶଦ୍ୱାରା ପରିଚାଳିତ ହେବା ଉଚିତ । ଧର୍ମଗତ ସହନଶୀଳତା ଓ ଜାତୀୟ ସଂହତି ପ୍ରତି ଏକ ସାଧାରଣ ଅନୁରକ୍ତି ସମାଜରେ ରହିବା ଦରକାର । ଧର୍ମଗତ ପାର୍ଥକ୍ୟକୁ ନେଇ ସମାଜରେ ତୀବ୍ର ଭାବପ୍ରବଣତା ବା ଉତ୍ତେଜନା ପ୍ରକାଶ ପାଇବା ଏକ ସୁସ୍ଥ ସମାଜର ଲକ୍ଷଣ ନୁହେଁ । ବରଂ ଜାତୀୟ ଭାବନା ଓ ଭ୍ରାତୃଭାବ ଦ୍ୱାରା ଜନଗଣ ପରିଚାଳିତ ହେବା ଧର୍ମ ନିରପେକ୍ଷ ମୂଲ୍ୟଚୟର ସ୍ୱାକ୍ଷର ବହନ କରେ । ଜନଗଣଙ୍କ ମଧ୍ୟରେ ଥିବା ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଐକ୍ୟକୁ ଯଦି ଧର୍ମଗତ ଆବେଗ କ୍ଷୁଣ୍ଣ କରୁନଥାଏ ଓ ଧର୍ମଗତ ଭିନ୍ନତା ବ୍ୟକ୍ତିଗତ ସ୍ତରରେ ସୀମିତ ରହିଥାଏ ତେବେ ସମାଜର ଧର୍ମନିରପେକ୍ଷ ମୂଲ୍ୟଚୟ ପ୍ରତି ପ୍ରତିବଦ୍ଧତା ଜଣାପଡ଼େ । ସେ କ୍ଷେତ୍ରରେ ସମାଜର ସାଧାରଣ ବ୍ୟକ୍ତିଙ୍କର ଜୀବନଧାରାରେ ଧର୍ମଗତ ଆବେଗ ପରିବର୍ତ୍ତେ ନାଗରିକ ଶୃଙ୍ଖଳା, କର୍ତ୍ତବ୍ୟବୋଧ ଓ ରାଷ୍ଟ୍ରପ୍ରୀତି ରହିଥାଏ । ଧର୍ମ ପ୍ରତି ରକ୍ଷଣଶୀଳ ଆବେଗ ପରିବର୍ତ୍ତେ ମାନବିକ ଅନୁରାଗ ଓ ମାନବବାଦୀ ସମ୍ବେଦନଶୀଳତାର ପ୍ରାଧାନ୍ୟ ଅଧିକ ରହିଥାଏ । ସାଂପ୍ରଦାୟିକ ବିଦ୍ୱେଷ ପରିବର୍ତ୍ତେ ଏହି ସଂପ୍ରୀତି ଏକ ଧର୍ମନିରପେକ୍ଷ ସମାଜର ଜୀବନଧାରାରେ ଅଧିକ ପ୍ରତିଫଳିତ ହେଉଥାଏ । ସାମାଜିକ ମନସ୍ତତ୍ତ୍ୱ ଭିତରେ ଧର୍ମୀୟ ରକ୍ଷଣଶୀଳତା ପରିବର୍ତ୍ତେ ବିଚାରଶୀଳ ଓ ମୁକ୍ତ ଦୃଷ୍ଟିଭଙ୍ଗୀ ରହିବା ସାମାଜିକ ପ୍ରଗତିଶୀଳତାର ଲକ୍ଷଣ ବହନ କରେ । ଅବଶ୍ୟ ଏହି ସବୁ ଲକ୍ଷଣ ସମାଜରେ ପୂର୍ଣ୍ଣ ପ୍ରତିଫଳିତ ହେବା ଦ୍ୱାରା ସମାଜ ଯେ ଧର୍ମନିରପେକ୍ଷ ହୋଇଥାଏ ତାହା କୁହାଯାଇ ନାହିଁ । ସେହିପରି ଧର୍ମନିରପେକ୍ଷତା କ୍ଷେତ୍ରରେ ଏହି ଲକ୍ଷଣଗୁଡିକ ସ୍ୱୟଂସଂପୂର୍ଣ୍ଣ ତାହା ମଧ ନୁହେଁ । କିନ୍ତୁ ଏକ ଧର୍ମନିରପେକ୍ଷ ସମାଜ ପୃଷ୍ଠଭୂମିରେ ଏହି ବୈଶିଷ୍ଟ୍ୟ ସକଳ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ବସ୍ତୁତଃ ରାଷ୍ଟ୍ରର ରାଜନୈତିକ ଓ ସାମାଜିକ ଅନୁଷ୍ଠାନ ସହିତ ଧର୍ମର ସମ୍ବନ୍ଧ ପୃଷ୍ଠଭୂମିରେ ଧର୍ମନିରପେକ୍ଷତା ବିଚାର୍ଯ୍ୟ । ଅତୀତରେ ଧର୍ମ ସର୍ବଗ୍ରାସୀ ଭୂମିକା ନେଇ ରାଷ୍ଟ୍ରୀୟ ସଂଗଠନ ଓ ସକଳ ସାମାଜିକ ଅନୁଷ୍ଠାନକୁ ନିୟନ୍ତ୍ରିତ କରି ରଖିଥିଲା । ପରନ୍ତୁ ଧର୍ମନିରପେକ୍ଷତା ଏହି ସମ୍ବନ୍ଧ କ୍ଷେତ୍ରରେ ପରିବର୍ତ୍ତନର ସୂତ୍ରପାତ କରାଇ ଏସବୁକୁ ଧର୍ମର ପ୍ରଭାବରୁ ମୁକ୍ତ କଲା । ଅର୍ଥାତ୍ ରାଷ୍ଟ୍ର ଓ ସମାଜରେ ଧର୍ମର ପ୍ରଭାବ ଯେତିକି ସୁଦୃଢ଼ ହୁଏ ସମାଜ ଧର୍ମନିରପେକ୍ଷ ଭାବନା ଓ ମୂଲ୍ୟଚୟଠାରୁ ଦୂରେଇ ଯାଏ ଅଥଚ ଧର୍ମର ପ୍ରଭାବରୁ ସମାଜ ଓ ରାଜନୈତିକ ସଂଗଠନ ଯେତିକି ମୁକ୍ତ ହୁଏ ସମାଜରେ ଧର୍ମନିରପେକ୍ଷ ଆଦର୍ଶର ସେତିକି ପ୍ରସାର ହୁଏ । ରାଜନୈତିକ ଦୂରଭିସନ୍ଧି ନେଇ ସମୟରେ ଧର୍ମନିରପେକ୍ଷତାର ବିଭିନ୍ନ ବ୍ୟାଖ୍ୟା କରାଯାଏ । ଧର୍ମପରି ଏକ ସ୍ପର୍ଶକାତର ଭାବନା ମାଧ୍ୟମରେ ରକ୍ଷଣଶୀଳ ଜନଗଣଙ୍କର ମାନସିକତାକୁ ପ୍ରଭାବିତ

କରିବା ସମ୍ଭବ ହେଉଥିବାରୁ ରାଜନୈତିକ ଦୃଶ୍ୟପଟରେ ଧର୍ମନିରପେକ୍ଷତା ଭିନ୍ନ ଭିନ୍ନ ବୋଲି ଭ୍ରମ ସୃଷ୍ଟି କରାଯାଏ । ମୌଳବାଦ ଓ ସାଂପ୍ରଦାୟିକ ବିଚାରକୁ ପ୍ରଚ୍ଛନ୍ନ ଭାବରେ ସମର୍ଥନ କରି ରାଜନୈତିକ ଲକ୍ଷ୍ୟ ସାଧନ ଦିଗରେ ପ୍ରୟାସକୁ ମଧ୍ୟ ଧର୍ମନିରପେକ୍ଷତା କହି ଏହାର ସ୍ୱନିର୍ମିତ ସଂଜ୍ଞା ଦିଆଯାଏ । କିନ୍ତୁ ବାସ୍ତବପକ୍ଷେ ଧର୍ମନିରପେକ୍ଷତାର ଅର୍ଥ କ୍ଷେତ୍ରରେ ପାର୍ଥକ୍ୟ ରହିବା ପରିବର୍ତ୍ତେ ଏହାର ପ୍ରୟୋଗ ଓ ରୂପାୟନ ସ୍ତରରେ ସାମାଜିକ ବା ରାଜନୈତିକ ସ୍ଥିତି ଭିନ୍ନ ପ୍ରକାରର ଅଟେ କହିବା ଅଧିକ ସମୀଚୀନ ମନେହୁଏ ।

ଏହି ପୃଷ୍ଠଭୂମିରେ ଧର୍ମନିରପେକ୍ଷତା ମୌଳବାଦ ଓ ସାଂପ୍ରଦାୟିକତାଠାରୁ କିପରି ପୃଥକ୍ ତାହା ଦର୍ଶାଯାଇପାରେ । ଧର୍ମୀୟ ବିଚାର, ଆବେଗ ଓ ଜୀବନ-ଦୃଷ୍ଟି ସହ ମୌଳବାଦ ଓ ସାଂପ୍ରଦାୟିକତା ସଂପୃକ୍ତ ହେବା ବେଳେ ଧର୍ମନିରପେକ୍ଷତା ଏହାର ବିପରୀତ ଆଦର୍ଶଚୟର ପ୍ରତୀକ ଅଟେ । ମୌଳବାଦ ଓ ସାଂପ୍ରଦାୟିକତା ଭିତରେ ପାର୍ଥକ୍ୟ ରହିଥିଲେ ମଧ୍ୟ ଧର୍ମକୁ ସ୍ୱୀକାର କରିବା କ୍ଷେତ୍ରରେ ସେମାନେ ପରସ୍ପର ନିକଟବର୍ତ୍ତୀ ଅଟନ୍ତି । ଗୋଟିଏ ଧର୍ମ ପରମ୍ପରାରେ ଅନୁସୃତ ହେଉଥିବା ବିଶ୍ୱାସ, ପୂଜାପାର୍ବଣ, ଉପଚାର ଓ ତାତ୍ତ୍ୱିକ ଭାବନାକୁ ନିଷ୍ଠାର ସହ ଗ୍ରହଣ କରିବା ହେଉଛି ମୌଳବାଦ । ଜଣେ ମୌଳବାଦୀ ନିଷ୍ଠାର ସହ ନିଜ ଧର୍ମର ବିଶ୍ୱାସ ଓ ବିଧିଗୁଡ଼ିକ ପାଳନ କରିଥାନ୍ତି ଓ ସେସବୁ ପ୍ରଗତିଶୀଳ ମୂଲ୍ୟବୋଧର ଯେତେ ପରିପନ୍ଥୀ ହେଲେ ମଧ୍ୟ ସେ ନିଜର ଦୃଷ୍ଟିକୋଣରେ କୌଣସି ପରିବର୍ତ୍ତନ ଆଣିନଥାନ୍ତି । ଧର୍ମୀୟ ବିଶ୍ୱାସ ସକଳକୁ ଅତି ନିଷ୍ଠାର ସହ ପାଳନ କରିବା କ୍ଷେତ୍ରରେ ସେ ରକ୍ଷଣଶୀଳ ମନୋଭାବ ପୋଷଣ କରିଥାନ୍ତି । ସାଂପ୍ରଦାୟିକତା ପରନ୍ତୁ ଅନ୍ୟ ଧର୍ମ ବା ଧର୍ମାବଲମ୍ବୀମାନଙ୍କ ପ୍ରତି ଏକ ବିଦ୍ୱେଷମୂଳକ ଭାବନାର ପ୍ରତୀକ ଅଟେ । ସାଂପ୍ରଦାୟିକ ବ୍ୟକ୍ତିବିଶେଷ ନିଜ ଧର୍ମର ତାତ୍ତ୍ୱିକ, ନୈତିକ ଓ ଔପଚାରିକ ଭାବନା ପ୍ରତି ଅନୁରକ୍ତ ରହିବା ପରିବର୍ତ୍ତେ ଅନ୍ୟ ଧର୍ମାବଲମ୍ବୀ ଗୋଷ୍ଠୀ ପ୍ରତି ଅସୂୟାଭାବ ପୋଷଣ କରିଥାନ୍ତି । ମୌଳବାଦ ଏକ ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀକୁ ବୁଝାଇବା ବେଳେ ସାଂପ୍ରଦାୟିକତା ଧର୍ମୀୟ ଅସହିଷ୍ଣୁତା, ଅନ୍ୟ ଧର୍ମ ପ୍ରତି ଏକ ହିଂସାତ୍ମକ ଆବେଗର ସୂଚନା ଦିଏ । ବସ୍ତୁତଃ ଏ ଉଭୟ ଦୃଷ୍ଟିଭଙ୍ଗୀଠାରୁ ଧର୍ମନିରପେକ୍ଷତା ପୃଥକ୍ ଅଟେ ।

ମୋଟ ଉପରେ କହିବାକୁ ଗଲେ ଧର୍ମ ଓ ଧର୍ମନିରପେକ୍ଷତା ଦୁଇଟି ପୃଥକ୍ ଦର୍ଶନ ଓ ଜଗଦ୍‌ଦୃଷ୍ଟି ଉପରେ ଆଧାରିତ । ଅବଶ୍ୟ ଜଗତ ପ୍ରତି ସମସ୍ତଙ୍କର ଏକକ ଦୃଷ୍ଟିକୋଣ ରହିନପାରେ, ପରନ୍ତୁ ମଣିଷର ବୌଦ୍ଧିକ ଇତିହାସରେ ପୃଥକ୍ ଦୃଷ୍ଟିକୋଣ ରହିବା ଦେଖାଯାଏ । ମଣିଷର ଜ୍ଞାନ ଓ ନୈତିକ ଭାବନାର ଭିତ୍ତି ଉପରେ ତା'ର ଜଗଦ୍‌ଦୃଷ୍ଟି ଗଢ଼ି ଉଠିଥାଏ । ଧର୍ମଭିତ୍ତିକ ଜଗଦ୍‌ଦୃଷ୍ଟି କ୍ଷେତ୍ରରେ ଜ୍ଞାନ ଓ ନୈତିକତାର ଯେଉଁ ଆଧାର ସୂତ୍ର ଦେଖିବାକୁ ମିଳେ ତାହା ସାଂପ୍ରତିକ ଅନ୍ୱେଷାରେ ତ୍ରୁଟିପୂର୍ଣ୍ଣ ବୋଲି ମନେ କରାଯାଏ । ଅପରପକ୍ଷରେ ଧର୍ମନିରପେକ୍ଷତାର ଆଧାର ସଭ୍ୟ ଜୀବନଧାରାର ଅନୁକୂଳ ବୋଲି ଗ୍ରହଣ କରାଯାଏ । ଆଧୁନିକ ବିଶ୍ୱରେ ମାନବିକ ମର୍ଯ୍ୟାଦା ଓ ଅଧିକାର, ଗଣତାନ୍ତ୍ରିକ ବ୍ୟବସ୍ଥା, ସାମାଜିକ ନ୍ୟାୟ, ମୁକ୍ତ ଚିନ୍ତନ ଓ ମାନବବାଦ ଇତ୍ୟାଦି ମହତ୍ତର ମୂଲ୍ୟବୋଧ ଭାବେ ଅଧିକରୁ ଅଧିକ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିବାରେ ଲାଗିଛି । ଏପରିକି ବିଶ୍ୱ ଜାତିସଂଘ 'ମାନବିକ ଅଧିକାର' କ୍ଷେତ୍ରରେ ଏକ ସନନ୍ଦକୁ ଗ୍ରହଣ କରିଛି । ଏହି ଆନ୍ତର୍ଜାତିକ ସନନ୍ଦରେ ପ୍ରତିଫଳିତ ମୂଲ୍ୟଚୟ ଧର୍ମନିରପେକ୍ଷତାର ନୈତିକ ଆଦର୍ଶ ସହିତ ସମତାଳ ରକ୍ଷାକରେ । ସେହିପରି ଧର୍ମନିରପେକ୍ଷତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମୁକ୍ତ ଚିନ୍ତା ଓ ବିଚାରଶୀଳତାର ପ୍ରାଧାନ୍ୟକୁ ଗ୍ରହଣ କରିଥାଏ । ଧର୍ମଭିତ୍ତିକ

ବିଚାରବୋଧ କ୍ଷେତ୍ରରେ ଏସବୁ ପରିବର୍ତ୍ତେ ଅତୀନ୍ଦ୍ରିୟ ବିଶ୍ୱାସ ଓ ଧର୍ମଗ୍ରନ୍ଥର ବାଣୀ ବା ଶାସ୍ତ୍ରୀୟ ମତକୁ ପ୍ରାଧାନ୍ୟ ଦିଆଯାଏ । ଧର୍ମ ଓ ତା'ର ଆନୁଷଙ୍ଗିକ ମୂଲ୍ୟଚୟ ତୁଳନାରେ ଧର୍ମନିରପେକ୍ଷତା ଓ ଏହା ସହିତ ସଂଶ୍ଳିଷ୍ଟ ଆଦର୍ଶ ସକଳ ସୈଦ୍ଧାନ୍ତିକ ଦୃଷ୍ଟିକୋଣରୁ ଅଧିକ ସୁସଂହତ ଓ ଯଥାର୍ଥ ମନେହୁଏ । ଏପରିକି ବ୍ୟାବହାରିକ ସ୍ତରରେ ମଧ୍ୟ ଧର୍ମ ଅପେକ୍ଷା ଧର୍ମନିରପେକ୍ଷତା ଗୁଣାତ୍ମକ ଉତ୍କର୍ଷର ସୂଚନା ଦେଇଥାଏ ।

ଅବଶ୍ୟ ଏକ ରାଷ୍ଟ୍ର ବା ସମାଜରେ ଧର୍ମନିରପେକ୍ଷତା କେତେ ଦୂର ବାସ୍ତବପକ୍ଷେ ପ୍ରତିଫଳିତ ହୋଇପାରିବ ତାହା ଏକ ଭିନ୍ନ ପ୍ରଶ୍ନ ଅଟେ । ଏହାର ନିରଙ୍କୁଶ ଅଭିବ୍ୟକ୍ତି ହୁଏତ ସମ୍ଭବ ହୋଇ ନପାରେ । ସମାଜ ଓ ରାଷ୍ଟ୍ରରେ ଏହା ଯେତେ ଅଧିକ ପ୍ରତିଫଳିତ ହୁଏ ସାମାଜିକ ଜୀବନ ସେତିକି ଉନ୍ନତ ଓ ସଂସ୍କୃତି ସଂପନ୍ନ ହୋଇଥାଏ । କାରଣ ସଭ୍ୟତାର ବିକାଶ ଧାରାରେ ଧର୍ମନିରପେକ୍ଷତା ଏକ ସାଂସ୍କୃତିକ ଆରୋହଣର ସ୍ୱାକ୍ଷର ବହନ କରେ । ବସ୍ତୁତଃ ଏହି ମୂଲ୍ୟବୋଧକୁ ସଚେତନ ଭାବରେ ଅସ୍ୱୀକାର କରିବା ବା ରାଷ୍ଟ୍ରୀୟ ଲକ୍ଷ୍ୟଠାରୁ ଏହାକୁ ଦୂରେଇ ଦେବା ନୈତିକ ଓ ସାଂସ୍କୃତିକ ଉତ୍କର୍ଷଠାରୁ ଅପସରି ଯିବା ସହ ସମାନ ଅଟେ ।



# ପାଶ୍ଚାତ୍ୟ ଦୃଷ୍ଟିରେ ଆତ୍ମା ଓ ମନ

ମଣିଷର ଆତ୍ମା ଅଛି କି ? ଯଦି ଆତ୍ମା ଅଛି, ତା'ର ସ୍ୱରୂପ କଣ ? ଆତ୍ମା କଣ ଅବିନାଶୀ ? କେବଳ ମଣିଷର ଆତ୍ମା ଅଛି ନା ଅନ୍ୟ ପ୍ରାଣୀଙ୍କର ବି ? ତେବେ ଏ କ୍ଷେତ୍ରରେ ନାନା କଳ୍ପନା ଓ ବିଶ୍ୱାସର ଆଶ୍ରୟ ନିଆଯାଇଛି । ଗୋଟିଏ ମତାନୁଯାୟୀ କେବଳ ମଣିଷର ଆତ୍ମା ଅଛି, ଅନ୍ୟ ପ୍ରାଣୀଙ୍କର ନାହିଁ । ଏହି ମତର ଯୁକ୍ତି ହେଉଛି ମଣିଷର ଆତ୍ମା ନ ଥିଲେ ମଣିଷ ଓ ଅନ୍ୟ ପ୍ରାଣୀ ଭିତରେ କୌଣସି ପ୍ରଭେଦ ରହି ନଥାନ୍ତା । ଯେହେତୁ ମଣିଷର ସ୍ଥିତି ଅନ୍ୟ ସକଳ ପ୍ରାଣୀଙ୍କ ଠାରୁ ଭିନ୍ନ ମଣିଷ ବିଚାରଶୀଳ, ନୀତିବାଦୀ, ସଭ୍ୟତା ଓ ସଂସ୍କୃତିର ପୃଷ୍ଠପୋଷକ ଇତ୍ୟାଦି- ସେହେତୁ ମଣିଷର ଆତ୍ମା ଅଛି, ଅନ୍ୟ ପ୍ରାଣୀଙ୍କର ନାହିଁ । ଅନ୍ୟ ଏକ ମତାନୁଯାୟୀ ମଣିଷ ଓ ଅନ୍ୟ ଯେ କୌଣସି ପ୍ରାଣୀ ଭିତରେ ଏତେ ସାମଂଜସ୍ୟ ରହିଛି ଯେ ଯଦି ମଣିଷର ଆତ୍ମା ଥାଏ, ତେବେ ଅନ୍ୟ ପ୍ରାଣୀଙ୍କର ବି ଆତ୍ମା ରହିବା ସମ୍ଭବ । ଶାରୀରିକ ଓ ଜୈବିକ ମାନଦଣ୍ଡରୁ ମଣିଷ ଓ ଅନ୍ୟ ପ୍ରାଣୀ ଭିତରେ ଥିବା ମୌଳିକ ସାଦୃଶ୍ୟ ଯୋଗୁଁ ଯଦି ମଣିଷର ଆତ୍ମା ଥିବା ଗ୍ରହଣ କରାଯାଏ ତେବେ ଅନ୍ୟ ପ୍ରାଣୀଙ୍କର ବି ଆତ୍ମା ଥିବ । ପୁନଶ୍ଚ କୌଣସି ପ୍ରାଣୀର ମୃତ୍ୟୁ ଯଦି ଜୀବନର ଅନ୍ତିମ ପରିଣତି ଓ ମୃତ୍ୟୁରେ ବ୍ୟକ୍ତିର ସକଳ ଅସ୍ତିତ୍ୱ ଲୋପପାଏ ତେବେ ଜୀବନର ଅର୍ଥ କଣ ହେବ ? ଏହି ସବୁ ପ୍ରଶ୍ନକୁ ନେଇ ପାଶ୍ଚାତ୍ୟ, ପ୍ରାଚ୍ୟ ଓ ଅନ୍ୟ ସଭ୍ୟତାରେ କେତେ କତେ ତାତ୍ତ୍ୱିକ ବିଚାର ଓ ଅନୁମାନର ଚିତ୍ର ଦେଖିବାକୁ ମିଳେ । ପୃଥିବୀର ପ୍ରତ୍ୟେକ ଧର୍ମୀୟ ପରଂପରାରେ ଆତ୍ମାର ସ୍ଥିତି, ସ୍ୱରୂପ, ଲକ୍ଷ୍ୟ ଓ ମୃତ୍ୟୁପର ପରିଣତି ନେଇ ନାନା ତାତ୍ତ୍ୱିକ, କାଳ୍ପନିକ ଓ ରହସ୍ୟବାଦୀ ବିଶ୍ୱାସ ଦେଖିବାକୁ ମିଳେ । ସେହିପରି ମଣିଷର ମନ ବା ଚେତନାର ସ୍ୱରୂପ କି ପ୍ରକାର ? ମନ ଭୌତିକ, ଅଭୌତିକ ନା ଅନ୍ୟ କିଛି ? ଶରୀର ଓ ମନ ଭିତରେ କଣ ସମ୍ବନ୍ଧ ରହିଛି ? ଶରୀର ଯେପରି ଏକ ସତ୍ତା ମନ ସେପରି ଏକ ସତ୍ତା କି ? ଯଦି ଏହା ଏକ ସତ୍ତା, ଏହାର ଶରୀର ଭିତରେ ସ୍ଥିତି କେଉଁଠି ? ଏହି ସତ୍ତାର ସ୍ୱରୂପକୁ କିପରି ଜାଣିହେବ ? ଧର୍ମମାନଙ୍କରେ ଆତ୍ମାର ନାନା କଳ୍ପନା ଥିବାବେଳେ ମଣିଷ ମନର ସ୍ୱରୂପକୁ ନେଇ ନାନା ଦାର୍ଶନିକ ବିଚାରର ଅବତାରଣା ଦେଖିବାକୁ ମିଳେ । ଶଂସିତ ପ୍ରବନ୍ଧରେ ଆତ୍ମା ଓ ମନର ସ୍ୱରୂପ ବିଷୟରେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀରେ ଥିବା ବିଚାରର ସମ୍ୟକ ଆଲୋଚନାକୁ ଲକ୍ଷ୍ୟ ରଖାଯାଇଛି । ପାର୍ଶୀଧର୍ମ, ଇହୁଦୀ ଧର୍ମ, ଖ୍ରୀଷ୍ଟ ଧର୍ମ ଓ ଇସଲାମ ଧର୍ମ ମୁଖ୍ୟତଃ ପାଶ୍ଚାତ୍ୟ ବା ମଧ୍ୟ-ପ୍ରାଚ୍ୟ ଭୂଖଣ୍ଡରେ ବିକଶିତ ହୋଇଥିଲା । ଏହି ସବୁ ଧର୍ମମାନଙ୍କରେ ଆତ୍ମାର ସ୍ୱରୂପ ନେଇ ପ୍ରାୟତଃ ସାଦୃଶ୍ୟ ପରିଲକ୍ଷିତ ହୁଏ । ତେବେ ଅନ୍ୟ ଧର୍ମର ସୂଚନା ସହ ଖ୍ରୀଷ୍ଟଧର୍ମରେ ଆତ୍ମାର ସ୍ୱରୂପ ବିଷୟରେ ଏଠାରେ ଆଲୋଚନା କରିବାକୁ ଲକ୍ଷ୍ୟ ରଖାଯାଇଛି । ପୁନଶ୍ଚ ମନ ବିଷୟରେ ପାଶ୍ଚାତ୍ୟ ଦର୍ଶନର କେତେକ ମତକୁ ସଂକ୍ଷିପ୍ତ ଆଲୋଚନା କରିବା ଶଂସିତ ପ୍ରବନ୍ଧର ଲକ୍ଷ୍ୟ ଅଟେ ।

ଆତ୍ମା ଯେହେତୁ ଏକ ପର୍ଯ୍ୟବେକ୍ଷଣ ବା ଅନୁଭବ ଆଧାରିତ ଭାବନା ନୁହେଁ ବା କୌଣସି ବୈଜ୍ଞାନିକ ପଦ୍ଧତି ଅବଲମ୍ବନଦ୍ୱାରା ଏହାର ଅସ୍ତିତ୍ୱକୁ ପ୍ରମାଣ କରାଯାଇପାରିବ ନାହିଁ ତେଣୁ ଏହାକୁ ମୁଖ୍ୟତଃ ଏକ ବିଶ୍ୱାସ ବୋଲି ନିଆଯାଏ । ଧର୍ମମାନଙ୍କରେ ଆତ୍ମାର ସ୍ଥିତି, ସ୍ୱରୂପ ଓ ଶେଷ ପରିଣତି ନେଇ ନାନା ମତ ଦେଖିବାକୁ ମିଳେ । ଏହି ବିଶ୍ୱାସର ଉତ୍ସ ନେଇ କେତେକ ଭାବନା ନୃତତ୍ତ୍ୱବିତ୍‌ମାନେ ବ୍ୟକ୍ତ କରିଛନ୍ତି । ସେମାନଙ୍କ ମତରେ ବିଭିନ୍ନ ସଭ୍ୟତାରେ ମୃତ ବ୍ୟକ୍ତିଙ୍କୁ ଯେଉଁ ପରି କବର ଦିଆଯାଉଥିଲା ବା ମୃତ୍ୟୁଜନିତ କର୍ମକାଣ୍ଡ କରାଯାଉଥିଲା ସେଥିରୁ ସେହି ଲୋକମାନଙ୍କର ଆତ୍ମା ବିଷୟକ ଅନୁମାନକୁ କଳ୍ପନା କରାଯାଇପାରେ । ସେହିପରି ମୃତବ୍ୟକ୍ତି ମାନଙ୍କର ସ୍ମୃତିକୁ ମନେପକାଇ ବା ସେମାନଙ୍କୁ ସ୍ୱପ୍ନରେ ଦେଖି ସେମାନଙ୍କର ଆତ୍ମା ବଞ୍ଚି ରହିବାର କଳ୍ପନା ମଣିଷ ମନକୁ ଆସିଥିବା ଅନୁମାନ କରାଯାଏ । କିମ୍ବା ବହୁ ଅତୀତରେ ମଣିଷ ଯେତେବେଳେ ନିଜର ପ୍ରତିବିମ୍ବ ଜଳରେ ବା ସ୍ୱଚ୍ଛ ବସ୍ତୁରେ ଦେଖିଥିବ ସେଥିରୁ ମଧ୍ୟ ତା'ର ଏକ ଆତ୍ମା ଥିବା କଳ୍ପନା ତା ମନକୁ ଆସିଥାଇ ପାରେ ବୋଲି ନୃତତ୍ତ୍ୱବିତ୍‌ମାନେ ମତ ଦେଇଛନ୍ତି । କାଳକ୍ରମେ ଏହି ବିଶ୍ୱାସ ଗଢ଼ିଉଠିଲା ଯେ ପ୍ରତ୍ୟେକ ମଣିଷର ଏକ ଆତ୍ମା ରହିଛି ଯାହା ଶରୀରଠାରୁ ପୃଥକ୍ । ଶରୀର ଜଡ଼ ସତ୍ତା ଅଥଚ ଆତ୍ମା ଏକ ଚେତନ ସତ୍ତା । ଶରୀର ମରଣଶୀଳ ଅଥଚ ଆତ୍ମା ଅମର । ମୋଟ ଉପରେ ଆତ୍ମା ଏକ ଅଶରୀରୀ ଚେତନ ସତ୍ତା ଯାହା ବ୍ୟକ୍ତିର ମୃତ୍ୟୁପରେ ଶରୀରରୁ ପୃଥକ୍ ହୋଇ ରହିପାରେ ।

ପ୍ରାଚୀନ ଲୋକମାନଙ୍କର ଏହି ବିଶ୍ୱାସକୁ ନେଇ ବିଭିନ୍ନ ଧର୍ମମାନଙ୍କରେ ଏ ବିଷୟରେ ନାନା କାଳ୍ପନିକ ବିଚାରମାନ ଗଢ଼ିଉଠିଛି । ନୈତିକତା ଜନିତ କାରଣ, କେତେକ ମନସ୍ତାତ୍ତ୍ୱିକ କାରଣ ବା ସାମାଜିକ ଜୀବନର ବିଶ୍ୱାସକୁ ଆଧାର କରି ଧର୍ମ ମାନଙ୍କରେ ଆତ୍ମା ବିଷୟକ ତାତ୍ତ୍ୱିକ ବିଚାରର ନାନା ଅବତାରଣା ଦେଖିବାକୁ ମିଳେ । ପାର୍ଶୀଧର୍ମ (ଜୋରୋ ଅଷ୍ଟର, ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଏହି ଧର୍ମର ପ୍ରଚାରକ ଓ ଜେଣ୍ଡ ଅବେସ୍ତା ଏହି ଧର୍ମର ମୂଳଗ୍ରନ୍ଥ) ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ଥାଏ, ମୃତ୍ୟୁରେ ଆତ୍ମା ଜୀବ ଦେହରେ ଅଳ୍ପ କେତେ ଦିନ ଅବସ୍ଥାନ କରି ଈଶ୍ୱରଙ୍କ ପାଖକୁ ଯାଏ । ଈଶ୍ୱର ତା'ର କର୍ମକୁ ମୂଲ୍ୟାୟନ କରି ଅଧିକ ସୁକର୍ମ କରିଥିବା ବ୍ୟକ୍ତିର ଆତ୍ମାକୁ ସ୍ୱର୍ଗକୁ ଅଥଚ ଅଧିକ କୁକର୍ମ କରିଥିବା ବ୍ୟକ୍ତିର ଆତ୍ମାକୁ ନରକକୁ ପଠାନ୍ତି । ତେବେ ଏହି ଧର୍ମାନୁଯାୟୀ ସ୍ୱର୍ଗବାସ ବା ନରକବାସ ଅନନ୍ତକାଳ ପାଇଁ ନୁହେଁ । ଏ ଜଗତର ଅବସାନ ହେଲେ ଈଶ୍ୱର ଏକ ନୂତନ ଜଗତ ନିର୍ମାଣ କରିବେ । ସେହି ଜଗତରେ ନରକଗାମୀ ଆତ୍ମାମାନଙ୍କୁ ସେ ପବିତ୍ର କରି ପଠାଇବେ ଓ ସ୍ୱର୍ଗରେ ଥିବା ଆତ୍ମାମାନଙ୍କୁ ମଧ୍ୟ ରଖିବେ ।

ଇହୁଦୀ ଧର୍ମ ବା ଜୁଡାଇଜିମ୍‌ର (ପ୍ରାଚୀନ ହିବ୍ରୁ ଓ ଜିଉମାନଙ୍କର ଧର୍ମ, ମୋଜେସ ଏହାର ମୁଖ୍ୟ ପୈଗମ୍ବର ଓ ଏହାର ଧର୍ମଗ୍ରନ୍ଥ ବାଇବେଲର ଓଲଡ଼ ଟେଷ୍ଟାମେଣ୍ଟ) ବିଶ୍ୱାସାନୁଯାୟୀ ବ୍ୟକ୍ତିର ମୃତ୍ୟୁରେ ତା'ର ଆତ୍ମା କବରରେ ରହେ । ଅନ୍ତିମ ବିଚାର ଦିବସରେ ସବୁ ଆତ୍ମା ଈଶ୍ୱରଙ୍କର ପାଖରେ ଉପସ୍ଥିତ ହେବେ । ଈଶ୍ୱର ଭଲ କାର୍ଯ୍ୟ କରିବା ଆତ୍ମାମାନଙ୍କୁ ଈଶ୍ୱରଙ୍କ ସାନ୍ନିଧରେ ସ୍ୱର୍ଗରେ ରହିବାର ସୁଯୋଗ ଦେବେ ଓ ମନ୍ଦ କାର୍ଯ୍ୟ କରିଥିବା ବ୍ୟକ୍ତିମାନଙ୍କର ଆତ୍ମାର ଅସ୍ତିତ୍ୱ ଲୋପ କରିଦେବେ । ଏହି ଧର୍ମରେ ନରକର ଭାବନା ନାହିଁ ।

ଇସଲାମ (ଆରବ ଭୂଖଣ୍ଡରେ ସପ୍ତମ ଶତାବ୍ଦୀରେ ମହମ୍ମଦଙ୍କ ଦ୍ୱାରା ପ୍ରଚାରିତ ଧର୍ମ ଓ ଏହାର ଧର୍ମଗ୍ରନ୍ଥ କୋରାନ) ମତାନୁଯାୟୀ ମୃତ୍ୟୁରେ ଆତ୍ମା ଶରୀରଠାରୁ ପୃଥକ୍ ହୋଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅବସ୍ଥାନ କରେ । ଜଗତର ଅନ୍ତିମ ଦିବସରେ ବିଚାର ପାଇଁ କବରର ଶରୀର ସହିତ ମିଳିତ ହୋଇ ଆତ୍ମା ଈଶ୍ୱରଙ୍କ ସମ୍ମୁଖକୁ ଆସେ । ଅଧିକ ପୁଣ୍ୟ କରିଥିବା ଲୋକର ଆତ୍ମା ସ୍ୱର୍ଗକୁ ଯାଏ ଓ ଅଧିକ ପାପ କରିଥିବା ଲୋକର ଆତ୍ମା ନରକପ୍ରାପ୍ତ ହୁଏ । ସ୍ୱର୍ଗ ଓ ନରକ ବିଷୟରେ ନାନା ବର୍ଣ୍ଣନା ଇସଲାମ ଧର୍ମରେ ରହିଛି । ନରକ ପ୍ରାପ୍ତ ଆତ୍ମା-ନାନା ଯନ୍ତ୍ରଣା ଓ କଷ୍ଟ ପାଇଥାଏ । ତେବେ ସ୍ୱର୍ଗପ୍ରାପ୍ତି ବା ନରକ ପ୍ରାପ୍ତି ଅନନ୍ତକାଳ ପାଇଁ ହୁଏ ।

ଖ୍ରୀଷ୍ଟଧର୍ମ (ଯୀଶୁ ଇହୁଦୀ ଧର୍ମର ସଂସ୍କାରକ ହେଲେ ବି ତାଙ୍କୁ ପରେ ଖ୍ରୀଷ୍ଟଧର୍ମର ପ୍ରବକ୍ତା ଭାବେ ନିଆଯାଇଛି ଓ ଏହି ଧର୍ମର ମୂଳ ଗ୍ରନ୍ଥ ବାଇବେଲର ନିଉ ଟେଷ୍ଟାମେଣ୍ଟ) ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଏକ ଆତ୍ମା ରହିଛି ଯାହା ଅମର । ଅମର ହେଲେ ବି ଏହା ଈଶ୍ୱରଙ୍କର ନିୟନ୍ତ୍ରଣାଧୀନ । ସକଳ ଆତ୍ମା ବିଚାର ଦିବସରେ ସେମାନଙ୍କର ମୂଲ୍ୟାୟନ ପାଇଁ ଈଶ୍ୱରଙ୍କ ସମ୍ମୁଖକୁ ଶରୀର ଧରି ଆସିବେ । ଈଶ୍ୱର ଧର୍ମପ୍ରାଣ ଓ ଈଶ୍ୱର-ଅନୁଗତ ଆତ୍ମାମାନଙ୍କୁ ଚିରକାଳ ପାଇଁ ସ୍ୱର୍ଗକୁ ଓ ମନ୍ଦ ଆତ୍ମାମାନଙ୍କୁ ସବୁଦିନ ପାଇଁ ନରକକୁ ପଠାଇବେ । ଖ୍ରୀଷ୍ଟଧର୍ମରେ ଆତ୍ମାମାନେ ଅନନ୍ତକାଳ ପାଇଁ ସ୍ୱର୍ଗକୁ ଯା'ନ୍ତି ବା ନରକ ଯନ୍ତ୍ରଣା ପା'ନ୍ତି ବୋଲି ବିଶ୍ୱାସ ରହିଛି ।

ଏହି ସବୁ ଧର୍ମମାନଙ୍କର ଆତ୍ମା ପ୍ରତୀତିରେ ଅନେକ ସାମଂଜସ୍ୟ ରହିଛି । ତେବେ ଏଠାରେ ଗୁରୁତ୍ୱପୂର୍ଣ୍ଣ ପ୍ରସଂଗ ହେଉଛି ଯେ ଏହି ଧର୍ମମାନଙ୍କରେ ପୁନର୍ଜନ୍ମର ଭାବନା ନାହିଁ । ଭାରତ ଭୂଖଣ୍ଡରେ ସୃଷ୍ଟି ହୋଇଥିବା ଧର୍ମମାନେ ଆତ୍ମାର ପୁନର୍ଜନ୍ମରେ ବିଶ୍ୱାସ କରୁଥିଲା ବେଳେ ପାଶ୍ଚାତ୍ୟ ଭୂଖଣ୍ଡରେ ସୃଷ୍ଟି ହୋଇଥିବା ଧର୍ମମାନେ ଆତ୍ମାର ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ । ଖ୍ରୀଷ୍ଟଧର୍ମରେ ଏହାକୁ ସ୍ୱତଃସିଦ୍ଧ ଭାବେ ନିଆଯାଏ ଯେ ବ୍ୟକ୍ତିର ସତ୍ତା ମାତୃଗର୍ଭରେ ବା ଜନ୍ମଠାରୁ ଆରମ୍ଭ ହୁଏ ଓ ମୃତ୍ୟୁରେ ଏହି ଜଗତରେ ଜୀବନର ଅବସାନ ଘଟେ । ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତିର ଥରେ ମାତ୍ର ଜନ୍ମ ହୁଏ । କୌଣସି ଇତର ପ୍ରାଣୀଙ୍କର ଆତ୍ମା ରହିବା ସମ୍ଭବ ନୁହେଁ ।

ତେବେ ଈଶ୍ୱରୀୟ ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତିର ଯଦି ଥରେ ମାତ୍ର ଜନ୍ମ ଓ ମୃତ୍ୟୁ ହୁଏ, ସେ କ୍ଷେତ୍ରରେ ଈଶ୍ୱରଙ୍କର ଅନ୍ୟାୟ ସ୍ପଷ୍ଟ ମନେହୁଏ । ଆମ ସଂସାରରେ ମଣିଷମାନଙ୍କୁ ଏତେ ବୈଷମ୍ୟ ଦେଇ ଈଶ୍ୱର କାହିଁକି ଜନ୍ମ ଦିଅନ୍ତି ? ଆମେ ଅନୁଭୂତିରେ ଦେଖେ ଯେ କେତେକ ବ୍ୟକ୍ତି ଶାରୀରିକ ବିକଳାଙ୍ଗ ହୋଇ ଜନ୍ମ ହୁଅନ୍ତି, ଅନ୍ୟମାନେ ଭଲ ଶରୀର ପାଇଥାନ୍ତି, କେତେକ ଭଲ ଓ ଗୁଣବାନ ବାପା-ମାଙ୍କ ପାଖରେ ଜନ୍ମ ନେବା ବେଳେ ଅନ୍ୟ କେତେକ ଅପରାଧୀ ବା ଦୁଷ୍ଟ ବାପା, ମାଙ୍କ ପାଖରେ ଜନ୍ମ ହୋଇ ଜୀବନ ସାରା କଷ୍ଟ ପା'ନ୍ତି, କେତେକ ବେଶ୍ ବୁଦ୍ଧିମାନ ହୁଅନ୍ତି ଅନ୍ୟମାନେ କମ୍ ବୁଦ୍ଧି ବା ମାନସିକ ଅନଗ୍ରସର ଭାବେ ଜନ୍ମ ହୋଇଥାନ୍ତି । କେତେକ ପିଲାଟିବେଳୁ ପ୍ରାଚୁର୍ଯ୍ୟ ଭିତରେ ବଞ୍ଚନ୍ତି ଅନ୍ୟମାନେ ପ୍ରତିକୂଳ ସ୍ଥିତିରେ ଜନ୍ମ ହୋଇ କଅଁଳ ବୟସରୁ ଜୀବନସାରା ନାନା ଦୁଃଖ ଭିତରେ ଜୀବନ ଅତିବାହିତ କରନ୍ତି । ଥରେ ମାତ୍ର ଜଗତରେ ଜନ୍ମ ନେଉଥିବା ବ୍ୟକ୍ତିମାନଙ୍କ ପ୍ରତି ଈଶ୍ୱରଙ୍କର ଏହି ବୈଷମ୍ୟପୂର୍ଣ୍ଣ ବ୍ୟବସ୍ଥା ଅନ୍ୟାୟ ନୁହେଁ କି ? ପାଶ୍ଚାତ୍ୟ ଧର୍ମମାନଙ୍କର ବିଶ୍ୱାସ ଭିତରେ ଏହାର କୌଣସି ସନ୍ତୋଷଜନକ ଉତ୍ତର ଦେବା ପ୍ରାୟତଃ ସମ୍ଭବ ନୁହେଁ ।

ପାଶ୍ଚାତ୍ୟ ଦର୍ଶନ ପରିପ୍ରେକ୍ଷୀରେ ପିଥାଗୋରାସ, ପ୍ଲେଟୋ ଓ ଆରିଷ୍ଟଟଲ ଆତ୍ମାର ସ୍ଥିତି ସମ୍ପର୍କରେ କେତେକ ମତର ଅବତାରଣା କରିଥିଲେ । ଏହି ଗ୍ରୀକ୍ ଦାର୍ଶନିକ ଗଣ ଆତ୍ମାର କଳ୍ପନାକୁ ନେଇ ସେମାନଙ୍କ ଦର୍ଶନରେ କିଛି ତାତ୍ତ୍ୱିକ ସିଦ୍ଧାନ୍ତ ସହ ଆତ୍ମାକୁ ସଂଶ୍ଳିଷ୍ଟ କରିଥିଲେ । ପିଥାଗୋରାସ (ଖ୍ରୀ.ପୂ ୫୮୦-୫୦୦) ଆତ୍ମାର ଅମରତ୍ୱକୁ ସ୍ୱୀକାର କରି ଆତ୍ମା ଏକ ଶରୀରରୁ ବାହାରି ଅନ୍ୟ ଶରୀରରେ ପ୍ରବେଶ କରିଥାଏ ବୋଲି କଳ୍ପନା କରିଥିଲେ । ଯେଉଁ ଶରୀରରେ ଜୀବନର ସମ୍ଭାବନା ରହିଛି ତାହା ଏକ ଆତ୍ମାର ଅଧିଷ୍ଠାନ ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ଥିଲା । ତେବେ ଶରୀରରୁ ଆତ୍ମା ପୃଥକ୍ ହେବା ଓ ଏକ ଶରୀର ମଧ୍ୟରେ ଅବସ୍ଥାନ କରିବାର ବିଚାର ପାଶ୍ଚାତ୍ୟ ଦର୍ଶନ ସ୍ତରରେ ପ୍ରଥମେ ପିଥାଗୋରାସ କରିଥିଲେ । ତାଙ୍କ ପରେ ପ୍ଲେଟୋ (ଖ୍ରୀ.ପୂ ୪୨୮-୩୪୮) ତାଙ୍କର ତତ୍ତ୍ୱମୀମାଂସୀ ପରିପ୍ରେକ୍ଷୀରେ ଆତ୍ମାର ଅସ୍ତିତ୍ୱକୁ ସ୍ୱୀକାର କରିଥିଲେ । ତାଙ୍କ ମତରେ ଶରୀର ବ୍ୟତୀତ ଆତ୍ମାର ସ୍ଥିତି ରହିପାରିବ । ବରଂ ଶରୀର ଆତ୍ମା ପାଇଁ ଏକ ବନ୍ଧନ ସୃଷ୍ଟି କରିଥାଏ । ଆତ୍ମାର ଆଦର୍ଶ ହେଉଛି ଏକ ଶରୀରବିହୀନ ଅବସ୍ଥା (disembodied existence) । ଜଗତର ବ୍ୟାଖ୍ୟା ପୃଷ୍ଠଭୂମିରେ ପ୍ଲେଟୋ ଶାଶ୍ୱତ ସତ୍ତାମାନଙ୍କର ଯେଉଁ ଆଧିଭୌତିକ ବା ଅତିନ୍ଦ୍ରୀୟ ସ୍ଥିତିର ପରିକଳ୍ପନା କରିଥିଲେ, ସେହି କ୍ଷେତ୍ରରେ ଆତ୍ମା ସକଳ ଶରୀର-ରହିତ ହୋଇ ରହିବେ ବୋଲି ଭାବିଥିଲେ । ଆତ୍ମାର ଅମରତ୍ୱ ନେଇ ପ୍ଲେଟୋ ଭାବିଥିଲେ ଯେ ବସ୍ତୁ ଜଗତର ପ୍ରତ୍ୟେକ ପଦାର୍ଥ ଅବୟବ ଯୁକ୍ତ ବା ବହୁ ଅଣୁବିଶିଷ୍ଟ । ଯାହା ଅବୟବଯୁକ୍ତ ତାହାର ବିନାଶ ଅବଶ୍ୟମ୍ଭାବୀ । ଅବୟବଯୁକ୍ତ ବସ୍ତୁ ବିଭାଜ୍ୟ ଓ ଯାହା ବିଭାଜ୍ୟ ତାହା ଧ୍ୱଂସ ସାପେକ୍ଷ । ପରନ୍ତୁ ଆତ୍ମା ଅବୟବରହିତ, ସରଳ ଓ ଏକ ଅଣୁବିଶିଷ୍ଟ, ସୁତରାଂ ଏହାର ବିନାଶ ସମ୍ଭବ ନୁହେଁ । ଏହି ଦୃଷ୍ଟିରୁ ଆତ୍ମା ଅବିଭାଜ୍ୟ, ଶାଶ୍ୱତ ଓ ଅମର । ପ୍ଲେଟୋଙ୍କ ପରେ ଆରିଷ୍ଟଟଲ (ଖ୍ରୀ.ପୂ ୩୮୪-୩୨୨) ପ୍ଲେଟୋଙ୍କ ବିଚାରର ଏକ ବିପରୀତ ସିଦ୍ଧାନ୍ତ ଅବତାରଣା କରିଥିଲେ । ଆରିଷ୍ଟଟଲ ଜଗତର ବ୍ୟାଖ୍ୟା ପୃଷ୍ଠଭୂମିରେ ଯେଉଁ ତାତ୍ତ୍ୱିକ ସିଦ୍ଧାନ୍ତର ଅବତାରଣା କରିଥିଲେ ଓ ଯାହା ଅଧିକ ଯୁକ୍ତିସଂଗତ ଥିଲା ସେଥିରେ ଆତ୍ମାର ଶରୀର ବାହାରେ କୌଣସି ସ୍ଥିତିକୁ ଅସମ୍ଭବ ମନେ କରାଯାଉଥିଲା । ପ୍ରତ୍ୟେକ ବସ୍ତୁର ଆକାର (ସେ ଆକାର ବା ଫର୍ମକୁ ଏକ ବୈଷୟିକ ଅର୍ଥରେ ବ୍ୟବହାର କରିଛନ୍ତି) ବସ୍ତୁର ମହତ୍ତ୍ୱ ବା ସାରତତ୍ତ୍ୱ ଅଟେ । ସେହିପରି ଶରୀରର ସାରତତ୍ତ୍ୱ ହେଉଛି ଆତ୍ମା, ତେବେ ଶରୀର ବାହାରେ ଆତ୍ମାର ସ୍ଥିତି ଅସମ୍ଭବ ମନେହୁଏ । ଏହି ସବୁ ମତ ପରସ୍ପର ବିରୋଧୀ ହେଲେ ମଧ୍ୟ ଦର୍ଶନ ସ୍ତରରେ ଆତ୍ମାର ଅସ୍ତିତ୍ୱ ଏହି ସବୁ ବିଚାରକୁ ନେଇ ପୁଷ୍ଟ ହୋଇଛି । ଏହି ସବୁ ଭାବନାରୁ ଆତ୍ମା ସରଳ, ଅଯୌଗିକ, ବ୍ୟକ୍ତି ସତ୍ତା ବିଶିଷ୍ଟ ଓ ଏକ ଦ୍ରବ୍ୟ ପରି ସିଦ୍ଧାନ୍ତମାନ ସୃଷ୍ଟି ହୋଇଛି । ସେହିପରି ଆତ୍ମାର ଅସ୍ତିତ୍ୱ ଅପରୋକ୍ଷ ଓ ଏହା ଅବିନାଶୀ ବୋଲି ଭାବନା ମଧ୍ୟ ଆସିଛି ।

ଏହି ସବୁ ଭାବନା ବିରୁଦ୍ଧରେ ବଳିଷ୍ଠ ଯୁକ୍ତି ମଧ୍ୟ ଦର୍ଶନ କ୍ଷେତ୍ରରେ ସୃଷ୍ଟି ହୋଇଛି । ବିଶିଷ୍ଟ ଅନୁଭବବାଦୀ ଦାର୍ଶନିକ ହ୍ୟୁମ (୧୭୧୧-୧୭୭୬) ଓ ସମୀକ୍ଷଣବାଦୀ ଦାର୍ଶନିକ କାଣ୍ଟ (୧୭୨୪-୧୮୦୪) ଆତ୍ମା ସଂପର୍କୀୟ ସକଳ ବିଚାରର ଅସାରତା ଓ ଅବୈଧତା ଦର୍ଶାଇଛନ୍ତି । ଅନୁଭବ ନିରପେକ୍ଷ ଆଧାରରେ କୌଣସି ବସ୍ତୁ ବା ସତ୍ତାର ଅସ୍ତିତ୍ୱକୁ ପ୍ରମାଣ କରିବାର ଉଦ୍ୟମ ତର୍କାଭାସ ସୃଷ୍ଟି କରିଥାଏ । କେବଳ କେତେକ ଯୁକ୍ତିଦ୍ୱାରା ଆତ୍ମା ସଂପର୍କରେ ଗ୍ରହଣ କରାଯାଉଥିବା ସିଦ୍ଧାନ୍ତ ପଶ୍ଚାତରେ ପ୍ରମାଣଗତ ଭିତ୍ତି ନାହିଁ । ଗମ୍ଭୀର ଯୁକ୍ତିର ଆଶ୍ରୟ ନେଇ ଆତ୍ମା ବିଷୟକ ସକଳ ତର୍କକୁ କାଣ୍ଟ୍ ଅବୈଧ ବା ତର୍କାଭାସ ବୋଲି ସୁଚିନ୍ତିତ ଭାବେ ଦର୍ଶାଇଛନ୍ତି । କାଣ୍ଟ୍‌ଙ୍କ ପୂର୍ବରୁ ହ୍ୟୁମ୍ ଆମର ସଚେତନ ଅସ୍ତିତ୍ୱ

ବିଷୟରେ ଆମେ ଯେଉଁ ଅନୁଭବ ଲାଭ କରୁ ତାହା ଆତ୍ମାର ଦ୍ରବ୍ୟତ୍ୱ ବା ସରଳତାର ପ୍ରତ୍ୟକ୍ଷ ନୁହେଁ ବୋଲି ଦର୍ଶାଇଥିଲେ । ଆମର ଚେତନାରୁ ଆତ୍ମାର ତାତ୍ତ୍ୱିକ, ସ୍ୱରୂପଗତ ସରଳତାକୁ ପ୍ରମାଣ କରିବା ତର୍କଦୃଷ୍ଟିରୁ ଅବୈଧ ଓ ଅସିଦ୍ଧ ବୋଲି ହ୍ୟୁମ୍ ମଧ ଦର୍ଶାଇଥିଲେ । ମୋଟ ଉପରେ କହିଲେ ଆତ୍ମା ସରଳ, ଅବିନାଶୀ ଓ ଏକ ଦ୍ରବ୍ୟସତ୍ତା ଏହି ଭାବନାକୁ ହ୍ୟୁମ୍ ଓ କାଣ୍ଟ ଆଧାରହୀନ ବୋଲି ଗମ୍ଭୀର ଯୁକ୍ତି ସାହାଯ୍ୟରେ ଦର୍ଶାଇଛନ୍ତି । ସୁତରାଂ ଧାର୍ମିକ ବିଶ୍ୱାସରେ ଆତ୍ମାଯେପରି ଏକ ବିଶ୍ୱାସ, ଦର୍ଶନଶାସ୍ତ୍ରରେ ମଧ ଏହା ଏକ ଯୁକ୍ତିରହିତ ବା ତର୍କାଭାସ ଜନିତ ତାତ୍ତ୍ୱିକ କଳ୍ପନା । ଏହି ବିଶ୍ୱାସ ବା କଳ୍ପନା ପଶ୍ଚାତରେ କୌଣସି ଅନୁଭବଗତ, ବସ୍ତୁନିଷ୍ଠ, ବିଜ୍ଞାନସମ୍ମତ ବା ଯୁକ୍ତିଗତ କାରଣ ନାହିଁ ।

ପାଶ୍ଚାତ୍ୟ ଧର୍ମ ଓ ଦର୍ଶନରେ ଆତ୍ମା ଅମର ବୋଲି ପରିକଳ୍ପନା ଥିଲେ ବି ପୁନର୍ଜନ୍ମର ଭାବନା ନାହିଁ । ଖ୍ରୀଷ୍ଟଧର୍ମରେ ମୃତ୍ୟୁଦ୍ୱାରା ବ୍ୟକ୍ତିସତ୍ତାର ଅବସାନ ହୁଏ ନାହିଁ ବୋଲି ବିଶ୍ୱାସ ଥିବା ପୂର୍ବରୁ ଦର୍ଶାଯାଇଛି । ଈଶ୍ୱରଙ୍କ ବିଚାର ଦିବସ ପର୍ଯ୍ୟନ୍ତ ଆତ୍ମାମାନେ ମୃତବ୍ୟକ୍ତିର କବରରେ ରହିବେ ଓ ବିଚାରପରେ ସେମାନେ ସ୍ୱର୍ଗ ବା ନରକକୁ ଯିବେ । ତେବେ ବିଚାର ଦିନରେ ଶରୀରର ପୁନରୁତ୍ଥାନ ହେବ ଓ ଆତ୍ମାମାନେ ନୂତନ ଶରୀର ପୁଣି ଫେରିପାଇବେ । ଏଠାରେ ପ୍ଲେଟୋଙ୍କର ଦାର୍ଶନିକ ତତ୍ତ୍ୱ ଓ ଖ୍ରୀଷ୍ଟୀୟ ଧର୍ମୀୟ ତତ୍ତ୍ୱ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଧର୍ମୀୟ ମତରେ ଯେଉଁ ପୁନରୁତ୍ଥାନର ପରିକଳ୍ପନା ରହିଛି ସେଥିରେ ଈଶ୍ୱରଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିବା ଦେଖାଯାଏ । ସୁତରାଂ ଧର୍ମୀୟ ବିଶ୍ୱାସ ଅନୁସାରେ ଈଶ୍ୱରଙ୍କ ଉପରେ ଲୟ ଓ ମୃତ୍ୟୁ ସମୟରେ ତାଙ୍କ ଉପରେ ଅଗାଧ ବିଶ୍ୱାସ ରଖିବାଦ୍ୱାରା ଦିବ୍ୟ ଆଶୀର୍ବାଦରୁ ବିଚାର ଦିବସରେ ଆତ୍ମାକୁ ପୁନର୍ଜୀବନ ମିଳେ । ପୁନର୍ଜନ୍ମର ଭାବନା ନ ଥିବାରୁ ମୃତ୍ୟୁକୁ ଭୟାନକ ଓ ବିପଦସଂକୁଳ ବୋଲି ମନେ କରାଯାଏ । ଦାର୍ଶନିକ ସିଦ୍ଧାନ୍ତରେ ଆତ୍ମାର ଅମରତ୍ୱର ଭାବନା ଥିଲେ ମଧ ପୁନରୁତ୍ଥାନର ପରିକଳ୍ପନା ନାହିଁ, କିନ୍ତୁ ଧର୍ମୀୟ ବିଶ୍ୱାସରେ ପୁନରୁତ୍ଥାନ, ପାପପୁଣ୍ୟର ବିଚାର ଦିବସ, ସ୍ୱର୍ଗ, ନର୍କ ଆଦିର ପରିକଳ୍ପନା ରହିଛି ।

ଖ୍ରୀଷ୍ଟୀୟ ବିଶ୍ୱାସରେ ଥିବା ମୃତବ୍ୟକ୍ତିର ପୁନରୁତ୍ଥାନର ତାତ୍ପର୍ଯ୍ୟ କଣ ? ଯୀଶୁଖ୍ରୀଷ୍ଟ ମୃତ୍ୟୁର କିଛି ଦିନ ପରେ ଯେପରି ସଶରୀରେ ଭକ୍ତମାନଙ୍କୁ ଦର୍ଶନ ଦେଇ ଧର୍ମର ବାଣୀ ଶୁଣାଇଥିଲେ ବୋଲି ବିଶ୍ୱାସ ରହିଛି ସେହି ଆଧାରରେ ପ୍ରତ୍ୟେକ ବ୍ୟକ୍ତିର ପୁନରୁତ୍ଥାନର ପରିକଳ୍ପନା କରାଯାଇ ପାରିବ କି ? ତେବେ ମୃତ ବ୍ୟକ୍ତିମାନେ ଈଶ୍ୱରଙ୍କ ବିଚାର ଦିବସରେ ସାଧାରଣ ଶରୀର ନୁହେଁ ବରଂ ଏକ ଆଧାତ୍ମିକ ଶରୀର ପାଇବେ । ସଂସାରରେ ଆମର ଏକ ଭୌତିକ ଶରୀର ଥିବାଭଳି ପୁନରୁତ୍ଥାନ ଯୋଗୁଁ ଏକ ଭିନ୍ନ ରୂପରେ ଆତ୍ମାମାନେ ଆବିର୍ଭୂତ ହେବେ । ଯୀଶୁ ଯେପରି ସ୍ୱଶରୀର ନେଇ ସାକ୍ଷାତ ଦେଇଥିଲେ ମୃତ ବ୍ୟକ୍ତିମାନେ ସେପରି ନିଜର ମୂଳ ଶରୀର ପାଇବେ ନାହିଁ ବରଂ ଏକ ଭିନ୍ନ ଜଗତରେ ଭିନ୍ନ ରୂପରେ ଆବିର୍ଭୂତ ହେବେ ।

ତେବେ ଏଠାରେ ଏକ ଜଟିଳ ସମସ୍ୟା ପ୍ରତି ଦାର୍ଶନିକ ମାନେ ଦୃଷ୍ଟି ଆକର୍ଷଣ କରୁଛନ୍ତି । ନିଜସ୍ୱ ଶରୀର ଅଭାବରେ ବ୍ୟକ୍ତିର ତାଦାତ୍ମ୍ୟ କିପରି ସମ୍ଭବ ? ବୈୟକ୍ତିକ ତାଦାତ୍ମ୍ୟ (Personal identity) ଏ କ୍ଷେତ୍ରରେ ଏକ ଜଟିଳ ସମସ୍ୟା । ଜଣେ ବ୍ୟକ୍ତିଙ୍କୁ ସେହି ବ୍ୟକ୍ତି ବୋଲି ଚିହ୍ନିତ କରିବାର ମାନଦଣ୍ଡ ହେଉଛି ତାଙ୍କର ଶାରୀରିକ ଅବିଚ୍ଛିନ୍ନ ଅସ୍ତିତ୍ୱ । ଶରୀରରେ ପରିବର୍ତ୍ତନ ହେଉଥିଲେ ବି ଜଣେ ବ୍ୟକ୍ତି ଜନ୍ମ ପରଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଶରୀରକୁ ଅବିଚ୍ଛିନ୍ନ ଭାବେ ଗ୍ରହଣ କରି ରହିଥାଏ । ଶରୀରରେ ଅନେକ ପରିବର୍ତ୍ତନ ବୟସ ବୃଦ୍ଧି ସହିତ ବା ଜନ୍ମ ପରଠାରୁ ଧୀରେ ଧୀରେ ସଂଘଟିତ

ହେଉଥିଲେ ମଧ୍ୟ ସେହି ଏକ ଶରୀର ବ୍ୟକ୍ତି ସହ ଅବିଚ୍ଛିନ୍ନ ଭାବେ ରହିଥାଏ । ତେବେ ଶାରୀରିକ ଅବିଚ୍ଛିନ୍ନତା ନଥିଲେ ଜଣେ ବ୍ୟକ୍ତିର ମୃତ୍ୟୁ ପରେ ଯେତେବେଳେ ତା'ର ପୁନରୁତ୍ଥାନ ହେବ ସେ କ୍ଷେତ୍ରରେ ବିନା ଶରୀରରେ ତାହାର ବ୍ୟକ୍ତି ସ୍ଥିତି ବା ତାଦାତ୍ମ୍ୟକୁ କିପରି ସ୍ଥିର କରାଯିବ ? ଯଦି ବି ଏକ ଆଧ୍ୟାତ୍ମିକ ଜଗତ ବା ସ୍ୱର୍ଗର ପରିକଳ୍ପନା କରାଯାଏ, ତେବେ ସେହି ଜଗତରେ ଶରୀର ଅଭାବରେ ବ୍ୟକ୍ତି ସତ୍ତାର ତାଦାତ୍ମ୍ୟ କିପରି ଚିହ୍ନଟ କରାଯାଇ ପାରିବ ? ଶରୀରରହିତ ଆତ୍ମାର ଚିନ୍ତା, ଅନୁଭବ, ସ୍ମୃତି ଇତ୍ୟାଦି କ୍ରିୟା ରହିବ କି ଓ ଯଦି ରହେ ତାହା କିପରି ରହିବ ? ଶରୀର ବା ମସ୍ତିଷ୍କ ନଥାଇ ମାନସିକ କ୍ରିୟାକୁ କିପରି କଳ୍ପନା କରାଯିବ ? ଯେଉଁମାନେ ଶରୀରବିହୀନ ଆତ୍ମାର ପରିକଳ୍ପନା କରନ୍ତି ସେମାନେ ଏସବୁର କୌଣସି ସନ୍ତୋଷଜନକ ଉତ୍ତର ଦେଇପାରନ୍ତି ନାହିଁ । ସୁତରାଂ ଆତ୍ମା ଯାହା ସ୍ୱରୂପରେ ଶରୀରବିହୀନ ଚେତନା ମାତ୍ର, ତାହାର ସ୍ଥିତି ଓ ତାଦାତ୍ମ୍ୟକୁ କିପରି ଚିହ୍ନଟ କରାଯିବ ଏକ ଗୁରୁତର ସମସ୍ୟା ଭାବେ ଆସିବ । ମୃତ୍ୟୁ ପରେ ଆତ୍ମାର ପୁନର୍ଜୀବନ ଓ ପୁନରୁତ୍ଥାନ କ୍ଷେତ୍ରରେ ଏହି ବୈୟକ୍ତିକ ତାଦାତ୍ମ୍ୟ ଏକ ଜଟିଳ ସମସ୍ୟା ଭାବେ ଦେଖାଯିବ ।

ବସ୍ତୁତଃ ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ଆତ୍ମା ସଂପର୍କରେ ଯେଉଁ ସବୁ ପରିକଳ୍ପନା ଖ୍ରୀଷ୍ଟୀୟ ମାନସରେ ରହିଛି ସେ ସବୁର କୌଣସି ଅନୁଭବ ଜନିତ ବା ତର୍କସମ୍ମତ ଭିତ୍ତିନାହିଁ । ଏସବୁ ସେହି ଅତୀତର କେତେକ ବିଶ୍ୱାସ ମାତ୍ର, ଧର୍ମୀୟ ମାନସିକତାରେ ଈଶ୍ୱର, ଈଶ୍ୱରପୁତ୍ର, ଈଶ୍ୱରଙ୍କ ସୃଷ୍ଟି ପ୍ରକ୍ରିୟା, ପୁନରୁତ୍ଥାନ, ପାପ-ପୁଣ୍ୟ, ବିଚାର ଦିବସ ଯେପରି ଗୁଡ଼ିଏ ବିଶ୍ୱାସ, ଆତ୍ମା, ଆତ୍ମାର ଅମରତ୍ୱ, ଆତ୍ମାର ସ୍ୱର୍ଗ ବା ନରକ ଗତି ମଧ୍ୟ କେବଳ ଗୁଡ଼ିଏ କାଳ୍ପନିକ ବିଶ୍ୱାସ । ଏହି ବିଶ୍ୱାସ ସକଳର ଯେ କୌଣସି ବସ୍ତୁନିଷ୍ଠ ଆଧାର ନାହିଁ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

(୨)

ଆତ୍ମା ସହ ଧାର୍ମିକ ବିଶ୍ୱାସ ସକଳ ସଂଶ୍ଳିଷ୍ଟ ହେବା ଓ ଆତ୍ମାକୁ ଅବିନାଶୀ ବୋଲି ଭାବିବା ପୃଷ୍ଠଭୂମିରେ ଆତ୍ମା ପରିବର୍ତ୍ତେ ମନ ପ୍ରତ୍ୟୟର ବହୁଳ ପ୍ରୟୋଗ ମନୋଦର୍ଶନ, ମନୋବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ହେବା ଦେଖାଯାଏ । ମନର ସ୍ୱରୂପ ଓ ବ୍ୟାଖ୍ୟା ସଂପର୍କରେ ଦର୍ଶନ, ମନୋବିଜ୍ଞାନ, ଚିକିତ୍ସା ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ବିସ୍ତୃତ ସାହିତ୍ୟ ରହିବା ଜଣାଯାଏ । ତେବେ ଏଠାରେ ଏ ସବୁର ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । ବରଂ ମନ ସଂପର୍କରେ ରହିଥିବା କେତେକ ଭ୍ରମାତ୍ମକ ଭାବନା କିପରି ଜଟିଳ ସମସ୍ୟା ଓ ବୈଚାରିକ ଅସ୍ପଷ୍ଟତା ସୃଷ୍ଟି କରିଛି ତାହାର ସମ୍ୟକ ସୂଚନା ଦେବା ଆମର ଲକ୍ଷ୍ୟ ଅଟେ । ପାଶ୍ଚାତ୍ୟ ଦର୍ଶନ ପରିପ୍ରେକ୍ଷୀରେ ଦାର୍ଶନିକ ଦେକାର୍ତ (୧୫୯୬-୧୬୫୦, ତାଙ୍କୁ ଆଧୁନିକ ଦର୍ଶନର ଜନକ ବୋଲି ନିଆଯାଏ) ଙ୍କର ମନ ସଂପର୍କୀୟ ବ୍ୟାଖ୍ୟା ଗୋଟିଏ ସମୟରେ ଏକ ଆପ୍ତବଚନ ଭାବେ ଗୃହୀତ ହେଉଥିଲା । ତାଙ୍କ ମତର ଏକ ସୁଦୂରପ୍ରସାରୀ ପ୍ରଭାବ ଧର୍ମ, ଦର୍ଶନ, ବିଜ୍ଞାନ ଉପରେ ପଡିଥିଲା । ତେବେ ଦେକାର୍ତଙ୍କର ବିଚାର ଏକ ଭ୍ରମାତ୍ମକ ବିଶ୍ୱାସ ଉପରେ ଯେ ଆଧାରିତ ଥିଲା ତାହା ବିଂଶ ଶତାବ୍ଦୀର ମନୋଦର୍ଶନ ଜନିତ ଚର୍ଚ୍ଚାରୁ ସ୍ପଷ୍ଟ ହୋଇଥିଲା । ଦେକାର୍ତଙ୍କର ସମସାମୟିକ ଦୁନିଆରେ ଗାଲିଲିଓ (୧୫୬୪-୧୬୪୨) ବିଶ୍ୱର ଏକ ବୈଜ୍ଞାନିକ ବ୍ୟାଖ୍ୟା ଦେଇଥିଲେ ଯାହା ସେ ଯୁଗରେ ଏକ କ୍ରାନ୍ତିକାରୀ ବିଚାର ଥିଲା । ପ୍ରକୃତିରେ ଥିବା ପ୍ରତ୍ୟେକ ଘଟଣା ବା ବସ୍ତୁର କେବଳ ପ୍ରାକୃତିକ ବ୍ୟାଖ୍ୟା ସମ୍ଭବ; କୌଣସି ପ୍ରାକୃତିକ ବସ୍ତୁ ବା ଘଟଣାର ଅତିପ୍ରାକୃତିକ ବ୍ୟାଖ୍ୟା (Supernatural explanation) ସମ୍ଭବ ନୁହେଁ । 'ବସ୍ତୁ ଓ ଶକ୍ତି ଜଗତର ମୂଳ ତତ୍ତ୍ୱ' ବୋଲି ଯେଉଁ ବିଚାର ବିଜ୍ଞାନରେ ଗୃହୀତ ହେଲା, ତା'ର

ପ୍ରଭାବରେ ଭୌତିକବାଦ, ପ୍ରକୃତିବାଦ ବା ଜଡବାଦ ଇତ୍ୟାଦି ବିଚାର ଭାବନା କ୍ଷେତ୍ରରେ ତୁମୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ପରିପ୍ରେକ୍ଷୀରେ ଦେକାର୍ତ ଚେତନା ବା ମନର ପ୍ରାଧାନ୍ୟକୁ ପ୍ରତିଷ୍ଠା କରିବାକୁ ପ୍ରୟାସ କଲେ । ସେ ଦ୍ବୁଇ ତତ୍ତ୍ବର ଭାବନା ଦେଲେ । ତାଙ୍କ ମତରେ ଶରୀର ଓ ମନ ଦୁଇଟି ପୃଥକ୍ ତତ୍ତ୍ୱ ଓ ସତ୍ତା । ସେମାନେ ପରସ୍ପରର ବିପରୀତ । ଶରୀର ହେଉଛି ଜଡ଼ ଓ ଏହାର ମୌଳିକ ଲକ୍ଷଣ ହେଉଛି ବିସ୍ତୃତି । ଅର୍ଥାତ୍ ଭୌତିକ ବସ୍ତୁର ମୌଳିକ ଗୁଣ ହେଉଛି ବିସ୍ତୃତି ଓ ଏହା ଯାନ୍ତ୍ରିକ ବା ପ୍ରାକୃତିକ ନିୟମଦ୍ୱାରା ନିୟନ୍ତ୍ରିତ । କିନ୍ତୁ ମନ ହେଉଛି ଏକ ଆଧାତ୍ମିକ ସତ୍ତା ଓ ଏହାର ମୌଳିକ ଲକ୍ଷଣ ହେଉଛି ଚେତନା । ଯାହା ଚେତନଯୁକ୍ତ ତାହାର ବିସ୍ତୃତି ନାହିଁ, ଯାହାର ବିସ୍ତୃତି ଅଛି ତାହା ଅଚେତନ । ସୁତରାଂ ଦେହ ଓ ମନ ସ୍ୱରୂପରେ ଦୁଇଟି ପୃଥକ୍ ସତ୍ତା ଓ ତତ୍ତ୍ୱ । ଏଠାରେ ପ୍ରଶ୍ନ ହେବ ଯଦି ମଣିଷ ଦୁଇଟି ବିପରୀତ ସତ୍ତାର ସଂଯୋଗ, ତେବେ ସେହି ଦୁଇ ସତ୍ତା ମଧ୍ୟରେ କ'ଣ ସଂବଂଧ ରହିଛି ? ଦେକାର୍ତ ମନ ଓ ଶରୀର ମଧ୍ୟରେ ସଂପର୍କକୁ ବ୍ୟାଖ୍ୟା କରିବା ପାଇଁ ଯେଉଁ ସିଦ୍ଧାନ୍ତର ଅବତାରଣା କଲେ ତାହା ହେଲା ଅନ୍ୟୋନ୍ୟ କ୍ରିୟାବାଦ (Interactionism) । ଏହି ମତାନୁଯାୟୀ ଦେହ ଓ ମନର ସଂଯୋଗ ଶରୀରରେ ଅବସ୍ଥିତ ଏକ ଅଦୃଶ୍ୟ ଗ୍ରନ୍ଥିଦ୍ୱାରା ସମ୍ଭବ ହେଉଛି । ମନ ଓ ଶରୀରର ସଂଯୋଗ ନେଇ ଦେକାର୍ତଙ୍କ ପରେ ଅନ୍ୟ କେତେକ ମତ ଯଥା ମନଦୈହିକ ସମାନ୍ତରବାଦ, ପ୍ରାଗବ୍ୟବସ୍ଥିତ ସଂହତିବାଦ, ଶରୀର ବିକାରଭୂତ ମନୋମୀମାଂସାବାଦ ପରି ନାନା ସିଦ୍ଧାନ୍ତର ବିକାଶ ହେଲା ।

ଦେକାର୍ତଙ୍କ ମତର ପରିଣାମ ହେଲା ଯେ ମଣିଷ ଦୁଇଟି ପୃଥକ୍ ସତ୍ତାର ଅଧିକାରୀ ବା ଦୁଇଟି ପୃଥକ୍ ରାଜ୍ୟର ଅଧିବାସୀ ଯଥା ଦୈହିକ ରାଜ୍ୟ ଓ ଆଧାତ୍ମିକ ରାଜ୍ୟ । ଫଳତଃ ମଣିଷ କେବଳ ନିଜର ମନ ବିଷୟରେ ଜାଣିପାରିବ, କିନ୍ତୁ ଅନ୍ୟର ମନକୁ ଜାଣିବାର ଅବକାଶ ନାହିଁ । ଅନ୍ୟର ବ୍ୟବହାରକୁ ଦେଖି ଅନ୍ୟର ମନର ଅବସ୍ଥା ବିଷୟରେ ଜଣେ ଯାହା ଅନୁମାନ କରିବ, କାରଣ ଅନ୍ୟର ନିଭୃତ ମନକୁ ଜାଣିବାର ଅନ୍ୟ କିଛି ଉପାୟ ହିଁ ନାହିଁ । ସେହିପରି ଚିନ୍ତା କରିବା, ଭାବିବା, କଳ୍ପନା କରିବା, ଆଶା କରିବା ଇତ୍ୟାଦି ହେଉଛି ମାନସିକ ପ୍ରକ୍ରିୟା ଓ ଏସବୁ ଗୋପନୀୟ । ସକଳ ବୁଦ୍ଧିମାନ କାର୍ଯ୍ୟ ଅଦୃଶ୍ୟ ମାନସିକ ପ୍ରକ୍ରିୟାର ଫଳ । ମଣିଷ ମୁଣ୍ଡ ଭିତରେ ମନ ଏକ ନିଭୃତ ଓ ଗୋପନୀୟ ସତ୍ତା ଓ ସକଳ ମାନସିକ କ୍ରିୟା ମୁଣ୍ଡ ଭିତରେ ନିଭୃତରେ ପ୍ରବାହିତ ହେଉଥିବା ମାନସିକ ସ୍ରୋତ । ଏହି ମତକୁ ଗ୍ରହଣ କଲେ ପ୍ରତ୍ୟେକ ବ୍ୟକ୍ତି କେବଳ ନିଜର ମନକୁ ଜାଣିବାକୁ ସମର୍ଥ, ଅନ୍ୟର ମନ ବିଷୟରେ କୌଣସି କିଛି ଜାଣିବା ସମ୍ଭବ ନୁହେଁ, କାରଣ ଅନ୍ୟର ମୁଣ୍ଡରେ ପ୍ରବାହିତ ମାନସିକ ସ୍ରୋତକୁ ନିରୀକ୍ଷଣ କରିବା କୌଣସି ଭାବେ ସମ୍ଭବ ନୁହେଁ ।

ପ୍ରକୃତିବାଦ ଜନିତ ଭୌତିକବାଦକୁ ପ୍ରତିହତ କରିବାକୁ ଯାଇ ଦେକାର୍ତ ଶରୀର ଓ ମନକୁ ନେଇ ଯେଉଁ ଦ୍ୱୈତବାଦର ଅବତାରଣା କଲେ ତାହା ବହୁ ସ୍ତରରେ ବିଚାର ବିଭ୍ରାଟ ସୃଷ୍ଟିକଲା । ଦେହ ଓ ମନ ଯଦି ଦୁଇଟି ବିପରୀତ ସତ୍ତା, ତେବେ ସେମାନଙ୍କ ଭିତରେ କୌଣସି ସମ୍ବନ୍ଧ ରହିବ ନାହିଁ । କିନ୍ତୁ ବାସ୍ତବ ଅନୁଭୂତିରୁ ଏହା ଜଣାଯାଏ ଯେ ଦେହ ଓ ମନ ଭିତରେ ନିବିଡ ସଂବନ୍ଧ ରହିଛି । ଦେହ ଅସୁସ୍ଥ ହେଲେ ମନ ଭଲ ରହେ ନାହିଁ ଓ ମନର ଅବସ୍ଥା ଭଲ ନ ରହିଲେ ଦେହ ମଧ୍ୟ ଖରାପ ହୁଏ । ପୁନଶ୍ଚ ଏହି ବିଶ୍ୱାସାନୁଯାୟୀ ମନ ଯେହେତୁ ଏକ ସ୍ୱତନ୍ତ୍ର ସତ୍ତା, ମନ ବିଷୟରେ ଜ୍ଞାନ ଲାଭ କରିବାକୁ ହେଲେ ଅନ୍ତର୍ଚକ୍ଷୁ ଆବଶ୍ୟକ । ସେହିପରି ମନୋବିଜ୍ଞାନ ଅଦୃଶ୍ୟମାନ ମନ ଉପରେ ଅଧ୍ୟୟନ କରିବ ବୋଲି ଭାବନା ମଧ୍ୟ ସୃଷ୍ଟି ହେଇଥିଲା । ମନ ଯେ ଏକ ଗୋପନୀୟ ଅଦୃଶ୍ୟମାନ ସତ୍ତା ଏହି ଭାବନା ନାନା ବୈଚାରିକ ଜଟିଳତା ସୃଷ୍ଟି କରିବାକୁ ଲାଗିଲା । ମୋଟ ଉପରେ କହିବାକୁ ଗଲେ ମଣିଷର ମନ ଏକ ସତ୍ତା, କିନ୍ତୁ ଏହା ପ୍ରାକୃତିକ ବସ୍ତୁ ପରି ନୁହେଁ । ଦେହ ଯେପରି ଯାନ୍ତ୍ରିକ ନିୟମର ଅଧୀନ, ମନ ସେପରି ବାହ୍ୟିକ, ଯାନ୍ତ୍ରିକ ବା ପ୍ରାକୃତିକ ନିୟମର ଅଧୀନ ନୁହେଁ ।

ଦେକାର୍ତଙ୍କର ଏହି ବିଚାର ଧର୍ମ, ମନସ୍ତତ୍ତ୍ୱ, ଦର୍ଶନ ସବୁରି ସ୍ତରରେ ଏକ ଉଲ୍ଲେଖନୀୟ ବିଚାର ଭାବେ ଗୃହୀତ ହୋଇ ଯାଇଥିଲା ।

ବିଂଶ ଶତାବ୍ଦୀ ଆରମ୍ଭରେ ଦର୍ଶନ ରାଜ୍ୟରେ ଏକ ବିରାଟ ପରିବର୍ତ୍ତନର ସୂତ୍ରପାତ ହେଲା । ଦର୍ଶନର ଇତିହାସରେ ଭାଷା ଓ ପ୍ରତ୍ୟୟ ବିଶ୍ଳେଷଣ ଏକ ଯୁଗାନ୍ତକାରୀ ଆଲୋଡ଼ନ ଥିଲା ଓ ଏହାର ଫଳ ସ୍ୱରୂପ ତାତ୍ତ୍ୱିକ ବିଚାରର ଅନେକ ସୌଧ ଭୁଷୁଡି ପଡିବାକୁ ଲାଗିଲା । ଏହି କ୍ଷେତ୍ରରେ ଉଇଟଗେନ୍‌ଷ୍ଟାଇନ୍, ବର୍ଟ୍ରାଣ୍ଡ ରସେଲ, ଜି.ଇ.ମୁର୍ ପ୍ରଭୃତି ବିଂଶ ଶତାବ୍ଦୀର ଦାର୍ଶନିକ ଗଣ ଦର୍ଶନ କ୍ଷେତ୍ରରେ ଏକ ନୂତନ ଦିଗନ୍ତର ସନ୍ଧାନ ଦେଲେ । ସେହି ପରଂପରାର ଦାର୍ଶନିକ ଗିଲବର୍ଟ ରାଇଲ୍ ମନ-ଦର୍ଶନ ଉପରେ ଯେଉଁ ସମୀକ୍ଷାମୂଳକ ଗ୍ରନ୍ଥ ଲେଖିଲେ ତାହା ଦେକାତୀୟ ବିଚାରର ଭ୍ରାନ୍ତି ଓ ପ୍ରତ୍ୟୟଗତ ତ୍ରୁଟିକୁ ନିଖୁଣ ଭାବେ ଦେଖାଇଲା । ଦେକାର୍ତଙ୍କର ଶରୀର-ମନ ପାର୍ଥକ୍ୟ ଜନିତ ଦ୍ୱୈତବାଦ ଏକ ମୌଳିକ ତ୍ରୁଟି ଉପରେ ଆଧାରିତ ବୋଲି ରାଇଲ୍ ଦର୍ଶାଇଲେ ଓ ମାନସ-ପ୍ରତ୍ୟୟ ଗୁଡିକର ତାର୍କିକ ବିଶ୍ଳେଷଣ ଦେଲେ । ଏହି ତ୍ରୁଟିକୁ ସେ ବର୍ଗ-ମିଶ୍ରଣ ଦୋଷ (category mistake) ବୋଲି କହିଲେ । ଦର୍ଶନ ଶାସ୍ତ୍ରରେ ଏହି ବର୍ଗ-ମିଶ୍ରଣ ଯୋଗୁଁ ଯେ ନାନା ଗୁରୁତର ସମସ୍ୟାମାନ ବୌଦ୍ଧିକ ସ୍ତରରେ ସୃଷ୍ଟି ହୋଇଛି ତାହା ସେ ପ୍ରତିପାଦନ କଲେ । ଆମ ଭାଷା ବ୍ୟବହାରରେ ଆମେ ବିଭିନ୍ନ ଶବ୍ଦ ଓ ପ୍ରତ୍ୟୟ ପ୍ରୟୋଗ କରୁ । କିନ୍ତୁ ଯଦି କୌଣସି ଅସ୍ପଷ୍ଟତା ଯୋଗୁଁ ପୃଥକ୍ ବର୍ଗର ପ୍ରତ୍ୟୟମାନଙ୍କୁ ଏକ ଶ୍ରେଣୀର ଭ୍ରାବି ସେମାନଙ୍କୁ ଏକା ପ୍ରକାର ବ୍ୟାଖ୍ୟା କରୁ ତେବେ ବର୍ଗ-ମିଶ୍ରଣ ଦୋଷ ସୃଷ୍ଟି ହୋଇଥାଏ । ବର୍ଗ-ମିଶ୍ରଣ ଦୋଷର ଏକ ଉଦାହରଣ ନିଆଯାଉ । ଜଣେ ଆଗନ୍ତୁକ ବିଜେବି କଲେଜ ଦେଖିବାକୁ ଆସିଲେ । ସେ ଅଧକ୍ଷଙ୍କ କାର୍ଯ୍ୟାଳୟ, ଅଫିସ୍, ଶ୍ରେଣୀଗୃହ, ବିଜ୍ଞାନାଗାର, ପାଠାଗାର ସବୁ ଦେଖିଲେ । ଏ ସବୁ ଦେଖି ମନ୍ତବ୍ୟ ଦେଲେ ଯେ ସେ ଅଧକ୍ଷଙ୍କ କାର୍ଯ୍ୟାଳୟ, ଶ୍ରେଣୀଗୃହ... ଇତ୍ୟାଦି ଦେଖିଲେ, କିନ୍ତୁ ବିଜେବି କଲେଜ କେଉଁଠି ତ ଦେଖିଲେ ନାହିଁ । ଏଠାରେ ସେ ବର୍ଗ-ମିଶ୍ରଣ ଦୋଷ ସୃଷ୍ଟି କରୁଛନ୍ତି । ସେ ଅଧକ୍ଷ, ଅଧ୍ୟାପକଙ୍କ କୋଠରୀ, ଶ୍ରେଣୀଗୃହ ଦେଖି ସେସବୁ ଯେଉଁ ଶ୍ରେଣୀର ପ୍ରତ୍ୟୟ ବିଜେବି କଲେଜ ମଧ ସେହି ଶ୍ରେଣୀର ପ୍ରତ୍ୟୟ ବୋଲି ଭାବୁଛନ୍ତି । ଶ୍ରେଣୀଗୃହ, ବିଜ୍ଞାନାଗାର, ଅଫିସଗୃହ... ଏକ ଏକ ନିର୍ଦ୍ଦିଷ୍ଟ ସ୍ଥାନର ସୂଚନା ଦେଇଥାଏ, କିନ୍ତୁ ବିଜେବି କଲେଜ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ବୁଝାଏ ନାହିଁ । ଏହି ପଦ ମାନଙ୍କର ବ୍ୟବହାର କ୍ଷେତ୍ରରେ ପାର୍ଥକ୍ୟ ରହିଛି । ନିର୍ଦ୍ଦିଷ୍ଟ ସ୍ଥାନକୁ ପୃଥକ୍ ଭାବେ ସୂଚାଇବା ପାଇଁ ଯେପରି ପଦ ଭାଷାରେ ରହିଛି ସେହିପରି ଏକ ସମୂହ ସ୍ଥାନକୁ ବୁଝାଇବାକୁ ପଦଭାଷାରେ ରହିଛି । ଏହି ପାର୍ଥକ୍ୟକୁ ନ ବୁଝି ବିଭିନ୍ନ ବର୍ଗର ପଦମାନଙ୍କୁ ଏକ ମାନଦଣ୍ଡରେ ବୁଝିଲେ ବର୍ଗ-ମିଶ୍ରଣ ଦୋଷ ସୃଷ୍ଟି ହୋଇଥାଏ ।

ମନ ଓ ଶରୀର ବ୍ୟାକରଣ ମାନଦଣ୍ଡରୁ ସମଜାତୀୟ ଶବ୍ଦ କାରଣ ଉଭୟ ବିଶେଷ୍ୟ ପଦ, କିନ୍ତୁ ତାର୍କିକ ମାନଦଣ୍ଡରୁ ସେମାନେ ସଂପୂର୍ଣ୍ଣ ପୃଥକ୍ ଶ୍ରେଣୀର ପ୍ରତ୍ୟୟ । ବ୍ୟାକରଣଗତ ସାମଂଜସ୍ୟ ଆଧାରରେ ଦେହ ଯେପରି ଏକ ସତ୍ତା, ଦେକାର୍ତ ଭାବିଲେ ମନ ମଧ ସେହିପରି ଏକ ସତ୍ତା । ଦେହ ଯେପରି ଭୌତିକ ନିୟମର ଅଧୀନ, ମନ ସେହିପରି ଅଭୌତିକ ବା ଆଧ୍ୟାତ୍ମିକ ନିୟମର ଅଧୀନ । ଦୁଇଟି ସ୍ୱତନ୍ତ୍ର ଓ ପୃଥକ୍ ବର୍ଗର ପ୍ରତ୍ୟୟକୁ ଏକ ବର୍ଗର ପ୍ରତ୍ୟୟ ବୋଲି ଭାବିବାରୁ ଏକ ଜଟିଳ ପ୍ରମାଦ ସୃଷ୍ଟି ହେଉଛି । ରାଇଲ୍ ଦେକାର୍ତଙ୍କର ବା ସେହି ଶ୍ରେଣୀୟ ଦେହ-ମନ ସମ୍ବନ୍ଧ ମତବାଦକୁ "ଯନ୍ତ୍ରାରୂଢ଼-ଭୂତ" (ghost in the machine) ଉପାଖ୍ୟାନ ବୋଲି ନାମିତ କରିଛନ୍ତି । ଯନ୍ତ୍ର ପରି ଦେହ ଏକ ଭୌତିକ ସତ୍ତା, ମନ ମଧ ଏକ ଅଦୈହିକ ବା ଅଶରୀରୀ ସକ୍ରିୟ ସତ୍ତା । ଭୂତ ଅଶରୀରୀ ହୋଇ ଯେପରି ଏକ ସକ୍ରିୟ ସତ୍ତା ବୋଲି ବିଶ୍ୱାସ ରହିଛି, ମଣିଷର ମନ ସେହିପରି ଏକ ଅଶରୀରୀ ଚଳନ ସତ୍ତା ବୋଲି ଦେକାର୍ତ ଭାବିଛନ୍ତି ।

ବୌଦ୍ଧିକ ଓ ତାର୍କିକ ଅସ୍ପଷ୍ଟତା ଯୋଗୁଁ କିପରି ତାତ୍ତ୍ୱିକ ସମସ୍ୟାମାନଙ୍କର ସୃଷ୍ଟି ହୁଏ ଏହା ଦର୍ଶନରେ ଏକ ଗମ୍ଭୀର ଚର୍ଚ୍ଚାର ବିଷୟ ଅଟେ । କୌଣସି ଶବ୍ଦର ତାର୍କିକ ତାତ୍ପର୍ଯ୍ୟକୁ ପ୍ରତ୍ୟୟ ବୋଲି ଗ୍ରହଣ କଲେ ଗୋଟିଏ ଶବ୍ଦର ବହୁବିଧ ପ୍ରୟୋଗ ରହିବା ସମ୍ଭବ । ସୁତରାଂ ଗୋଟିଏ ଶବ୍ଦର ମାତ୍ର ଗୋଟିଏ ବ୍ୟବହାର ରହିବ ବୋଲି ବିଚାର ଯେପରି ତ୍ରୁଟିପୂର୍ଣ୍ଣ, ଏକ ଶ୍ରେଣୀର ଶବ୍ଦ ମାନଙ୍କର ବ୍ୟବହାର ବା ତାତ୍ପର୍ଯ୍ୟ ସମାନ ବା ଏକ ପ୍ରକାର ବୋଲି ବିଚାର କରିବା ମଧ୍ୟ ସେହିପରି ତ୍ରୁଟିପୂର୍ଣ୍ଣ । ବସ୍ତୁତଃ ଏକ ଶବ୍ଦର ବିଭିନ୍ନ ପ୍ରତ୍ୟୟ ରହିପାରେ ଓ ବ୍ୟାକରଣଗତ ·ସାମଂଜସ୍ୟ ଦୃଷ୍ଟିରୁ କେତେକ ଶବ୍ଦ ଏକା ପ୍ରକାରର ଜଣା ପଡୁଥିଲେ ମଧ୍ୟ ସେଗୁଡିକ ମଧ୍ୟରେ ପ୍ରତ୍ୟୟଗତ ଓ ପ୍ରୟୋଗଗତ ଭିନ୍ନତା ରହିବା ଅବଶ୍ୟମ୍ଭାବୀ । ଏହି ପାର୍ଥକ୍ୟକୁ ନ ବୁଝିଲେ ଜଟିଳ ଓ ଦାର୍ଶନିକ ସମସ୍ୟାର ସୂତ୍ରପାତ ହୁଏ । ଦେକାର୍ତ ଓ ତାଙ୍କ ବିଚାରର ପୃଷ୍ଠପୋଷକ ଦାର୍ଶନିକମାନେ ଏକ ପ୍ରତ୍ୟୟଗତ ଜଟିଳତାକୁ ନେଇ ଏକ ଗମ୍ଭୀର ତାତ୍ତ୍ୱିକ ସମସ୍ୟା ସୃଷ୍ଟି କରିଛନ୍ତି ।

ମନ ଓ ଦେହ ଯେ ପୃଥକ୍ ଶ୍ରେଣୀର ପ୍ରତ୍ୟୟ ଏହା ଏକ ସାଧାରଣ ଉଦାହରଣରୁ ସ୍ପଷ୍ଟ ହୋଇପାରିବ । ଏକା ବର୍ଗର ପ୍ରତ୍ୟୟ ମାନଙ୍କ ବିଷୟରେ ଏକା ପ୍ରକାରର ପ୍ରଶ୍ନ ପଚରାଯାଇ ପାରିବ, କିନ୍ତୁ ପୃଥକ୍ ବର୍ଗର ପ୍ରତ୍ୟୟମାନଙ୍କ ବିଷୟରେ କରାଯାଇ ପାରିବ ନାହିଁ । ତାଙ୍କର ଶରୀରର ଉଚ୍ଚତା କେତେ ଓ ରଙ୍ଗ କ'ଣ ପଚରାଯାଇ ପାରିବ, କିନ୍ତୁ ତାଙ୍କ ମନର ଉଚ୍ଚତା କେତେ ବା ରଙ୍ଗ କ'ଣ ଅତ୍ୟନ୍ତ ଅବାନ୍ତର ପ୍ରଶ୍ନ ହେବ । ବସ୍ତୁତଃ ମନ ଓ ଶରୀର ଏକା ବର୍ଗର ପ୍ରତ୍ୟୟ ନୁହଁନ୍ତି । ଆମେ ବାସ୍ତବ ଜୀବନରେ ବା ବ୍ୟବହାରରେ ମନ ଓ ଶରୀରକୁ ଯଥାର୍ଥ ଭାବେ ବ୍ୟବହାର କରିବାରେ ପ୍ରତିବନ୍ଧକର ସମ୍ମୁଖୀନ ହୁଏ ନାହିଁ, କିନ୍ତୁ ଦାର୍ଶନିକ ଚିନ୍ତନ ସମୟରେ ସେମାନଙ୍କର ଭ୍ରମାତ୍ମକ ବିଶ୍ଳେଷଣ ଓ ପ୍ରୟୋଗ ଗମ୍ଭୀର ପ୍ରତ୍ୟୟଗତ ସମସ୍ୟା ସୃଷ୍ଟି କରିଥାଏ ।

ବର୍ଗମିଶ୍ରଣ ଦୋଷରୁ ଉଦ୍ଭବ "ଯନ୍ତ୍ରାରୂଢ଼ ଭୂତ" ସିଦ୍ଧାନ୍ତ ଆଧାରରେ ମାନସ ପ୍ରତ୍ୟୟ ମାନଙ୍କର ବି ଭ୍ରମାତ୍ମକ ବ୍ୟାଖ୍ୟା କରାଯାଏ । ଚିନ୍ତାକରିବା, ନିଷ୍ପତ୍ତି କରିବା, ସଂକଳ୍ପ ନେବା, ଚକ୍ରାନ୍ତ କରିବା ଇତ୍ୟାଦି କାର୍ଯ୍ୟକୁ କେହି କେହି ଅଦୃଶ୍ୟମାନ ମାନସିକ ପ୍ରକ୍ରିୟା ଭାବେ ଗ୍ରହଣ କରିଥାନ୍ତି । ସେହିପରି ଅମୂର୍ତ୍ତ ପ୍ରତ୍ୟୟ ମାନଙ୍କୁ ଅଦୃଶ୍ୟମାନ ମାନସିକ ସ୍ରୋତର ପ୍ରତିବିମ୍ବ ବୋଲି କଳ୍ପନା କରାଯାଏ । ଚିନ୍ତା କରିବା, ଚକ୍ରାନ୍ତ କରିବା, ହୃଦୟଙ୍ଗମ କରିବା.. ଇତ୍ୟାଦି ମନ ସଂବଂଧୀୟ କାର୍ଯ୍ୟକୁ ବୁଝାଏ । ଏସବୁ ଶବ୍ଦ ଏକ ଶ୍ରେଣୀୟ ଜଣାପଡୁଥିଲେ ବି ଏଗୁଡିକ ବିଭିନ୍ନ ଭାବରେ ଭାଷାରେ ବ୍ୟବହୃତ ହୁଏ କିନ୍ତୁ କୌଣସି ଗୁପ୍ତ ମାନସିକ ପ୍ରକ୍ରିୟାକୁ ବୁଝାଏ ନାହିଁ । ବୁଝିବା, ଚିନ୍ତା କରିବା, ହୃଦୟଙ୍ଗମ କରିବା ... ଇତ୍ୟାଦି ସଂପାଦନାତ୍ମକ କାର୍ଯ୍ୟକୁ ବୁଝାଏ, ଏଗୁଡିକ ମନଗହ୍ୱରର ଅଦୃଶ୍ୟମାନ ପ୍ରକ୍ରିୟାକୁ ବୁଝାଏ ନାହିଁ । ଜଣଙ୍କୁ ବିଚାରଶୀଳ କହିବା ଅର୍ଥ ତାଙ୍କ ମସ୍ତିଷ୍କରେ କ'ଣ କ୍ରିୟା ହେଉଚି ତାହାକୁ ଆମେ ବୁଝେ ନାହିଁ ବରଂ ସେ କିପରି ଯୁକ୍ତି କରନ୍ତି, ସମସ୍ୟାକୁ କିପରି ସମାଧାନ କରନ୍ତି ବା କିପରି ବ୍ୟବହାର ଦେଖାନ୍ତି ଏ ସବୁକୁ ହିଁ ବୁଝିଥାଉ । ସେହିପରି କଳ୍ପନା କରବା ଅର୍ଥ ମନଶ୍ଚକ୍ଷୁରେ ଦେଖିବା ବା ଏକ ଗୋପନୀୟ ଚିତ୍ର ମନରେ ଆଙ୍କିବାକୁ ବୁଝାଏ ନାହିଁ । 'କଳ୍ପନାକୁ ମନଶ୍ଚକ୍ଷୁରେ ଦେଖିବା'- କହିବା ଏକ ଭ୍ରମାତ୍ମକ ବିଚାର, କଳ୍ପନା କୌଣସି ଦୃଶ୍ୟମାନତା ସହ ସଂପୃକ୍ତ ନୁହେଁ । ଜଣେ ଲେଖକଙ୍କୁ କଳ୍ପନାବିଳାସୀ କହିବା ଅର୍ଥ ସେ କ'ଣ ମନଶ୍ଚକ୍ଷୁରେ ଦେଖୁଛନ୍ତି ତାହା ବୁଝାଏ ନାହିଁ ବରଂ ତାଙ୍କର ସାମର୍ଥ୍ୟ ବିଷୟରେ କୁହା ଯାଇଥାଏ । ଜଣେ କବିଙ୍କୁ କଳ୍ପନା-ବିଳାସୀ କହିବା ଅର୍ଥ ସେ ଯେପରି ଭାବଗମ୍ଭୀର ଭାଷାରେ କବିତା ଲେଖିପାରିବେ ଅନ୍ୟମାନେ ସେପରି କରିପାରିବେ ନାହିଁ । ମୋଟ ଉପରେ କହିଲେ ମନ ଯେ ଦେହ ଭିତରେ ଏକ ଅଶରୀରୀ ସତ୍ତା ଓ ମାନସ ପ୍ରତ୍ୟୟ,

ବୌଦ୍ଧିକ ପ୍ରତ୍ୟୟ, ଅମୂର୍ତ୍ତ ପ୍ରତ୍ୟୟ ଇତ୍ୟାଦି ଗୋପନୀୟ ମାନସିକ ପ୍ରକ୍ରିୟାର ଅଭିବ୍ୟକ୍ତି ଏହା ମନ ସଂପର୍କିତ "ଯନ୍ତ୍ରାରୂଢ଼ ଭୂତ" ସିଦ୍ଧାନ୍ତର ପରିଣାମ ମାତ୍ର । ମାନସ ପ୍ରତ୍ୟୟ ମନ ଭିତରର ପ୍ରକ୍ରିୟାକୁ ନ ବୁଝାଇ ସାମର୍ଥ୍ୟ ଓ ଦକ୍ଷତାକୁ ହିଁ ସୂଚାଇଥାଏ ।

ଉପସଂହାରରେ ଏହା କୁହାଯାଇ ପାରେ ଯେ ଶରୀର ଓ ମନକୁ ଏକ ବର୍ଗୀୟ ବା ଏକ ଶ୍ରେଣୀୟ ପ୍ରତ୍ୟୟ ଭାବେ ବିଚାର କରି ମନକୁ ଏକ ସତ୍ତା, ଏକ ଚୈତନ୍ୟମୟ ସତ୍ତା ଓ ମନର କ୍ରିୟାକୁ ଅନ୍ତର୍ନିରୀକ୍ଷଣଦ୍ୱାରା ଜାଣିହେବ ବୋଲି ଭାବନା ବହୁ ଜଟିଳ ସମସ୍ୟା ଓ ଅସ୍ପଷ୍ଟତାକୁ ସୃଷ୍ଟି କରାଇଛି । ଜଣେ କେବଳ ନିଜର ଭାବନା, ଆବେଗ ଇତ୍ୟାଦିକୁ ଜାଣିପାରିବ, କେହି କେବେହେଲେ ଅନ୍ୟ ବ୍ୟକ୍ତିର ମନ ବା ଆବେଗ ବିଷୟରେ କିଛି କହିପାରିବ ନାହିଁ । ଏପରିକି ବାହ୍ୟ ଜଗତରେ ଅନ୍ୟ ବ୍ୟକ୍ତି ବା ବସ୍ତୁ ଅଛନ୍ତି ବୋଲି କିଛି କହିହେବ ନାହିଁ । ମନ ସଂପର୍କୀୟ ଅସ୍ପଷ୍ଟତାରୁ ଏହି ସବୁ ବିଚାର ଜନିତ ଅହଂମାତ୍ରବାଦ (solipcism), ଆତ୍ମକୈନ୍ଦ୍ରିକ ପ୍ରତ୍ୟୟ ସତ୍ତାବାଦ (Subjective idealism) ପରି ବିଭ୍ରାନ୍ତିକର ତାତ୍ତ୍ୱିକ ଭାବନା ସୃଷ୍ଟି ହୋଇଛି । 'ମନ ଚେତନାମୟ ଓ ଚେତନା ଏକ ଅନ୍ତାର୍ଲୋକ ସଦୃଶ୍ୟ' - ଅନେକ ଅସ୍ପଷ୍ଟତାକୁ ଉଦ୍ରେକ କରାଇଛି । ମନ, ଚେତନା, ବୁଦ୍ଧି, ବିବେକ .... ପରି ମାନସ ପଦଗୁଡ଼ିକ ଭାଷାରେ ବହୁବିଧ ଅର୍ଥରେ ବ୍ୟବହୃତ ହୋଇଥାଏ । ସେମାନଙ୍କ ପ୍ରୟୋଗ ଓ ପ୍ରସଙ୍ଗକୁ ଦେଖି ବିଚାର କରିବା ପରିବର୍ତ୍ତେ ସେ ସବୁକୁ ଅନ୍ତର୍ନିହିତ ପ୍ରକ୍ରିୟା ବୋଲି ଭାବିବା ସମସ୍ୟା ଆଣିଥାଏ । ଏପରିକି ଜଣେ ସଚେତନ ବ୍ୟକ୍ତି ଅନ୍ତର୍ନିରୀକ୍ଷଣ କରିଥାଏ ବୋଲି ଆମେ କହିଥାଏ । ତେବେ ଏହାର ଅର୍ଥ ନୁହେଁ ଯେ ସେ ଅଦୃଶ୍ୟମାନ ମାନସିକ କ୍ରିୟା ସଂପାଦନ କରୁଛନ୍ତି, ବରଂ ନିଜର ବ୍ୟବହାର ନେଇ ଅଧିକ ସଚେତନ ହେଉଛନ୍ତି, ନିଜର ଭୁଲ, ତ୍ରୁଟିକୁ ଡାଏରିରେ ଲେଖୁଛନ୍ତି, କଥାବାର୍ତ୍ତାରେ ସଂଯମତା ରକ୍ଷା କରୁଛନ୍ତି ଇତ୍ୟାଦି । ସୁତରାଂ ମନ ଏକ ଅଦୃଶ୍ୟମାନ ସତ୍ତା ନୁହେଁ ବା ବୌଦ୍ଧିକ କାର୍ଯ୍ୟ ଏକ ରହସ୍ୟମୟ ଗୁପ୍ତ କ୍ରିୟାର ସୂଚନା ଦିଏ ନାହିଁ । ମନୋବିଜ୍ଞାନ ମଣିଷ ମନର ରହସ୍ୟମୟ ସ୍ଥିତି ବା କ୍ରିୟାର ଅଧ୍ୟୟନ ନୁହେଁ, ବରଂ ମଣିଷର ଆଚରଣ, ବ୍ୟବହାର, ପାରିପାର୍ଶ୍ୱିକ ପରିସ୍ଥିତି ସହ ବ୍ୟକ୍ତିର ସଂପର୍କ ଓ ଅବସ୍ଥାର ଅଧ୍ୟୟନ । ବସ୍ତୁତଃ ମନ ସଂପର୍କରେ ଯେଉଁ ଜଟିଳ, ଅସ୍ପଷ୍ଟ ଓ ବଭ୍ରାନ୍ତିକର ବିଚାର ଦର୍ଶନ ସ୍ତରରେ ସୃଷ୍ଟି ହୋଇଥିଲା, ସେ ସବୁରୁ ମୁକ୍ତ ହେବାଦ୍ୱାରା ମନୋବିଜ୍ଞାନ କ୍ଷେତ୍ରରେ ବ୍ୟାପକ ଅଧ୍ୟୟନ କରିବାର ଅବକାଶ ସୃଷ୍ଟି ହେଲା । ମନୋବିଜ୍ଞାନ ବୈଜ୍ଞାନିକ ମାନଦଣ୍ଡରେ ମଣିଷର ସ୍ୱରୂପ, ଆଚରଣ, ବ୍ୟବହାର, ପରିସ୍ଥିତି ସହ ସଂପର୍କ, ପ୍ରତିକ୍ରିୟା, ମାନସିକ ବ୍ୟାଧି ଇତ୍ୟାଦିକୁ ବୁଝିବାରେ ନୂତନ ଦିଗନ୍ତ ସୃଷ୍ଟି କରିପାରିଲା । "ଆତ୍ମା, ମନ, ଚେତନା ଏସବୁ ଯେ ଅନ୍ତର୍ନିହିତ ସତ୍ତା"- ମନୋଦର୍ଶନ ଏହି ଧାରଣାକୁ ଦୂର କରିବାରୁ ବୈଜ୍ଞାନିକ ପଦ୍ଧତିରେ ମଣିଷର ଆଚରଣ ଓ ପ୍ରବଣତା କ୍ଷେତ୍ରରେ କାହିଁକି ଏତେ ପାର୍ଥକ୍ୟ ରହିଛି ତା'ର ମଧ ବିଶ୍ଳେଷଣ ହେଲା । ବିଶେଷକରି ଆଧୁନିକ ଯୁଗରେ ଲୋକମାନଙ୍କର ଜଟିଳ ଆଚରଣ ଗତ ସମସ୍ୟାକୁ ଅଧ୍ୟୟନ କରିବା ପାଇଁ ମନୋବିଜ୍ଞାନ ଓ ଚିକିତ୍ସା ବିଜ୍ଞାନରେ ଉଦ୍ୟମ ହେଲା । ଏହାର ପରିଣାମ ସ୍ୱରୂପ ବ୍ୟକ୍ତିର ବ୍ୟବହାର ଓ ଜଟିଳ ଆଚରଣକୁ ବ୍ୟାଖ୍ୟା କରିବା ସମ୍ଭବପର ହୋଇପାରିଛି । ମନୋବିଜ୍ଞାନ କ୍ଷେତ୍ରରେ ଅନ୍ତର୍ନିରୀକ୍ଷଣବାଦ ସ୍ଥାନରେ ବ୍ୟବହାରବାଦ ଏହାର ଅଧ୍ୟୟନକୁ ଅତି ବ୍ୟାପକ ଭାବରେ ବୃଦ୍ଧି କରିପାରିଛି ।



# ଭାରତୀୟ ଚିନ୍ତନରେ ଆତ୍ମା ଓ ପୁନର୍ଜନ୍ମ

ପ୍ରାୟ ପ୍ରତ୍ୟେକ ଧର୍ମରେ ଏ ପ୍ରକାର ବିଶ୍ୱାସ ରହିଛି ଯେ ମଣିଷ ଭିତରେ ଏକ ଅବିନାଶୀ ଆତ୍ମା ରହିଛି । ଯଦିବା ଧର୍ମମାନଙ୍କର ଆତ୍ମା ପ୍ରତୀତିରେ ପାର୍ଥକ୍ୟ ରହିଛି ତଥାପି ଏହା ଏକ ସାର୍ବଜନୀନ ବିଶ୍ୱାସ ଯେ ମଣିଷର ଏକ ଆତ୍ମା ରହିଛି ଓ ଆତ୍ମା ଅବିନାଶୀ । ସେହିପରି ଆତ୍ମାର ମୁକ୍ତି ବା ସ୍ୱର୍ଗପ୍ରାପ୍ତି ମଧ୍ୟ ଧର୍ମମାନଙ୍କର ଏକ ତାତ୍ତ୍ୱିକ କଳ୍ପନା । ଜୀବନର ଅନ୍ତିମ ଲକ୍ଷ୍ୟ ବିଷୟରେ ବିଭିନ୍ନ ଧର୍ମ ବିଭିନ୍ନ କଳ୍ପନା କରିଛନ୍ତି ଓ ସେ କ୍ଷେତ୍ରରେ ଆତ୍ମାର ଈଶ୍ୱରପ୍ରାପ୍ତି, ସ୍ୱର୍ଗପ୍ରାପ୍ତି ବା ନିର୍ବାଣପ୍ରାପ୍ତିକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ଯେଉଁ ଯୁଗରେ ଧର୍ମମାନଙ୍କର ଉତ୍ପତ୍ତି ହୋଇଥିଲା ସେ ଯୁଗରେ ଜୀବନ ଓ ସଂସାର ବିଷୟକ ଅବବୋଧ ଭିତରେ ଏହିପରି କଳ୍ପନା ନାନା ଭାବରେ ବୌଦ୍ଧିକ ସ୍ତରରେ ବ୍ୟକ୍ତ ହୋଇଥିଲା । ନୃତତ୍ତ୍ୱବିତ୍ ଓ ମନସ୍ତତ୍ତ୍ୱବିତ୍ ମାନେ ଆତ୍ମା ବିଷୟକ ଭାବନାର ଉତ୍ପତ୍ତି ନେଇ କେତେକ ମତବ୍ୟକ୍ତ କରିଛନ୍ତି । ତେବେ ଆତ୍ମାର ଅସ୍ତିତ୍ୱ ନେଇ ବିଶ୍ୱାସ ଧର୍ମ ଭାବନାର ଏକ ଅବିଚ୍ଛେଦ୍ୟ ଅଙ୍ଗ କହିଲେ ଅତ୍ୟୁକ୍ତି ହେବନାହିଁ । ମନସ୍ତାତ୍ତ୍ୱିକ ସ୍ତରରେ ମୃତ୍ୟୁରେ ବ୍ୟକ୍ତି ସତ୍ତାର ସମସ୍ତ ଅସ୍ତିତ୍ୱ ଲୋପ ପାଇଯିବ ଏହା ମଣିଷକୁ ଭୟଙ୍କର ମନେ ହୋଇଛି । ପୁନଶ୍ଚ ମଣିଷର ଭଲ ମନ୍ଦ ପାର୍ଥକ୍ୟ କରିବାର ସହଜାତ ଦକ୍ଷତା ଏକ ଅବିନାଶୀ ଆତ୍ମାର ପରିକଳ୍ପନା ପାଇଁ ମଧ୍ୟ ସହାୟକ ହୋଇଛି । ବସ୍ତୁତଃ ବିଭିନ୍ନ ଧର୍ମଧାରା ଭିତରେ ଏହି ଭାବନା ସୃଷ୍ଟି ହୋଇଛି ଯେ ମଣିଷର ଏକ ଅବିନାଶୀ ଆତ୍ମା ଶରୀର ଭିତରେ ରହିଛି ଓ ମୃତ୍ୟୁରେ ଆତ୍ମା ଶରୀର ବ୍ୟତୀତ ରହି ତା'ର ଈପ୍ସିତ ଫଳ ଲାଭ କରିବ । ସେହିପରି ଏକ ନୈତିକ ଆବେଗଦ୍ୱାରା ପରିଚାଳିତ ହୋଇ ଜୀବନରେ କର୍ମର ଫଳ ଆତ୍ମାକୁ ଭୋଗ କରିବାକୁ ହେବ ବୋଲି ମଣିଷ କଳ୍ପନା କରିଛି । ତେବେ ପାଶ୍ଚାତ୍ୟ ଭୂଖଣ୍ଡରେ ସୃଷ୍ଟ ଧର୍ମମାନଙ୍କରେ ସ୍ୱର୍ଗ ନରକର କଳ୍ପନା ଅଛି କିନ୍ତୁ ପୁନର୍ଜନ୍ମର ଭାବନା ନାହିଁ । ପାର୍ଶୀଧର୍ମ, ଇହୁଦୀ ଧର୍ମ, ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମରେ ପୁନର୍ଜନ୍ମର ପ୍ରତୀତି ନାହିଁ, କେବଳ ବ୍ୟକ୍ତି କର୍ମର ପରିଣାମ ସ୍ୱରୂପ ସ୍ୱର୍ଗ ବା ନରକକୁ ଯିବାର କଳ୍ପନା ରହିଛି । ଭାରତ ଭୂଖଣ୍ଡରେ ସୃଷ୍ଟ ଧର୍ମମାନଙ୍କରେ ପୁନର୍ଜନ୍ମର ଭାବନା ରହିଛି । ପ୍ରତ୍ୟେକ ବ୍ୟକ୍ତିକୁ କର୍ମର ଫଳ ଏ ଜନ୍ମରେ ହେଉ ବା ପରଜନ୍ମରେ ହେଉ ଭୋଗ କରିବାକୁ ହେବ । ଭଲ କର୍ମ କରିଥିବା ଲୋକମାନେ ସୁଫଳ ପା'ନ୍ତୁ ଓ ମନ୍ଦ କର୍ମ କରିଥିବା ଲୋକମାନେ ଦଣ୍ଡିତ ହୁଅନ୍ତୁ ଏହି ପ୍ରକାରର ଏକ ନୀତିବୋଧ ଜନିତ ମନସ୍ତତ୍ତ୍ୱରୁ ସ୍ୱର୍ଗ, ନରକ ଓ ପୁନର୍ଜନ୍ମ ଇତ୍ୟାଦିର ଭାବନା ଧର୍ମମାନଙ୍କରେ ସୃଷ୍ଟି ହୋଇଛି । ମୋଟ ଉପରେ କହିଲେ ମନସ୍ତାତ୍ତ୍ୱିକ, ବୌଦ୍ଧିକ ଓ ନୈତିକ କାରଣ ଯୋଗୁଁ ଅବିନାଶୀ ଆତ୍ମାର ପରିକଳ୍ପନା ବିଭିନ୍ନ ସଭ୍ୟତାରେ, ଧର୍ମରେ ଓ ଦାର୍ଶନିକ ବିଚାର ସ୍ତରରେ ସୃଷ୍ଟି ହୋଇଛି । ଶଂସିତ ପ୍ରବନ୍ଧରେ ଭାରତୀୟ ଧର୍ମ ଓ ଦର୍ଶନରେ ଆତ୍ମାର ପରିକଳ୍ପନା କିପରି ରହିଛି ତାହାର ସଂକ୍ଷିପ୍ତ ଆଲୋଚନା ସହ ପୁନର୍ଜନ୍ମ ସିଦ୍ଧାନ୍ତର କେତେକ ଜଟିଳତା ଦେଖାଇବା ଆମର ଉଦ୍ଦେଶ୍ୟ ।

( ୧ )

ଭାରତ ଭୂଖଣ୍ଡରେ ଉଦ୍ଭବ ଧର୍ମମାନଙ୍କ ମଧ୍ୟରେ ହିନ୍ଦୁ ଧର୍ମ ପୁରାତନ । ତେବେ ଅନ୍ୟ ଧର୍ମମାନଙ୍କରେ ଯେପରି କେହି ପ୍ରତିଷ୍ଠାତା ରହିଛନ୍ତି, ହିନ୍ଦୁଧର୍ମରେ ସେପରି କେହି ଆଦି ପ୍ରବର୍ତ୍ତକ ନାହାନ୍ତି । ସଂପ୍ରତି ଯାହା ହିନ୍ଦୁଧର୍ମ ନାମରେ ବ୍ୟକ୍ତ ହେଉଛି ତାହା ବହୁ ବିବର୍ତ୍ତନ ମଧ୍ୟ ଦେଇ ଆସିଛି । ଏଥିରେ ବହୁ ତାତ୍ତ୍ୱିକ, ପାରଂପରିକ ଓ ସାଂସ୍କୃତିକ ବିଚାରର ସମନ୍ୱୟ ହୋଇଛି । ହିନ୍ଦୁଧର୍ମରେ ଏକକ ଧର୍ମଗ୍ରନ୍ଥ ନାହିଁ । ବେଦ, ଉପନିଷଦ୍, ଭଗବଦ୍‌ଗୀତା, ବ୍ରହ୍ମସୂତ୍ର ଇତ୍ୟାଦି ବହୁ ଗ୍ରନ୍ଥ ହିନ୍ଦୁଧର୍ମର ତାତ୍ତ୍ୱିକ ଭାବନା ସକଳକୁ ନାନା ଦିଗରେ ପ୍ରଭାବିତ କରିଛନ୍ତି । ଗୋଟିଏ ସମୟରେ ଏହାକୁ ବୈଦିକ ଧର୍ମ କୁହାଯାଉଥିଲା । ପରେ କେତେକ ଏହାକୁ ଆର୍ଯ୍ୟ ଧର୍ମ ବା ସନାତନ ଧର୍ମ ବୋଲି କହିଲେ । ପୁନଶ୍ଚ ଏହା ବ୍ରାହ୍ମଣ୍ୟ ଧର୍ମ ଭାବରେ ମଧ୍ୟ ବେଳକେ ଅଭିହିତ ହୋଇଛି । ଏହିପରି ବିଭିନ୍ନ ନାମରେ ପରିଚିତ ହୋଇ ଏବେ ଏହା ହିନ୍ଦୁଧର୍ମ ନାମରେ ବ୍ୟକ୍ତ ହେଉଛି ଯଦିବା 'ହିନ୍ଦୁ' ଶବ୍ଦ ପ୍ରାଚୀନ ଓ ପ୍ରାମାଣିକ ଗ୍ରନ୍ଥରେ ବ୍ୟବହୃତ ହୋଇନାହିଁ । ତେବେ ସେ ଯାହାହେଉନା କାହିଁକି ଆତ୍ମା ପୃଷ୍ଠଭୂମିରେ ଏହା ଗ୍ରହଣ କରାଯାଏ ଯେ ପ୍ରତ୍ୟେକ ବ୍ୟକ୍ତି ଓ ପ୍ରାଣୀର ଆତ୍ମା ବିଦ୍ୟମାନ । ମଣିଷଠାରୁ ଆରମ୍ଭ କରି ପ୍ରତ୍ୟେକ ପ୍ରାଣୀ, କୀଟ ଓ ପତଙ୍ଗର ଆତ୍ମା ଥିବା ବିଶ୍ୱାସ କରାଯାଏ । ଏପରିକି ଜୀବନ ଥିବା ଜୀବମାନଙ୍କ ସହିତ ଉଦ୍ଭିଦର ବି ଆତ୍ମା ଥିବା କେତେକ ବିଶ୍ୱାସ କରନ୍ତି । ଯାହାର ଜୀବନ ଅଛି ତାହା ଏକ ଜୀବାତ୍ମା ଭାବରେ ବିଦିତ । ତେବେ ପ୍ରତ୍ୟେକ ଜୀବ ପୁନର୍ଜନ୍ମ ନେଇଥାଏ । ପ୍ରତ୍ୟେକ ମନୁଷ୍ୟ ତା'ର କର୍ମର ପରିଣାମ ସ୍ୱରୂପ ପରବର୍ତ୍ତୀ ଜନ୍ମ ନିଏ । ପ୍ରତ୍ୟେକ ପ୍ରାଣୀ ଜନ୍ମ, ମୃତ୍ୟୁ ଚକ୍ରରେ ମୁକ୍ତି ବା ମୋକ୍ଷଲାଭ ପର୍ଯ୍ୟନ୍ତ ଘୂରି ବୁଲୁଥାଏ ।

ଜୈନ ଧର୍ମର ପ୍ରତିଷ୍ଠାତା ହେଉଛନ୍ତି ମହାବୀର (ଖ୍ରୀ.ପୂ.୫୯୯ ରୁ ଖ୍ରୀ.ପୂ ୫୨୭) । ଜୈନ ମାନଙ୍କର ବିଶ୍ୱାସ ଅନୁଯାୟୀ ମହାବୀରଙ୍କ ପୂର୍ବରୁ ୨୩ ଜଣ ଜୀନ ଏହି ଧର୍ମର ମୂଳ ଭିତ୍ତି ସ୍ଥାପନ କରିଥିଲେ ( ସେହି ଜୀନ ବା ତୀର୍ଥଙ୍କରଗଣ ଐତିହାସିକ ବ୍ୟକ୍ତି ନୁହଁନ୍ତି) ଓ ମହାବୀର ସେହି ଧର୍ମର ମୌଳିକ ଭାବନା ଜନ ମାନସରେ ବ୍ୟକ୍ତ କରିଥିଲେ । ଏହି ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରତ୍ୟେକ ପ୍ରାଣୀ ଭିତରେ ଏକ ଆତ୍ମା ବା ଜୀବ ରହିଛି ଯାହା ଅମର ଓ ସନାତନ । ଶରୀରର ଦେହାନ୍ତ ହେଲେ ମଧ୍ୟ ଆତ୍ମାର ମୃତ୍ୟୁ ନାହିଁ । ତେବେ ଜୀବର ଅବିଦ୍ୟା ଯୋଗୁଁ ତାହା ଭିତରେ ଆସକ୍ତି ସୃଷ୍ଟି ହୁଏ, ଏହି ଆସକ୍ତି ଯୋଗୁଁ ଜୀବ ପୁଦ୍‌ଗଳ (ବସ୍ତୁ ବା ଶରୀର) ସହିତ ସଂଶ୍ଳିଷ୍ଟ ହୁଏ ଓ ଏଥିରୁ ବନ୍ଧନ ସୃଷ୍ଟି ହୋଇଥାଏ । ବନ୍ଧନ ମୁକ୍ତ ହେଲେ ଆସକ୍ତି ଚାଲିଯାଏ ଓ ଜୀବ ଅନନ୍ତ ଶକ୍ତି, ଅନନ୍ତ ଶ୍ରଦ୍ଧା, ଅନନ୍ତ ଜ୍ଞାନ ଓ ଅନନ୍ତ ଆନନ୍ଦର ଅଧିକାରୀ ହୋଇ ମୁକ୍ତି ଲାଭକରେ । ତେବେ ଏହି ଧର୍ମରେ କୌଣସି ଈଶ୍ୱର ବିଶ୍ୱାସ ନାହିଁ, ତେଣୁ ମୋକ୍ଷ ଦ୍ୱାରା ଈଶ୍ୱର ପ୍ରାପ୍ତି ପରିବର୍ତ୍ତେ ଜୀବ ଏହି ଅନନ୍ତ ଗୁଣର ଅଧିକାରୀ ହୁଏ ଯାହାକୁ ଅନନ୍ତ-ଚତୁଷ୍ଟୟ କୁହାଯାଏ । ଜୀବ ଥରେ ଅନନ୍ତ-ଚତୁଷ୍ଟୟ ପ୍ରାପ୍ତ ହେଲେ ଏହା ତାହା ପାଖରେ ଚିରସ୍ଥାୟୀ ହୋଇ ରହେ ।

ଭାରତରେ ସୃଷ୍ଟ ଅନ୍ୟ ଏକ ଧର୍ମ ହେଲା ବୌଦ୍ଧଧର୍ମ ଓ ଗୌତମ ବୁଦ୍ଧ (ଖ୍ରୀ.ପୂ.୫୬୦-ଖ୍ରୀ.ପୂ୪୮୦) ଏହି ଧର୍ମର ପ୍ରବର୍ତ୍ତକ । ବୌଦ୍ଧ ଧର୍ମରେ ଆତ୍ମା କିଛି ନିତ୍ୟ ସତ୍ତା ନୁହେଁ ଓ ଏହି ଯୋଗୁଁ ଏହାର ମତକୁ ନୈରାତ୍ମ୍ୟବାଦ କୁହାଯାଏ । ଆତ୍ମା ହେଉଛି ଚେତନାର ପ୍ରବାହ । ବୌଦ୍ଧ ମତରେ କୌଣସି କିଛି ଶାଶ୍ୱତ ବା ଚିରନ୍ତନ ନୁହେଁ, ପ୍ରତ୍ୟେକ ବସ୍ତୁ ଅବିରତ ବଦଳୁଥାଏ ଅର୍ଥାତ୍ କ୍ଷଣକୁ କ୍ଷଣ ପରିବର୍ତ୍ତିତ ହେଉଥାଏ । ସୁତରାଂ ଶାଶ୍ୱତ, ଚିରନ୍ତନ ବା ଅନିତ୍ୟ ସତ୍ତାର

ଭାବନା ଏହି ଧର୍ମରେ ନାହିଁ । ତେବେ ନିରନ୍ତର ଭାବରେ ନିତ୍ୟ ପ୍ରବାହ ଚାଲୁ ରହିଥାଏ । ନଦୀର ଜଳଧାରା ଯେପରି ଚିର ପ୍ରବାହିତ ସେହିପରି ବ୍ୟକ୍ତିର ଆତ୍ମା ହେଉଛି ଚେତନାର ଚିରପ୍ରବାହ । ଗୋଟିଏ ଅବସ୍ଥାରୁ ଅନ୍ୟ ଅବସ୍ଥାର ତତ୍କ୍ଷଣାତ ଉତ୍ପତ୍ତି ହୁଏ ଯେପରି ଦୀପର ଶିଖାରେ ଆମେ ଦେଖୁ । ଏପରିକି ମୃତ୍ୟୁରୁ ପୁନଶ୍ଚ ପୁନର୍ଜନ୍ମର ଅବସ୍ଥା ସୃଷ୍ଟି ହୁଏ । ବୌଦ୍ଧଧର୍ମରେ ଜୀବନର ଅନ୍ତିମ ଲକ୍ଷ୍ୟ ନିର୍ବାଣ ବୋଲି କୁହାଯାଏ, ଯାହା ଏକ ଦୁଃଖରହିତ ଅବସ୍ଥାକୁ ବୁଝାଏ । ତେବେ ନିର୍ବାଣ ଏକ ଶୂନ୍ୟତାକୁ ବା ଏକ ଅବର୍ଣ୍ଣନୀୟ ଅବସ୍ଥାକୁ ବୁଝାଏ ସେ ନେଇ ବୌଦ୍ଧମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଛି ଯେହେତୁ ବୁଦ୍ଧ କୌଣସି ତାତ୍ତ୍ୱିକ ପ୍ରଶ୍ନର କିଛି କାଞ୍ଚନିକ ଉତ୍ତର ଦେବାକୁ ଚାହିଁ ନାହାନ୍ତି ।

ଶିଖ୍ ଧର୍ମ ହେଉଛି ଭାରତରେ ସୃଷ୍ଟ ଅନ୍ୟ ଏକ ଧର୍ମ ଓ ଗୁରୁ ନାନକ (୧୪୬୯-୧୫୩୯) ଏହି ଧର୍ମର ପ୍ରତିଷ୍ଠାତା । ଏହି ଧର୍ମର ଆଦି ଗୁରୁ ନାନକ ଓ ଦଶମ ଗୁରୁ ଗୋବିନ୍ଦ ସିଂହ । ସେ ହିଁ ଏହି ଧର୍ମରେ ଶେଷ ଗୁରୁ ବୋଲି ନିଜକୁ ଘୋଷଣା କରିଥିଲେ । ଏହି ଧର୍ମର ପବିତ୍ର ଗ୍ରନ୍ଥ ହେଉଛି ଗ୍ରନ୍ଥ ସାହିବ । ଶିଖ୍ ଧର୍ମାନୁଯାୟୀ ପ୍ରତ୍ୟେକ ପ୍ରାଣୀଠାରେ ପ୍ରାଣ ଓ ଚୈତନ୍ୟ ରହିଛି, ହେଲେ ମନୁଷ୍ୟ ପାଖରେ ଏହା ସହ ବିବେକ ଓ ଆତ୍ମା ରହିଛି । ଆତ୍ମା ଈଶ୍ୱରଙ୍କ ଅଙ୍ଗବିଶେଷ ଓ ପ୍ରତି ଆତ୍ମା ଅନ୍ୟ ଆତ୍ମାଠାରୁ ପୃଥକ୍ । ନଦୀରେ ଅସଂଖ୍ୟ ଜଳବିନ୍ଦୁ ଥିଲାପରି ଓ ଦୁଇଟି ଜଳବିନ୍ଦୁ ପରସ୍ପରଠାରୁ ପୃଥକ୍ ହୋଇଥିଲା ପରି ଦୁଇଟି ଆତ୍ମା ପରସ୍ପରଠାରୁ ଭିନ୍ନ । ଆତ୍ମା ଈଶ୍ୱରୀୟ ଚେତନାର ଅଙ୍ଗବିଶେଷ ହୋଇଥିଲେ ମଧ୍ୟ କାମ, ଲୋଭ, ଅହଙ୍କାର ଆଦି ଯୋଗୁଁ ଆତ୍ମା ଅପବିତ୍ର ହୁଏ ଓ ଜନ୍ମ ମୃତ୍ୟୁ ଶୃଂଖଳରେ ଛନ୍ଦି ହୋଇ ରୁହେ । ଆତ୍ମାକୁ ପବିତ୍ର କରିବାକୁ ହେଲେ ମନକୁ ନିୟନ୍ତ୍ରଣରେ ରଖି ଗୁରୁଙ୍କ ପ୍ରତି ଧ୍ୟାନ ଦେବାକୁ ହୁଏ । ତେବେ ଶିଖ୍ ଧର୍ମର ଏକ ବିଶିଷ୍ଟ ଭାବନା ହେଉଛି ଯେ ମୃତ୍ୟୁପରେ ଧର୍ମରାଜ ଜୀବର କର୍ମଫଳକୁ ବିଚାର କରି ତା'ର ମୁକ୍ତି ବା ପୁନର୍ଜନ୍ମର ସ୍ଥାନ ଓ ସ୍ଥିତି ବିଷୟରେ ନିଷ୍ପତ୍ତି କରନ୍ତି । ଏହା ମୁଖ୍ୟତଃ ଭଗବାନଙ୍କ ନିର୍ଦ୍ଦେଶରେ ସମାହିତ ହୁଏ ।

ଭାରତ ଭୂଖଣ୍ଡରେ ସୃଷ୍ଟ ଧର୍ମମାନଙ୍କରେ ଆତ୍ମାର ସ୍ଥିତି, ସ୍ୱରୂପ ଓ ମୁକ୍ତି ଇତ୍ୟାଦି ଭାବନା କ୍ଷେତ୍ରରେ ପାର୍ଥକ୍ୟ ରହିଥିଲେ ମଧ୍ୟ ସମସ୍ତଙ୍କ ମଧ୍ୟରେ ଏକ ସାଧାରଣ ଲକ୍ଷଣ ରହିଛି ଯାହା ହେଲା ପୁନର୍ଜନ୍ମ । ଏହି ଭାବନା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ଜନ୍ମ ମୃତ୍ୟୁ ଚକ୍ରରେ ଘୂରିବୁଲେ, ଅର୍ଥାତ୍, ଜନ୍ମ ପରେ ମୃତ୍ୟୁ, ମୃତ୍ୟୁ ପରେ ପୁନଶ୍ଚ ଜନ୍ମ... । ମୁକ୍ତି, ମୋକ୍ଷ, ନିର୍ବାଣ ପାଇବା ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ଏହି ଚକ୍ର ଭିତରେ ଘୂରିବୁଲେ । ଭଗବତ୍ ଗୀତାରେ ଜନ୍ମାନ୍ତର ଭାବନାକୁ ଅତି କାବ୍ୟିକ ଓ ଆବେଗପୂର୍ଣ୍ଣ ଭାଷାରେ ବ୍ୟକ୍ତ କରାଯାଇଛି । ଆତ୍ମା ଅମର, ଅସ୍ତ୍ର ଏହାକୁ ଛେଦନ କରିପାରେ ନାହିଁ, ଅଗ୍ନି ଏହାକୁ ଜଳାଇପାରେ ନାହିଁ, ଜଳ ଏହାକୁ ଭିଜାଇ ପାରେ ନାହିଁ କିମ୍ବା ବାୟୁ ଏହାକୁ ଶୁଖାଇ ପାରେ ନାହିଁ । ଏହା ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଲେଦ୍ୟ ଓ ଅଶୋଷ୍ୟ । ଏହା ନିତ୍ୟ ଓ ସନାତନ । ପୁନଶ୍ଚ ବ୍ୟକ୍ତି ଯେପରି ପୁରୁଣା ବସ୍ତ୍ର ତ୍ୟାଗ କରି ନୂତନ ବସ୍ତ୍ର ଗ୍ରହଣ କରେ ଜୀବାତ୍ମା ସେହିପରି ପୁରାତନ ବା ଜରାଜୀର୍ଣ୍ଣ ଶରୀରକୁ ତ୍ୟାଗ କରି ନୂତନ ଶରୀର ଗ୍ରହଣ କରିଥାଏ ।

ଧାର୍ମିକ ପରିଭାଷାରେ ଆତ୍ମାର ଯେଉଁ ବର୍ଣ୍ଣନା ସାଧାରଣତଃ ରହିଛି ସେଥିରୁ ଏହା ସ୍ପଷ୍ଟ ହୁଏ ଯେ ଆତ୍ମା ଏକ ଚେତନଶୀଳ 'ସତ୍ତା' ଯାହା ଶରୀର ବ୍ୟତୀତ ରହିପାରିବ । ଏହି ମାନଦଣ୍ଡରେ ପ୍ରତ୍ୟେକ ପ୍ରାଣୀ ବା ବ୍ୟକ୍ତି ଦୁଇଟି ସତ୍ତାର ସମାହାର, ଯଥା ଶରୀର ଓ ଆତ୍ମା । ଶରୀର ଓ ଆତ୍ମା ଦୁଇଟି ପରସ୍ପର ବିପରୀତ ତତ୍ତ୍ୱ ଓ ସତ୍ତା । ଶରୀରକୁ ଦେଖି ହେବ,

ସ୍ପର୍ଶ କରିହେବ କାରଣ ଏହାର ବିସ୍ତୃତି ରହିଛି । ଅପର ପକ୍ଷରେ ଆତ୍ମା ହେଉଛି ଚେତନଶୀଳ ସତ୍ତା ଯାହାକୁ ସ୍ପର୍ଶ କରିହେବ ନାହିଁ ବା ଦେଖି ହେବ ନାହିଁ । ପୁନଶ୍ଚ ଏହି ବିଶ୍ୱାସ ଆଧାରରେ ଆତ୍ମାର ଶରୀରବିହୀନ ଏକ ରହସ୍ୟମୟ ସ୍ଥିତି ହିଁ ଏହାର ଲକ୍ଷ୍ୟ । ବିଭିନ୍ନ ଧର୍ମ ମାନଙ୍କରେ ଜୀବନର ଅନ୍ତିମ ପରିଣତିକୁ ମୋକ୍ଷ ବା ନିର୍ବାଣ ବୋଲି କଳ୍ପନା କରାଯାଇଛି । କେତେକ ଧର୍ମରେ ସ୍ୱଦେହ ମୁକ୍ତିର ଭାବନା ରହିଛି ଓ ଅନ୍ୟ କେତେକ ଧର୍ମରେ ବିଦେହ ମୁକ୍ତିର ପରିକଳ୍ପନା ରହିଛି । ମୃତ୍ୟୁ ପରେ ବିଦେହ ମୁକ୍ତି ପାଇବା ପୂର୍ବରୁ ବଞ୍ଚିଥିବା ଅବସ୍ଥାରେ ମଧ୍ୟ ଜଣେ ମୁକ୍ତ ଜୀବ ହୋଇପାରିବ ବୋଲି ହିନ୍ଦୁ, ବୌଦ୍ଧ ଓ ଶିଖ ଧର୍ମରେ ବିଶ୍ୱାସ ଥିବାବେଳେ ଜୈନମାନେ କେବଳ ବିଦେହ ମୁକ୍ତିରେ ହିଁ ବିଶ୍ୱାସ କରିଛନ୍ତି । ମୁକ୍ତ ଆତ୍ମାର ସ୍ଥିତି ନେଇ ମଧ୍ୟ ଧର୍ମ ମାନଙ୍କରେ ମତଭେଦ ରହିଛି । କେତେକ ଧର୍ମ ମତରେ ଆତ୍ମା ମୁକ୍ତି ଲାଭ କରିବା ଦ୍ୱାରା ତାହା ଈଶ୍ୱରଙ୍କ ଠାରେ ଲୀନ ହୋଇଯାଏ ଓ ଆତ୍ମାର ସ୍ୱତନ୍ତ୍ର ଅସ୍ତିତ୍ୱ ଲୋପପାଏ । ବିଶେଷକରି ହିନ୍ଦୁଧର୍ମର କେତେକ ଧାରାରେ ତଥା ଶିଖ୍ ଧର୍ମରେ ଏହି ପ୍ରକାରର ବିଶ୍ୱାସ ରହିଛି । ଅଥଚ ଜୈନ ଧର୍ମରେ ମୁକ୍ତିଦ୍ୱାରା ଜନ୍ମ ମୃତ୍ୟୁର ଚକ୍ର କେବଳ ବନ୍ଦ ହୋଇଯାଏ ଅଥଚ ଆତ୍ମାର ସ୍ୱତନ୍ତ୍ର ସତ୍ତା ବିଦ୍ୟମାନ ରହେ ।

ମୁକ୍ତିର ସ୍ୱରୂପ ଓ ମୁକ୍ତିଦ୍ୱାରା ଆତ୍ମାର ଅସ୍ତିତ୍ୱ ନେଇ ଧର୍ମ ମାନଙ୍କରେ ମତ ପାର୍ଥକ୍ୟ ରହିଛି । ତେବେ ଆତ୍ମାର ସ୍ୱତନ୍ତ୍ର ସ୍ଥିତିର ପରିକଳ୍ପନା କିପରି ବୁଝିହେବ ? ଆତ୍ମା ଯେହେତୁ ସ୍ୱରୂପରେ ଚେତନା ଓ ଚେତନାର କୌଣସି ଶାରୀରିକ ସ୍ଥିତି ବା ବିସ୍ତୃତି ନାହିଁ, ସେ କ୍ଷେତ୍ରରେ ଆତ୍ମା ମାନଙ୍କ ଭିତରେ ଥିବା ସ୍ୱତନ୍ତ୍ରତାକୁ କିପରି ବ୍ୟାଖ୍ୟା କରାଯିବ ? ଶରୀର ବ୍ୟତୀତ ଆତ୍ମାର ଅସ୍ତିତ୍ୱକୁ ଓ ବ୍ୟକ୍ତିର ତାଦାତ୍ମ୍ୟକୁ (identity) ବୁଝାଇବାର କୌଣସି ମାନଦଣ୍ଡ ରହିଛି କି ? ଚେତନା ଏକ କ୍ରିୟା ନା ଏକ ସତ୍ତା ? ଧର୍ମମାନଙ୍କରେ ଚେତନାକୁ ଏକ ସତ୍ତା ଭାବରେ ଗ୍ରହଣ କରାଯାଏ । ଏହି ସ୍ଥିତିରେ ଶରୀରଠାରୁ ପୃଥକ୍ ହୋଇ ସ୍ୱତନ୍ତ୍ର ଅସ୍ତିତ୍ୱର ଅଧିକାରୀ ଥିବାର ଭାବନାକୁ କିପରି ବୋଧଗମ୍ୟ କରାଯିବ ? ବ୍ୟକ୍ତିମାନଙ୍କୁ ପରସ୍ପରଠାରୁ ପୃଥକ୍ କରିବାର ମାନଦଣ୍ଡ ହେଉଛି ଶାରୀରିକ ନିରବଚ୍ଛିନ୍ନତା । ପ୍ରତ୍ୟେକ ବ୍ୟକ୍ତି ଅନ୍ୟମାନଙ୍କଠାରୁ ପୃଥକ୍ କାରଣ ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ଶାରୀରିକ ବିସ୍ତୃତି ରହିଛି । ବ୍ୟକ୍ତିମାନଙ୍କର ଚିନ୍ତା, ମାନସିକ ସାମର୍ଥ୍ୟ ଓ ଦକ୍ଷତାକୁ ପରସ୍ପରଠାରୁ ପୃଥକ୍ କରିବାର ଅବକାଶ ହେଉଛି ସେମାନଙ୍କ ଶାରୀରିକ ସ୍ଥିତି । ପ୍ରତ୍ୟେକ ବ୍ୟକ୍ତି ଜନ୍ମ ପରଠାରୁ ମୃତ୍ୟୁପର୍ଯ୍ୟନ୍ତ ଯାହା ସବୁ ମାନସିକ ସାମର୍ଥ୍ୟ, କ୍ରିୟା ଓ ଆବେଗ ପ୍ରକାଶ କରିଥାଏ ଏହା ତା'ର ଶାରୀରିକ ସ୍ଥିତି ଦେଇ ଅଭିବ୍ୟକ୍ତ ହେଉଥାଏ । ତେବେ ଶାରୀରିକ ସ୍ଥିତିର ଅଭାବରେ ଆତ୍ମାମାନଙ୍କର ଅବସ୍ଥିତିକୁ କିପରି ପରସ୍ପରଠାରୁ ପୃଥକ୍ କରାଯାଇପାରିବ ? ଏସବୁର କିଛି ସନ୍ତୋଷ ଜନକ ଉତ୍ତର ଧର୍ମର ଆଧାର ଭିତରେ ଦେବା ସମ୍ଭବ କି ? ଆତ୍ମାର ଶରୀରବିହୀନ ଅସ୍ତିତ୍ୱ, ମୁକ୍ତି, ନିର୍ବାଣ ଇତ୍ୟାଦି ପ୍ରସଙ୍ଗ ଗୁଡିକ କୌଣସି ଆନୁଭବିକ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଏହି ସବୁ ବିଶ୍ୱାସ କେବଳ ବିଭିନ୍ନ ତାତ୍ତ୍ୱିକ ପରିକଳ୍ପନା ମାତ୍ର । ପ୍ରତ୍ୟେକ ଧର୍ମ ଜୀବନ ଓ ଜଗତକୁ ଯେଉଁପରି ଅବବୋଧ କରିବାକୁ ପ୍ରୟାସ କରିଛି ସେହି ଆଧାରରେ ତା'ର ତାତ୍ତ୍ୱିକ ବିଚାର ଗୁଡିକୁ ବ୍ୟକ୍ତ କରିଛି । ଧର୍ମମାନଙ୍କର ତୁଳନାତ୍ମକ ବ୍ୟାଖ୍ୟା ପୃଷ୍ଠଭୂମିରେ ସେମାନଙ୍କର ତାତ୍ତ୍ୱିକ ବିଚାର ଗୁଡିକର ଭିନ୍ନତାକୁ ଜାଣି ହୋଇଥାଏ । ଯେହେତୁ ଏଗୁଡିକ ଆନୁଭବିକ ବା ପ୍ରାମାଣିକ ଆଧାର ଉପରେ ପ୍ରତିଷ୍ଠିତ ନୁହେଁ ସେଗୁଡିକ କେବଳ ତାତ୍ତ୍ୱିକ ବିଚାର ଯାହାର ଆଧାର ହେଉଛି ଅନୁମାନ ବା କଳ୍ପନା ।

ତେବେ ଆତ୍ମା, କର୍ମଫଳ ଓ ମୁକ୍ତି ବିଷୟକ ପ୍ରସଙ୍ଗ ଧର୍ମୀୟ ପରିସରରୁ ଯାଇ ଦର୍ଶନ ପରିସରରେ ମଧ୍ୟ ଚର୍ଚ୍ଚାର ବିଷୟ ହୋଇଛି । ଆମେ ଏହି ପରିପ୍ରେକ୍ଷୀରେ ଭାରତୀୟ ଦର୍ଶନ ପରିସରରେ ଆତ୍ମାର ଅବବୋଧ କିପରି ବ୍ୟକ୍ତ ହୋଇଛି ତାହାର ସଂକ୍ଷିପ୍ତ ଆଲୋଚନା କରିବା ।

( ୨ )

ଆତ୍ମା ଓ ପୁନର୍ଜନ୍ମ ଭାବନା ଭାରତୀୟ ଦର୍ଶନଧାରାର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତୀତି ଅଟେ । କେବଳ ଲୋକାୟତ ଦର୍ଶନକୁ ଛାଡି ଦେଲେ ଆସ୍ତିକ ଓ ନାସ୍ତିକ ପରଂପରାର ସମସ୍ତ ବିଦ୍ୟାଳୟରେ ଏହି ଭାବନା ରହିଛି ଯେ ମଣିଷର ଏକ ଆତ୍ମା ରହିଛି ଓ ଆତ୍ମା ତା'ର କର୍ମଫଳ ଅନୁଯାୟୀ ପରବର୍ତ୍ତୀ ଜନ୍ମନିଏ । ବ୍ୟକ୍ତିର ବର୍ତ୍ତମାନ ଜୀବନର କର୍ମ ତା'ର ଭବିଷ୍ୟତ ଜୀବନ ପାଇଁ ନିର୍ଣ୍ଣାୟକ । ଏହି ଭାବନାର କେତେକ ଆପେକ୍ଷିକ ମହତ୍ତ୍ୱ ଥିବା ମନେହୁଏ । ତେବେ ଭାରତୀୟ ଦର୍ଶନ ମାନଙ୍କର ବିଦ୍ୟାଳୟ ମାନଙ୍କରେ ଆତ୍ମା ଓ ପୁନର୍ଜନ୍ମ ବିଶ୍ୱାସକୁ ଗ୍ରହଣ କରିବା ପରିପ୍ରେକ୍ଷୀରେ ଜୀବନର କେତେକ ସମସ୍ୟା, ଘନଘଟା ଓ ବୈଷମ୍ୟକୁ ବୁଝିବାରେ ଏହି ପ୍ରକଳ୍ପ ସାହାଯ୍ୟ କରିଥାଏ । ଭାରତୀୟ ଦର୍ଶନ ବିଦ୍ୟାଳୟ ଗୁଡିକ ଆତ୍ମା ଓ ପୁନର୍ଜନ୍ମ ପ୍ରକଳ୍ପ ଆଧାରରେ ଜୀବନର କେତେକ ରହସ୍ୟକୁ ବୁଝିବାକୁ ପ୍ରୟାସ କରିଥାନ୍ତି । ବିଶେଷକରି ବ୍ୟକ୍ତି ବ୍ୟକ୍ତି ଭିତରେ ଯେଉଁ ପାର୍ଥକ୍ୟ ସାମାଜିକ ଜୀବନଧାରାରେ ଆମେ ଦେଖୁ ତାହାର ସମ୍ଭାବ୍ୟ ବ୍ୟାଖ୍ୟା କ୍ଷେତ୍ରରେ ପୁନର୍ଜନ୍ମ ଭାବନା ସହାୟକ ହୋଇଥାଏ । ଆମ ଅନୁଭୂତିରେ ଆମେ ଦେଖେ ଯେ କେହି ବୁଦ୍ଧିମାନ, ପ୍ରତିଭାବାନ ତ କେହି ନିର୍ବୁଦ୍ଧିଆ, କାହାର ଜୀବନସାରା ସୁଖ ତ କାହାର ଜୀବନବ୍ୟାପୀ ଦୁଃଖ ଯନ୍ତ୍ରଣା, କେହି ସୁସ୍ଥ ସବଳ ଦୀର୍ଘାୟୁ ତ କେହି ଦୂରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ଓ ଅଳ୍ପାୟୁ, କେହି ଭଲ ପରିବାରରେ ଜନ୍ମ ନିଏ ତ କେହି ଅତ୍ୟନ୍ତ ଦୁଃସ୍ଥ ପରିବାରରେ ଜନ୍ମ ହୋଇ ଜୀବନ ଯନ୍ତ୍ରଣାରେ ଜର୍ଜରିତ ହୁଏ । ଏହି ସବୁ ପାର୍ଥକ୍ୟ ଓ ସାମାଜିକ ବୈଷମ୍ୟକୁ ବୁଝିବା ପାଇଁ ଏକ ସହଜ ବ୍ୟାଖ୍ୟା ହେଉଛି ମଣିଷର ଏହି ସ୍ଥିତି ପୂର୍ବଜନ୍ମର କର୍ମର ପରିଣତି ମାତ୍ର ଓ ଅଲଂଘ୍ୟ । ପୁନଶ୍ଚ ଏହା ମଧ୍ୟ କାଁ ଭାଁ ଶୁଣାଯାଏ ଯେ ଗୋଟିଏ ପିଲା ତାର ପୂର୍ବ ଜନ୍ମର କାହାଣୀ ସ୍ମରଣ କରି ପାରୁଛି, ସେ ଏପରି କେତେକ ଘଟଣା କହୁଛି ଯାହା ତା'ର ବର୍ତ୍ତମାନ ଜୀବନର କାହାଣୀ ନୁହେଁ । ସୁତରାଂ ଏହା ବିଶ୍ୱାସ କରିବାକୁ ସହଜ ହୁଏ ଯେ ପିଲାଟି ତାର ପୂର୍ବଜନ୍ମର ଘଟଣାକୁ ସ୍ମରଣ କରିପାରୁଛି ଓ ଏହିପରି ଜାତିସ୍ମର ମାନେ ରହିଛନ୍ତି । ପୁନଶ୍ଚ ଧର୍ମମାନଙ୍କରେ ଏହି ବିଶ୍ୱାସ ରହିଛି ଯେ ସିଦ୍ଧ ଯୋଗୀମାନେ ସେମାନଙ୍କ ପୂର୍ବ ଜନ୍ମର ବୃତାନ୍ତକୁ ଜାଣିପାରନ୍ତି । ଜାତିସ୍ମର କାହାଣୀ ଓ ଯୋଗୀ ମାନଙ୍କର ଆଧ୍ୟାତ୍ମିକ ସିଦ୍ଧିଦ୍ୱାରା ପୂର୍ବଜନ୍ମର ସ୍ମୃତି ବିଷୟ ଲୋକବିଶ୍ୱାସ ଭିତରେ ରହିବା ଦେଖାଯାଏ । ସେହିପରି ଆସ୍ତିକ ପରଂପରାର ସମସ୍ତ ଦର୍ଶନ ବିଦ୍ୟାଳୟ ( ଏହା ଷଡ୍‌ଦର୍ଶନ ଯଥା ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ମୀମାଂସା ଓ ବେଦାନ୍ତ) ବେଦର ପ୍ରାମାଣିକତାକୁ ଗ୍ରହଣ କରନ୍ତି ଓ ଯେହେତୁ ଶ୍ରୁତି ଶାସ୍ତ୍ରରେ ଆତ୍ମାର ଅମରତ୍ୱ ଓ ପୁନର୍ଜନ୍ମର ଭାବନା ରହିଛି ସେହି ଦୃଷ୍ଟିରୁ ଏହି ସବୁ ବିଦ୍ୟାଳୟ ଆତ୍ମା ଓ ପୁନର୍ଜନ୍ମ ପ୍ରତୀତିକୁ ଅନାୟାସରେ ସ୍ୱୀକାର କରିନିଅନ୍ତି । ମୋଟ ଉପରେ କହିଲେ ବ୍ୟକ୍ତି-ବ୍ୟକ୍ତି ଭିତରେ ବୈଷମ୍ୟ, ଜାତିସ୍ମର ଓ ଶବ୍ଦ ପ୍ରମାଣ (ଶ୍ରୁତିଗ୍ରନ୍ଥର ପ୍ରାମାଣିକତା ଆଧାରରେ) ଭିତ୍ତିରେ ଭାରତୀୟ ଦର୍ଶନର ଆସ୍ତିକ ବିଦ୍ୟାଳୟମାନ ଏହି ଭାବନାକୁ ସ୍ୱୀକାର କରିଛନ୍ତି ।

ଏହି ପୃଷ୍ଠଭୂମିରେ ଭାରତୀୟ ଦର୍ଶନରେ ତିନୋଟି ପ୍ରସଙ୍ଗ ଉପରେ ଗଭୀର ଚର୍ଚ୍ଚା ହୋଇ ଆସିଛି ଯଥା ଆତ୍ମା ଓ ଏହାର ଅମରତ୍ୱ, ପୁନର୍ଜନ୍ମ ଓ କର୍ମସିଦ୍ଧାନ୍ତ । ତେବେ ଆତ୍ମା ଓ ପୁନର୍ଜନ୍ମ କେତେଦୂର ଯୁକ୍ତିଶୀଳ ଆଧାରରେ ବ୍ୟାଖ୍ୟା କରାଯାଇ ପାରିବ ତାହା ଆମେ ଏଠାରେ ଆଲୋଚନା କରିବା । କର୍ମସିଦ୍ଧାନ୍ତ (ପ୍ରତ୍ୟେକ ବ୍ୟକ୍ତି କର୍ମର ଫଳ ଏ ଜନ୍ମରେ ହେଉ ବା ପରବର୍ତ୍ତୀ ଜନ୍ମମାନଙ୍କରେ ହେଉ ଭୋଗ କରିବ) ଏହି ଭାବଧାରା ସହ ସଂଶ୍ଳିଷ୍ଟ ହେଲେ ମଧ୍ୟ ପ୍ରବନ୍ଧର ଆକାର ଦୃଷ୍ଟିରୁ ସେ ପ୍ରସଙ୍ଗଟିକୁ ଆଲୋଚନା କରିବା ନାହିଁ । ଆତ୍ମାର ସ୍ୱରୂପ ଓ ପୁନର୍ଜନ୍ମର ଭାବନାକୁ କେତେ ଦୂର ଅର୍ଥପୂର୍ଣ୍ଣ ଭାବରେ ବ୍ୟାଖ୍ୟା କରାଯାଇ ପାରିବ ତାହା ବିଚାରକୁ ନିଆଯାଉ । ଆମେ ପ୍ରଥମେ ଶେଷୋକ୍ତ ପ୍ରସଙ୍ଗଟିକୁ ବିଚାର କରିବା ଓ ପରେ ଆତ୍ମାର ସ୍ୱରୂପ ବିଷୟକୁ ଯିବା ।

ପୁନର୍ଜନ୍ମବାଦର ଭାବନା ହେଉଛି– ପ୍ରତ୍ୟେକ ବ୍ୟକ୍ତିର ଏକ ସୁଦୀର୍ଘ ଇତିହାସ ରହିଛି । ଅର୍ଥାତ୍ ଯେ ବର୍ତ୍ତମାନ କ ହୋଇଛି ସେ ଅତୀତରେ ଅ, ଆ, ଇ... ଥିଲା ଓ ଭବିଷ୍ୟତରେ ଖ, ଗ, ଘ... ହୋଇ ଚାଲିବ ଯେପର୍ଯ୍ୟନ୍ତ ସେ ମୁକ୍ତି ପାଇ ନାହିଁ । ଧରି ନିଆଯାଉ ଯେ ଅ ରୁ ଆରମ୍ଭ କରିଥିବା ବ୍ୟକ୍ତିର ଆତ୍ମା ବିଭିନ୍ନ ଜନ୍ମ ନେଇ କ ପାଖରେ ପହଞ୍ଚିଛି ଓ ଭବିଷ୍ୟତରେ ଖ, ଗ.... ହୋଇ ହ ପାଖରେ ମୁକ୍ତିଲାଭ କରିବ । ତେବେ ପ୍ରଶ୍ନ ହେଉଛି ଅ... ରୁ ଜଣେ କ... ପର୍ଯ୍ୟନ୍ତ ଆସିଛି ବୋଲି କ'ଣ ଆଧାର ଅଛି ? ଜଣେ ବ୍ୟକ୍ତିକୁ ସେହି ବ୍ୟକ୍ତି ବୋଲି କହିବାର ମାନଦଣ୍ଡ କ'ଣ ହୋଇପାରେ ? ବର୍ତ୍ତମାନ ଯେ କ ହୋଇଛି ସେ ଯେ ଅତୀତରେ ଅ,ଆ,ଇ...ଥିଲା ଏହାକୁ କିପରି ବିଶ୍ୱାସ କରାଯିବ ? ଜଣେ ବ୍ୟକ୍ତିକୁ ସେହି ବ୍ୟକ୍ତି ବୋଲି ଚିହ୍ନିତ କରିବା ପାଇଁ ସାଧାରଣତଃ ବିଭିନ୍ନ ମାନଦଣ୍ଡ ରହିପାରେ । ଗୋଟିଏ ମାନଦଣ୍ଡ ହେଉଛି ସ୍ମୃତି ବା ସ୍ମରଣ ଶକ୍ତି । ଗୋଟିଏ ଜୀବନରେ ଜଣେ ବ୍ୟକ୍ତି ତା'ର ସ୍ମୃତି ଭିତରେ ବହୁ କଥା ଧରି ରଖିଥାଏ ଓ କେତେକ କଥା ମଧ୍ୟ ପାସୋର ହୋଇଯାଏ । ଚ ବ୍ୟକ୍ତିଟି ବର୍ତ୍ତମାନ ସତୁରୀ ବର୍ଷରେ ପଦାର୍ପଣ କରିଥିଲେ ମଧ୍ୟ ସେ ତାଙ୍କ ତିନିବର୍ଷ ବୟସର ଘଟଣା ସବୁକୁ ମନେ ରଖିଛନ୍ତି । ଏହି ସାଦୃଶ୍ୟରେ ବ୍ୟକ୍ତିର ଅଭିନ୍ନତା ବା ତାଦାତ୍ମ୍ୟକୁ ବୁଝାଯାଇ ପାରିବ କି ? ଚ ଙ୍କର ମନେ ଅଛି ଯେ ତାଙ୍କୁ ତିନି ବର୍ଷ ହୋଇଥିଲା ବେଳେ ତାଙ୍କର ଭାଇ ଛ ଜନ୍ମ ହୋଇଥିଲେ, ଚ ଚାରିବର୍ଷରେ ପାଠପଢ଼ା ଆରମ୍ଭ କରିଥିଲେ, ତାଙ୍କୁ ପାଞ୍ଚବର୍ଷ ବେଳେ ତାଙ୍କର ଜେଜେବାପା ମୃତ୍ୟୁବରଣ କରିଥିଲେ.... ଇତ୍ୟାଦି । ଚ ଜନ୍ମ ପରଠାରୁ ଆଜି ସତୁରି ବର୍ଷରେ ପଦାର୍ପଣ କରିଥିଲେ ମଧ୍ୟ ତାଙ୍କର ସ୍ମୃତି ଶକ୍ତିକୁ ଆଧାର କରି ଚ ଯେ ଜନ୍ମଠାରୁ ଗୋଟିଏ ବ୍ୟକ୍ତି ଏହା କୁହାଯାଇ ପାରିବ । ତେବେ ଏବେ ଯେ କ ହୋଇଛନ୍ତି ତାଙ୍କର ପୂର୍ବ ଜନ୍ମର କୌଣସି ସ୍ମୃତି ନାହିଁ, ଏପରିକି ଏହି ଜୀବନର ସମସ୍ତ ଘଟଣା ସକଳକୁ ସେ ମନେ ପକାଇ ପାରୁନାହାନ୍ତି । ସୁତରାଂ ଅନ୍ୟ ପ୍ରମାଣ ଅଭାବରେ କେବଳ ସ୍ମୃତିକୁ ଆଧାର କରି ଜଣେ ବ୍ୟକ୍ତିର ପୁନର୍ଜନ୍ମକୁ ପ୍ରତିଷ୍ଠା କରିହେବ ନାହିଁ । ସ୍ମୃତିର ଆଧାରରେ ଗୋଟିଏ ଜୀବନରେ ଜଣେ ବ୍ୟକ୍ତି ନିଜର ଅଭିନ୍ନତା ସୂଚାଇ ପାରିବ, ମାତ୍ର ପୁନର୍ଜନ୍ମ କ୍ଷେତ୍ରରେ ଏହା ଏକକ ମାନଦଣ୍ଡ ହୋଇପାରିବ ନାହିଁ । ଯଦି କ କୁହନ୍ତି ଯେ ସେ ପୂର୍ବ ଜନ୍ମରେ ଔ ଥିଲେ ବୋଲି ତାଙ୍କର ସ୍ମରଣ ହେଉଛି ତେବେ ଏହା କେବେ ହେଲେ ସେହି ସ୍ମୃତିକୁ ମାନଦଣ୍ଡ ନେଇ କର ପୂର୍ବ ଜନ୍ମ ଔ ଥିଲା ଓ ଯାହା ଅ ରୁ ଆରମ୍ଭ ହୋଇଥିଲା ଏହା ପ୍ରତିଷ୍ଠା କରିହେବ ନାହିଁ । ଅର୍ଥାତ୍ ଆଜି ଯେ କ ସେ ଯେ ମୂଳତଃ ଅ ଏହା ପ୍ରମାଣ କରିବା ସମ୍ଭବ ନୁହେଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଅଦ୍ୟାବଧି ତଥାକଥିତ ଯେତେ ଗୁଡିଏ ଜାତିସ୍ମର ଘଟଣା ବୋଲି ଦାବି କରାଯାଉଥିବା ଦୃଷ୍ଟାନ୍ତ ମାନଙ୍କର ଅନୁସନ୍ଧାନ ହୋଇଛି ତାହା ଶଠତାପୂର୍ଣ୍ଣ ପ୍ରଚାର ବୋଲି ଜଣାପଡିଛି ।

ଦ୍ୱିତୀୟରେ ଜଣେ ବ୍ୟକ୍ତିର ଅଭିନ୍ନତାର ସର୍ବଶ୍ରେଷ୍ଠ ଭିତ୍ତି ହେଉଛି ତାଙ୍କର ଶାରୀରିକ ନିରବଚ୍ଛିନ୍ନ ସ୍ଥିତି । ଜଣେ ବ୍ୟକ୍ତି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଶରୀର ଧାରଣ କରିଥାନ୍ତି ଓ ଶରୀରରେ ନାନା ପରିବର୍ତ୍ତନ ସଂଘଟିତ ହେଉଥିଲେ ମଧ୍ୟ ଶାରୀରିକ ନିରବଚ୍ଛିନ୍ନତା ଜଣେ ବ୍ୟକ୍ତିଙ୍କୁ ସେହି ବ୍ୟକ୍ତି ବୋଲି ସୂଚିତ କରିବାର ସର୍ବଶ୍ରେଷ୍ଠ ମାନଦଣ୍ଡ ହୋଇଥାଏ । ପିଲାଟିଏ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ହିଁ ଶରୀରର ଅଧିକାରୀ ହୋଇଥାଏ । ଜଣଙ୍କର ତିନିବର୍ଷର ଶରୀର ଓ ତିରିଶ ବର୍ଷର ଶରୀର ଓ ସତୁରି ବର୍ଷର ଶରୀର ଭିତରେ ବିଶେଷ ସାମଂଜସ୍ୟ ନ ଥିଲେ ମଧ୍ୟ ସେ ହିଁ ଜଣେ ବ୍ୟକ୍ତି କାରଣ ନିରବଚ୍ଛିନ୍ନ ଭାବେ ସେ ଏକ ଶରୀରର ଅଧିକାରୀ । ପୁନର୍ଜନ୍ମ ସିଦ୍ଧାନ୍ତ ଅନୁଯାୟୀ ବର୍ତ୍ତମାନର କ ଅତୀତର ଅ ଓ ମଝିରେ ଆ, ଇ... ଇତ୍ୟାଦି ଜନ୍ମ ନେଇଛନ୍ତି । ତେବେ ଦୁଇଟି ଜନ୍ମ ଭିତରେ ନା ସ୍ମୃତି ରହିଛି ନା ଶାରୀରିକ ନିରବଚ୍ଛିନ୍ନତା ରହିଛି । ଏହି ସ୍ଥିତିରେ ବର୍ତ୍ତମାନର କ ଯେ ଅତୀତର ଅ ଏହା କହିବା ସମୀଚୀନ ହେବ ନାହିଁ । ସ୍ମୃତି ଓ ଶାରୀରିକ ନିରବଚ୍ଛିନ୍ନତା ଯାହାକୁ ମାନଦଣ୍ଡ ଭାବେ ନେଇ ଜଣେ ବ୍ୟକ୍ତିର ଅଭିନ୍ନତା ବା ବୈୟକ୍ତିକ ତାଦାତ୍ମ୍ୟ ପ୍ରତିଷ୍ଠା କରାଯାଇଥାଏ ତାହା ପୁନର୍ଜନ୍ମ ସିଦ୍ଧାନ୍ତ କ୍ଷେତ୍ରରେ ପ୍ରୟୋଗ ହେବା ସମ୍ଭବ ନୁହେଁ । ସୁତରାଂ ବର୍ତ୍ତମାନର କ'ର ଯେ ଏକ ସୁଦୀର୍ଘ ଅତୀତ ଇତିହାସ ରହିଛି ତାହା କିପରି ପ୍ରତିଷ୍ଠା କରାଯିବ ? ଏ କ୍ଷେତ୍ରରେ ଏକ ତୃତୀୟ ମାନଦଣ୍ଡ ଉପରେ ନିର୍ଭର କରିବାକୁ ହେବ । ତାହା ହେବ ବ୍ୟକ୍ତିର ମାନସିକ ପ୍ରବୃତ୍ତି ଓ ସ୍ୱଭାବ । ପ୍ରତ୍ୟେକ ବ୍ୟକ୍ତିର କେତେକ ମାନସିକ ପ୍ରବୃତ୍ତି, ସ୍ୱଭାବ ଓ ପ୍ରବଣତା ରହିଥାଏ ଯାହାକୁ ତାର ଚାରିତ୍ରିକ ବୈଶିଷ୍ଟ୍ୟ କୁହାଯାଏ । ପୁନର୍ଜନ୍ମ ସିଦ୍ଧାନ୍ତରେ କୁହାଯାଏ ଯେ ପ୍ରତ୍ୟେକ ବ୍ୟକ୍ତି ନିର୍ଦ୍ଦିଷ୍ଟ ପ୍ରବୃତ୍ତି ଓ ଚାରିତ୍ରିକ ବୈଶିଷ୍ଟ୍ୟ ନେଇ ଜନ୍ମ ହୋଇଥାଏ । ଅର୍ଥାତ୍ ଅ' ର ଯେଉଁ ବୈଶିଷ୍ଟ୍ୟ ଓ ସ୍ୱଭାବ ଥିଲା ତାହା ଆ, ଇ... ପାଖରେ ଅଭିବ୍ୟକ୍ତ ରହିବ । ଯଦି ଆ ଜଣେ ଶାନ୍ତ ଓ ନମ୍ର ସ୍ୱଭାବର ବ୍ୟକ୍ତି ତେବେ ଆମକୁ ବୁଝିବାକୁ ହେବ ଯେ ସେ ଏହି ଚରିତ୍ର ଓ ସ୍ୱଭାବର ସହଜାତ ଅଧିକାରୀ । ଯଦି ଅ ସ୍ୱଭାବରେ ଜଣେ କଳାକାର, ମିଷ୍ଟଭାଷୀ ଓ ଭାବୁକ ତେବେ ଏହା ଗ୍ରହଣ କରିବାକୁ ହେବ ଯେ ତାଙ୍କର ପରବର୍ତ୍ତୀ ଜୀବନରେ ଯେତେବେଳେ ସେ, ଆ,ଇ...ହେବେ, ଏହି ପ୍ରବୃତ୍ତି ଓ ସ୍ୱଭାବ ନେଇ ଜନ୍ମ ନେବେ । ସେହିପରି ଯଦି ଗ ବ୍ୟକ୍ତିଟି ଜଣେ ଧୂର୍ତ୍ତ, ବଦମାସ ଓ ପ୍ରତିହିଂସା ପରାୟଣ ବ୍ୟକ୍ତି ତେବେ ବୁଝିବାକୁ ହେବ ଯେ ସେ ଖ, କ... ଅ ଠାରୁ ଏହି ଚରିତ୍ର ନିଜ ଭିତରେ ବହନ କରି ଚାଲିଛନ୍ତି । ତେବେ ଏହି ସିଦ୍ଧାନ୍ତ ଓ ତତ୍‌ସଂଲଗ୍ନ ମାନ୍‌ଦଣ୍ଡକୁ ଏତେ ସହଜରେ ବୋଧଗମ୍ୟ କରାଯାଇ ପାରିବ କି ? ବ୍ୟକ୍ତିମାନଙ୍କର ସ୍ୱଭାବ, ପ୍ରବୃତ୍ତି ଓ ଚାରିତ୍ରିକ ବୈଶିଷ୍ଟ୍ୟକୁ ବିଶ୍ଳେଷଣ କଲେ ବ୍ୟକ୍ତି ଚରିତ୍ରରେ ନାନା ଭିନ୍ନତା ଥିବା ଜଣାପଡେ । ଆମେ ଦେଖୁ ଯେ କେତେକ ବ୍ୟକ୍ତି ଚିନ୍ତାଶୀଳ, କେତେକ କଳାପ୍ରିୟ, କେତେକ ସହିଷ୍ଣୁ ଇତ୍ୟାଦି ଇତ୍ୟାଦି । ତେବେ ଏହା କଣ କୁହାଯିବ ଯେ ବ୍ୟକ୍ତିମାନଙ୍କର ମାନସିକ ପ୍ରବୃତ୍ତି ବା ସ୍ୱଭାବରେ ଏହି ସାମଂଜସ୍ୟ ଯୋଗୁଁ ସେମାନେ ସମସ୍ତେ ଏକ ବ୍ୟକ୍ତି ? ଅର୍ଥାତ୍ ଯଦି ଦୁଇ ବା ଅଧିକ ଜୀବିତ ବ୍ୟକ୍ତିଙ୍କର ପ୍ରବୃତ୍ତି ଓ ପ୍ରବଣତା କ୍ଷେତ୍ରରେ ଏକ ବା ଏକାଧିକ ସାଧାରଣ ସାମଂଜସ୍ୟ ଏକ ସମୟରେ ରହେ ସେମାନେ ଜଣେ ବ୍ୟକ୍ତି ବୋଲି କହିବା ହାସ୍ୟାସ୍ପଦ ହେବ । ତେବେ ଏହି ମାନଦଣ୍ଡର ତାତ୍ପର୍ଯ୍ୟ ହେବ ଯେ ପୃଥକ୍ ସମୟରେ ବ୍ୟକ୍ତିମାନଙ୍କର ମାନସିକ ସାମର୍ଥ୍ୟ ଆଧାରରେ ସେମାନଙ୍କୁ ସମାନ କରାଯାଇ ପାରିବ । ମନେ କରାଯାଉ ୧୯୯୦ ମସିହାରେ ଜନ୍ମ ହୋଇଥିବା ଚ ଛାତ୍ର ଜଣଙ୍କ ୧୭ ବର୍ଷ ବୟସରେ (ଅର୍ଥାତ୍ ୨୦୦୭ରେ) ଜଣେ କଳାକାର ଭାବେ ନିଜ ପ୍ରତିଭାର ପରିଚୟ ଦେଲେ । ଏହାର ତାତ୍ପର୍ଯ୍ୟ ହେବ ଯେ ୧୯୯୦ ମସିହା ପୂର୍ବରୁ ମୃତ୍ୟୁ ବରଣ କରିଥିବା କୌଣସି

କଳାକାର ଏବେ 'ଚ' ହୋଇ ଜନ୍ମ ହୋଇଛନ୍ତି । ସେପରି କ୍ଷେତ୍ରରେ ଏହି ମାନଦଣ୍ଡରେ ସହସ୍ରାଧିକ ବ୍ୟକ୍ତି ବର୍ତ୍ତମାନର 'ଚ' ହେବାକୁ ଯୋଗ୍ୟ ହୋଇପାରିବେ । ଏକା ମାନସିକ ଆବେଗ ଓ ପ୍ରବୃତ୍ତିର ଅଧିକାରୀ ହୋଇଥିବା ଯୋଗୁଁ ଯେ କୌଣସି ବ୍ୟକ୍ତିର ଜନ୍ମ ପୂର୍ବବର୍ତ୍ତୀ ଅନ୍ୟ କୌଣସି ବ୍ୟକ୍ତିର ଆତ୍ମା ହୋଇପାରନ୍ତି ବୋଲି କଳ୍ପନା କରାଯିବ । ଯେଉଁ ଲକ୍ଷ୍ୟ ପାଇଁ ଏହି ମାନଦଣ୍ଡକୁ ଗ୍ରହଣ କରାଯାଉଥିଲା ତାହା ଏପରି ଅସ୍ପଷ୍ଟତା ସୃଷ୍ଟି କରିବ ଯେ ଏହି ମାନଦଣ୍ଡଟି ସ୍ୱବିରୋଧୀ ହୋଇଯିବ । କାରଣ ସହସ୍ରାଧିକ ବ୍ୟକ୍ତି ମାନଙ୍କର ସ୍ୱଭାବ ଓ ଚାରିତ୍ରିକ ବୈଶିଷ୍ଟ୍ୟ କ୍ଷେତ୍ରରେ ସାମଂଜସ୍ୟ ରହିବା ସାଧାରଣ ଘଟଣା ଅଟେ । ସୁତରାଂ ଅନ୍ୟ ପ୍ରାମାଣିକ ଆଧାର ଅଭାବରେ ମାନସିକ ଆବେଗ ଓ ଚାରିତ୍ରିକ ବୈଶିଷ୍ଟ୍ୟକୁ ଭିତ୍ତିଭାବେ ନେଇ ପୁନର୍ଜନ୍ମ ଭାବନାକୁ ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ଏହାର ଅନ୍ୟାନ୍ୟ ପ୍ରତିବନ୍ଧକ ମଧ୍ୟ ରହିଛି । ତେବେ ଏହି ଭାବନାର ଅନ୍ୟ କେତେକ ଜଟିଳତାକୁ ଯିବା ପୂର୍ବରୁ ଭାରତୀୟ ଦର୍ଶନରେ ଆତ୍ମାର ଅବବୋଧ ବିଷୟରେ ସଂକ୍ଷିପ୍ତ ଆଲୋଚନା ଆବଶ୍ୟକ ମନେହୁଏ ।

(୩)

ଭାରତୀୟ ଦର୍ଶନ ଇତିହାସରେ ଆସ୍ତିକ ପରଂପରାର ଛ'ଟି (ଯାହା ପୂର୍ବରୁ ସୂଚାଯାଇଛି) ଓ ନାସ୍ତିକ ପରଂପରାର ତିନୋଟି (ବୌଦ୍ଧ, ଜୈନ ଓ ଚାର୍ବାକ) ଏହିପରି ନ'ଟି ବିଦ୍ୟାଳୟ ରହିଛି । ପ୍ରତ୍ୟେକ ଦାର୍ଶନିକ ବିଦ୍ୟାଳୟରେ ତତ୍ତ୍ୱ, ଜ୍ଞାନ, ତର୍କ, ପୁରୁଷାର୍ଥ ଇତ୍ୟାଦି ପ୍ରଶ୍ନ ମାନଙ୍କର ଆଲୋଚନା ଭିତରେ ଆତ୍ମାର ସ୍ୱରୂପ ନେଇ ମଧ୍ୟ ଅନେକ ଚର୍ଚ୍ଚା ହୋଇଛି । କେବଳ ଲୋକାୟତ ବା ଚାର୍ବାକ ଦର୍ଶନରେ ଆତ୍ମାକୁ ଏକ ତାତ୍ତ୍ୱିକ ସତ୍ତା ଓ ଦେହଠାରୁ ମୃତ୍ୟୁରେ ପୃଥକ୍ ହେଉଥିବା ଭାବନାକୁ ଅସ୍ୱୀକାର କରାଯାଇଛି । ଚାର୍ବାକ ମତରେ ମଣିଷ ଚେତନଶୀଳ, ତେବେ ଚେତନା ଏକ ସତ୍ତା ନୁହେଁ । ଚେତନା ଏକ କ୍ରିୟା ଓ ଶରୀରରେ ଭୂତମାନଙ୍କର ଏକ ସ୍ୱତନ୍ତ୍ର ସମାହାରରୁ ଏହାର ସୃଷ୍ଟି । ଭୂତମାନେ ଜଡପରି ପ୍ରତୀୟମାନ ହେଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ସଂଯୋଗ ଜନିତ ଅବସ୍ଥାରେ ସେମାନେ ଚେତନା ସୃଷ୍ଟି କରନ୍ତି । ଶରୀରର ପାକସ୍ଥଳୀରୁ ରସ କ୍ଷରଣ ହେଲା ଭଳି ମସ୍ତିଷ୍କରୁ ଭାବନା ଉଦ୍ରେକ ହୋଇଥାଏ । ସୁତରାଂ ବିନା ଶରୀରରେ ଚେତନାର ସ୍ଥିତି ସମ୍ଭବ ନୁହେଁ । ବସ୍ତୁତଃ ଆତ୍ମା ବୋଲି କୌଣସି କିଛି ସତ୍ତା ନାହିଁ । ବସ୍ତୁ ସଂଯୋଗରୁ ଚେତନାର ଉତ୍ପତ୍ତି ବା ଅନ୍ୟ ଭାବରେ କହିଲେ ଚେତନା ବସ୍ତୁର ଏକ ପରିପ୍ରକାଶିତ ଲକ୍ଷଣ । ଚାର୍ବାକ ମତରେ ଯେହେତୁ ଆତ୍ମା ବୋଲି କିଛି ସତ୍ତା ହିଁ ନାହିଁ ତେଣୁ ପୁନର୍ଜନ୍ମର ଭାବନା ଏକ କାଳ୍ପନିକ କାହାଣୀ ମାତ୍ର । ମୃତ୍ୟୁରେ ବ୍ୟକ୍ତି ଜୀବନର ପରିସମାପ୍ତି । ଏହି ମତକୁ ବାଦ୍ ଦେଲେ ଆତ୍ମା ସଂପର୍କରେ ଅନ୍ୟାନ୍ୟ ଦର୍ଶନ ବିଦ୍ୟାଳୟ ମତକୁ ମୋଟାମୋଟି ଚାରୋଟି ଶ୍ରେଣୀରେ ବିଭାଜନ କରିପାରିବା ।

ବୌଦ୍ଧ ଦର୍ଶନରେ (ଯାହା ବୌଦ୍ଧ ଦର୍ଶନ ପୃଷ୍ଠଭୂମିରେ ମଧ୍ୟ ସୂଚନା ଦିଆଯାଇଛି) ଆତ୍ମା ଏକ ନିତ୍ୟ ସତ୍ତା ନୁହେଁ ଯଦିବା ବୌଦ୍ଧ ଦର୍ଶନରେ ନିର୍ବାଣ ଭାବନା ରହିଛି । ବୌଦ୍ଧ ଦର୍ଶନ ଅନାତ୍ମବାଦରେ ବିଶ୍ୱାସ କରେ । ଆତ୍ମା ଏକ ଅବାରିତ ଧାରା, ଏକ ଗତିଶୀଳ ପ୍ରବାହ ମାତ୍ର । ଏହା ମାନସିକ ପ୍ରବୃତ୍ତି ମାନଙ୍କର ଏକ ସମଷ୍ଟି କହିଲେ ଅତ୍ୟୁକ୍ତି ହେବନାହିଁ । ନଦୀର ଜଳଧାରା ଯେପରି ଗତିଶୀଳ ବା ଏକ ଦୀପର ଶିଖା ଯେପରି ଅବିରତ ପରିବର୍ତ୍ତନଶୀଳ, ଆତ୍ମା ବା ଚେତନା ସେହିପରି ଏକ ଅବିରତ କ୍ରିୟା ।

ନ୍ୟାୟ ଦର୍ଶନରେ ଆତ୍ମା ଏକ ସତ୍ତା ଓ ନିତ୍ୟ । ଆତ୍ମା ବହୁବିଧ ଓ ପ୍ରତ୍ୟେକ ଜୀବର ଆତ୍ମା ଅନ୍ୟର ଆତ୍ମାଠାରୁ ପୃଥକ୍ । ତେବେ ଏହି ଦର୍ଶନରେ ଆତ୍ମା ସ୍ୱରୂପରେ ଚେତନଶୀଳ ନୁହେଁ ଏହା ସ୍ୱରୂପରେ ଜଡ । ଅର୍ଥାତ୍ ଚେତନଶୀଳତା ଆତ୍ମାର ମୌଳିକ ଲକ୍ଷଣ ନୁହେଁ । ଆତ୍ମା ମନର ସଂଯୋଗରେ ଆସିଲେ ଚେତନଶୀଳ ହୁଏ । ବ୍ୟକ୍ତିର ଚେତନଶୀଳ ଅବସ୍ଥା ମନ ଓ ଆତ୍ମାର ସଂଯୋଗରୁ ଉତ୍ପନ୍ନ ହୋଇଥାଏ । ଆତ୍ମା ସହ ମନର ସଂଯୋଗ ଓ ମନ ସହ ଇନ୍ଦ୍ରିୟର ସଂଯୋଗରୁ ଚେତନଶୀଳ ଅନୁଭବ ଆସିଥାଏ । ସୁତରାଂ ବିନା ମନରେ ଆତ୍ମାର ଚେତନା ନଥାଏ । ମୃତ୍ୟୁ ପରେ ଆତ୍ମା ରହେ କିନ୍ତୁ ମନର ଅଭାବ ଯୋଗୁଁ ଏହା ଜଡ ଅବସ୍ଥାରେ ରହେ, ଚେତନଶୀଳ ସତ୍ତା ହୋଇ ରହେନାହିଁ । ବସ୍ତୁତଃ ନ୍ୟାୟ ମତରେ ଚେତନଶୀଳତା ଆତ୍ମାର ମୌଳିକ ଲକ୍ଷଣ ହେବା ପରିବର୍ତ୍ତେ ଏହାର ଏକ ଆକସ୍ମିକ ଲକ୍ଷଣ ଅଟେ ।

ବେଦାନ୍ତ ଦର୍ଶନ ଭାରତୀୟ ଦର୍ଶନଧାରାରେ ଏକ ମୁଖ୍ୟ ବିଦ୍ୟାଳୟ । ତେବେ ବେଦାନ୍ତ ଦର୍ଶନର ବହୁଧାରା ରହିଛି ଯଥା ଅଦ୍ୱୈତ, ଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ, ଭେଦାଭେଦ ବେଦାନ୍ତ ଇତ୍ୟାଦି । ଯେ କୌଣସି ଦୁଇଟି ବେଦାନ୍ତର ଧାରା ଭିତରେ କେତେକ କ୍ଷେତ୍ରରେ କିଛି ସାମଂଜସ୍ୟ ରହିଥିଲା ବେଳେ ଅନ୍ୟ ଦାର୍ଶନିକ ପ୍ରଶ୍ନ ଉପରେ ମୌଳିକ ପାର୍ଥକ୍ୟ ରହିଛି । ଆତ୍ମା ସଂପର୍କୀୟ ପ୍ରଶ୍ନ ଉପରେ ଦୁଇଟି ପୃଥକ୍ ମତକୁ ଏଠାରେ ଆମେ ସୂଚାଇବା । ଦ୍ୱୈତବେଦାନ୍ତ (ଏହା ଏକ ବୈଷ୍ଣବୀୟ ଦର୍ଶନ ଓ ମଧ୍ୱ-ଏକ ତ୍ରୟୋଦଶ ଶତାବ୍ଦୀର ଦାର୍ଶନିକ- ଏହାର ପ୍ରବର୍ତ୍ତକ) ଅନୁଯାୟୀ ପ୍ରତ୍ୟେକ ଜୀବର ଆତ୍ମା ରହିଛି, ସୁତରାଂ ଆତ୍ମାମାନେ ବହୁବିଧ ଓ ସନାତନ । ଚେତନା ଆତ୍ମାର ମୌଳିକ ଗୁଣ ଓ ଆତ୍ମା ସ୍ୱରୂପରେ ଆନନ୍ଦମୟ । ଏହି ଦର୍ଶନରେ ଆତ୍ମା ମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି ଯଥା ନିତ୍ୟ, ମୁକ୍ତ ଓ ବଦ୍ଧ । ନିତ୍ୟ ଆତ୍ମାମାନେ କେବେ ବି ସଂସାରରେ ଶରୀର ଧରି ଜନ୍ମ ଗ୍ରହଣ କରିନାହାନ୍ତି । ଯେଉଁମାନେ ଅତୀତରେ ସଂସାରରେ ଜନ୍ମ ଗ୍ରହଣ କରି ମୁକ୍ତି ପାଇ ସାରିଛନ୍ତି ସେମାନେ ହେଲେ ମୁକ୍ତ ଆତ୍ମା । ଯେଉଁ ଆତ୍ମାମାନେ ସଂସାରରେ ଜନ୍ମ ଗ୍ରହଣ କରି ଜନ୍ମ-ମୃତ୍ୟୁ ଚକ୍ରରେ ଘୂରି ବୁଲୁଛନ୍ତି ସେମାନେ ହେଲେ ବଦ୍ଧ । ବିଶିଷ୍ଟାଦ୍ୱୈତ ବେଦାନ୍ତ (ଏହାର ପ୍ରବକ୍ତା ରାମାନୁଜ, ୧୦୧୭-୧୧୩୭) ଓ ଦ୍ୱୈତବେଦାନ୍ତ ଭିତରେ ଆତ୍ମା ପ୍ରଶ୍ନକୁ ନେଇ ମୌଳିକ ସାମଂଜସ୍ୟ ରହିଛି । ତେବେ ରାମାନୁଜଙ୍କ ମତରେ କେବଳ ପ୍ରଳୟ ସମୟରେ ଆତ୍ମାମାନେ ଈଶ୍ୱରଙ୍କ ଠାରେ ଲୀନ ହୁଅନ୍ତି ଓ ସୃଷ୍ଟି ସମୟରେ ସେମାନେ ଈଶ୍ୱରଙ୍କଠାରୁ ଆତ୍ମ ପ୍ରକାଶ କରନ୍ତି । ଆତ୍ମାମାନେ ଅଣୁ ସଦୃଶ ଓ ସସୀମ, ଚେତନା ଏହାର ମୌଳିକ ଲକ୍ଷଣ ।

ଅଦ୍ୱୈତ ବେଦାନ୍ତ (ଏହାର ମୁଖ୍ୟ ପ୍ରବକ୍ତା ଶଙ୍କରାଚାର୍ଯ୍ୟ- ଅଷ୍ଟମ / ନବମ ଶତାବ୍ଦୀର ଦାର୍ଶନିକ) ଅନୁଯାୟୀ ବ୍ରହ୍ମ ହିଁ ଏକ ମାତ୍ର ସତ୍ୟ ଓ ପରମାର୍ଥିକ ସତ୍ତା । ଏହା ବିଶୁଦ୍ଧ ଚୈତନ୍ୟ ଓ ନିର୍ଗୁଣ । ଅନ୍ୟ ସବୁ କିଛି ମିଥ୍ୟା ବା ମାୟା । ଏହି ଦର୍ଶନାନୁଯାୟୀ ଜୀବ (ବା ଆତ୍ମା) ଓ ବ୍ରହ୍ମ ଅଭିନ୍ନ । ଅବିଦ୍ୟା ହେତୁ ଆତ୍ମାର ବନ୍ଧନ ଆସେ ଓ ଅବିଦ୍ୟାର ବିନାଶଦ୍ୱାରା ଆତ୍ମା ନିଜେ ବ୍ରହ୍ମ ପାଲଟିଯାଏ । ଆତ୍ମା ସ୍ୱରୂପରେ ବ୍ରହ୍ମ ହୋଇଥିବାରୁ ବହୁ ଆତ୍ମାବାଦ ପ୍ରତୀତି ଏଥିରେ ନାହିଁ କିମ୍ବା ଆତ୍ମାର ସ୍ୱତନ୍ତ୍ର ସତ୍ତା ମଧ୍ୟ ନାହିଁ । ବ୍ରହ୍ମର ସୃଜନାତ୍ମକ ଶକ୍ତି ହେଉଛି ମାୟା ଯାହାକି ଜଗତ ପରି ପ୍ରତୀୟମାନ ହୁଏ । ମାୟା ଯୋଗୁଁ ଅବିଦ୍ୟା ଆତ୍ମା ଉପରେ ଆବରଣ ଢ଼ାଙ୍କିଥାଏ ଯେଉଁଥିରୁ ଆତ୍ମା ବ୍ରହ୍ମର ସ୍ୱରୂପ ଭୁଲିଯାଇ ବନ୍ଧନରେ ପଡେ । ଅବିଦ୍ୟାର ବିନାଶରେ ବ୍ରହ୍ମଜ୍ଞାନ ଆସେ, ସେତେବେଳେ ପ୍ରତୀୟମାନ ଜଗତ ରହେନାହିଁ ଓ ଆତ୍ମା ବ୍ରହ୍ମସହ ଅଭିନ୍ନ ହୋଇଯାଏ । ଅଦ୍ୱୈତ ବେଦାନ୍ତ ମତରେ ବ୍ରହ୍ମ ହେଉଛି ସଂପୂର୍ଣ୍ଣ ଆକାଶ (space) ଓ ଆତ୍ମା ଏକ ଘଟ ଭିତରର ଆକାଶ । ଘଟ

ଭାଙ୍ଗିଗଲେ ଘଟ ଭିତରର ଆକାଶ ଯେପରି ଅନନ୍ତ ଆକାଶ ସହ ଅଭିନ୍ନ ହୋଇଯାଏ, ସେହିପରି ଅବିଦ୍ୟାର ବିନାଶ ଦ୍ୱାରା ଆତ୍ମା ବ୍ରହ୍ମ ସହ ଅଭିନ୍ନ ହୋଇଯାଏ ।

ଆତ୍ମା ସଂପର୍କିତ ଏହି ମତ ଗୁଡିକର ତୁଳନାତ୍ମକ ଅନୁଶୀଳନ ଦ୍ୱାରା ଏହା ସ୍ପଷ୍ଟ ହେବ ଯେ ଏହି ତତ୍ତ୍ୱ ଗୁଡିକ ପରସ୍ପର ବିରୋଧୀ । ବୌଦ୍ଧ, ନ୍ୟାୟ, ଦ୍ୱୈତ, ବିଶିଷ୍ଟାଦ୍ୱୈତ ବେଦାନ୍ତ ଓ ଅଦ୍ୱୈତ ବେଦାନ୍ତ ଆତ୍ମାର ପରିକଳ୍ପନା କରିଛନ୍ତି । ଏଗୁଡିକ କୌଣସି ଆନୁଭବିକ ସିଦ୍ଧାନ୍ତ ଉପରେ ପର୍ଯ୍ୟବସିତ ନୁହେଁ ଓ ଏହି ଭାବନା ସକଳ ପରସ୍ପରର ପରିପନ୍ଥୀ । ଜୀବନର ଅବବୋଧ କ୍ଷେତ୍ରରେ ଏଗୁଡିକ ତାତ୍ତ୍ୱିକ ଅବଧାରଣା ମାତ୍ର । ତେବେ ଚାର୍ବାକଙ୍କ ମତ କୌଣସି ତାତ୍ତ୍ୱିକ କଳ୍ପନା ଆଧାରିତ ନୁହେଁ ବରଂ ସାଧାରଣ ଅନୁଭୂତିଭିତ୍ତିକ ବୋଲି ମନେହୁଏ ।

ଭାରତୀୟ ଦର୍ଶନର ଆସ୍ତିକ ପରଂପରାର ସକଳ ବିଦ୍ୟାଳୟ ଓ ନାସ୍ତିକ ପରଂପରାର ଜୈନ ଦର୍ଶନ ଆତ୍ମାକୁ ଏକ ତାତ୍ତ୍ୱିକ ସତ୍ତା ଭାବେ ମୁଖ୍ୟତଃ ଗ୍ରହଣ କରିଛନ୍ତି, ଯଦିବା ସେମାନଙ୍କର ଆତ୍ମା ପ୍ରତୀତି କ୍ଷେତ୍ରରେ ଭିନ୍ନତା ରହିଛି । ଆତ୍ମାକୁ ଏକ ସତ୍ତା ବୋଲି ଗ୍ରହଣ କରିବାଦ୍ୱାରା ପରିଣାମ ସ୍ୱରୂପ ସେମାନେ ପୁନର୍ଜନ୍ମର ଭାବନା ସୃଷ୍ଟି କରିଛନ୍ତି । ଜୀବନର ଦୁଃଖ, ଘନଘଟା, ସାମାଜିକ ବୈଷମ୍ୟ ଓ ବ୍ୟକ୍ତି ସାମର୍ଥ୍ୟରେ ଥିବା ପ୍ରଭେଦ ଇତ୍ୟାଦି ଘଟଣାକୁ ବୁଝିବାରେ ହୁଏତ ପୁନର୍ଜନ୍ମ ଭାବନା ବେଳେବେଳେ ସହାୟକ ହୋଇଛି । ବ୍ୟକ୍ତି ଜୀବନରେ ଦୁଃଖ କାହିଁକି ରହିଛି ବା ବ୍ୟକ୍ତି ସାମର୍ଥ୍ୟରେ ଓ ଜନ୍ମରେ ଏତେ ଭିନ୍ନତା କାହିଁକି ରହିଛି ପ୍ରଶ୍ନମାନଙ୍କୁ ହୁଏତ ପୁନର୍ଜନ୍ମ ପ୍ରକଳ୍ପ ଆଧାରରେ ସହଜରେ ବ୍ୟାଖ୍ୟା କରାଯାଇଥାଏ । ପ୍ରଶ୍ନ ହେଉଛି ପୁନର୍ଜନ୍ମ କ'ଣ ଯଥାର୍ଥରେ ବ୍ୟକ୍ତି-ବ୍ୟକ୍ତି ଭିତରେ ଜନ୍ମଗତ ବା ସାମର୍ଥ୍ୟଗତ ପାର୍ଥକ୍ୟକୁ ବ୍ୟାଖ୍ୟା କରିପାରୁଛି ? ସାଧାରଣତଃ ଏହା ବିଶ୍ୱାସ କରାଯାଏ ଯେ ବର୍ତ୍ତମାନ ଜୀବନର ଦୁଃଖ ବା ଘନଘଟା ପୂର୍ବଜନ୍ମ ବା ଜନ୍ମମାନଙ୍କର କର୍ମର ଫଳ । ସେହି ସ୍ଥିତିରେ ଏହା ଗ୍ରହଣ କରାଯିବ ଯେ ଆତ୍ମା ମାନଙ୍କର ପ୍ରାଥମିକ ସ୍ଥିତିରେ ହୁଏତ ସେମାନଙ୍କ ମଧ୍ୟରେ ଅନ୍ତର୍ନିହିତ ଭିନ୍ନତା ବା ବୈଷମ୍ୟ ରହିଛି କିମ୍ବା (ଯାହା ଅଧିକାଂଶ ଭାରତୀୟ ଦର୍ଶନ ବିଦ୍ୟାଳୟ ଗ୍ରହଣ କରନ୍ତି) ପୁନର୍ଜନ୍ମର ଏକ ଆରମ୍ଭ ସ୍ଥିତି ନାହିଁ ବରଂ ଏହା ଏକ ଅନନ୍ତ ପ୍ରବାହ ଦେଇ ଗତି କରି ଆସିଛି । ଦ୍ୱିତୀୟ ସମ୍ଭାବନା କ୍ଷେତ୍ରରେ ଜୀବନର ଘଟଣା ଏପରି କାହିଁକି ହୋଇଛିର ଉତ୍ତର ହେବ ଏହା ପୂର୍ବଜନ୍ମର ପରିଣାମ ଓ ସେହି ଜନ୍ମରେ ଏହା ଏପରି କାହିଁକି ହୋଇଥିଲାର ଉତ୍ତର ହେବ ତା ପୂର୍ବ ଜନ୍ମର ପରିଣାମ ଯୋଗୁଁ... । ଏହି ଧାରା ଅନନ୍ତ କ୍ରମରେ ପଛକୁ ଚାଲିବ ଓ ଯେହେତୁ ଜୀବନ ଏକ ଅନନ୍ତ ପ୍ରବାହ ସେ ଦୃଷ୍ଟିରୁ ଏହାର ବ୍ୟାଖ୍ୟା ମଧ୍ୟ ଅନ୍ତହୀନ ହେବ । ଏହାଦ୍ୱାରା ଆତ୍ମାକୁ ଏକ ଅନନ୍ତ ସତ୍ତା ଭାବେ ଗ୍ରହଣ କରାଯିବ, ତେବେ ବାସ୍ତବ ଜୀବନର ପ୍ରକୃତ ଅସମତା ବା ବୈଷମ୍ୟକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଏହା କୌଣସି ବୌଦ୍ଧିକ ବା ନୈତିକ ଭିତ୍ତି ଯୋଗାଇ ପାରିବ ନାହିଁ । ମଣିଷ ସମାଜରେ ରହିଥିବା ରାଶି ରାଶି ଦୁଃଖ, ଦୁର୍ଦ୍ଦଶାର କାରଣର ବିଶ୍ଳେଷଣ ପାଇଁ ଏହି ତତ୍ତ୍ୱ ଅର୍ଥଶୂନ୍ୟ ମନେ ହେବ । କାରଣ ଏହା କିଛି ବ୍ୟାଖ୍ୟା ନକରି କେବଳ ଘଟଣା ମାନଙ୍କୁ ଅନନ୍ତ କ୍ରମରେ ସ୍ଥଗିତ କରିବା ମନେହୁଏ । ସେ କ୍ଷେତ୍ରରେ ଜନ୍ମଗତ ଓ ସାମାଜିକ ବୈଷମ୍ୟକୁ ବ୍ୟାଖ୍ୟା କରିବାକୁ ହେଲେ ଆତ୍ମା ମାନଙ୍କର ଅନ୍ତର୍ନିହିତ ବୈଷମ୍ୟକୁ ସ୍ୱୀକାର କରିବାକୁ ହେବ । ଅବଶ୍ୟ ଏହା କୁହାଯାଇପାରେ ଯେ ସମସ୍ତ ବ୍ୟକ୍ତି ଭିତରେ ଈଶ୍ୱର ସମାନ ସାମର୍ଥ୍ୟ ଦେଇଥିଲେ ମଧ୍ୟ ଯେଉଁ ବ୍ୟକ୍ତି ସୁକର୍ମ କରିଛି ସେ ସୁଫଳ ପାଇଛି ଓ ଯେ ମନ୍ଦ କର୍ମ କରିଛି ସେ ଦୁଃଖ ପାଇଛି । ତେବେ ପ୍ରଶ୍ନ ହେବ ଯେ କେତେକ ଆତ୍ମା ଭିତରେ ଭଲ କାର୍ଯ୍ୟ କରିବାର ଅନ୍ତର୍ନିହିତ ଭାବନା

ଓ ଅନ୍ୟ ଭିତରେ ମନ୍ଦ କାର୍ଯ୍ୟ କରିବାର ଭାବନା କିପରି ସୃଷ୍ଟିହେଲା ? ଈଶ୍ୱର ନିୟନ୍ତିତ ଏକ ବ୍ୟବସ୍ଥାରେ ଯଦି କେତେକ ଜୀବ ଭଲ ପ୍ରତି ଆଗ୍ରହୀ ହେଲେ ଓ ଅନ୍ୟମାନେ ମନ୍ଦ ପ୍ରତି ଆଗ୍ରହୀ ହେଲେ ତେବେ ଏହାଦ୍ୱାରା ସେମାନଙ୍କର ଅନ୍ତର୍ନିହିତ ଅସମତା ସ୍ୱୀକୃତ ହେଉ ନାହିଁକି ? ହୁଏତ ଏହି ଅନ୍ତର୍ନିହିତ ପାର୍ଥକ୍ୟ ଅଧିକ ବିକଶିତ ହୋଇ ବୈଷମ୍ୟପୂର୍ଣ୍ଣ ଜୀବନ ଓ ସମାଜର କାରଣ ହୋଇଛି । ସେପରି ସ୍ଥଳେ ସବୁ କିଛି ଈଶ୍ୱର-ସୃଷ୍ଟ ବା ଈଶ୍ୱର-ନିୟନ୍ତିତ ବ୍ୟବସ୍ଥା ଭିତରେ ଏକ ବୈଷମ୍ୟପୂର୍ଣ୍ଣ ସ୍ଥିତି ପାଇଁ ପରିଣାମତଃ ଈଶ୍ୱରଙ୍କୁ ଦାୟୀ କରାଯିବ । ଫଳତଃ ପୁନର୍ଜନ୍ମ ସିଦ୍ଧାନ୍ତ ସମାଜର ବୈଷମ୍ୟ ଓ ଜୀବନର ଘନଘଟା ବ୍ୟାଖ୍ୟା କ୍ଷେତ୍ରରେ ହୁଏତ ଅନନ୍ତ ସମ୍ଭାବନା ପାଇଁ ସ୍ଥଗିତ କରି ଚାଲିବ ଅଥବା ଈଶ୍ୱରଙ୍କୁ ଦାୟୀ କରିବ । ପୁନର୍ଜନ୍ମରେ ବିଶ୍ୱାସୀ ମାନଙ୍କ ପାଇଁ କୌଣସିଟି ଏକ ଗ୍ରହଣଯୋଗ୍ୟ ସିଦ୍ଧାନ୍ତ ହେବା ମନେହୁଏ ନାହିଁ ।

ଉପସଂହାରରେ ଏହା କୁହାଯାଇପାରିବ ଯେ ଆତ୍ମା ଅମର ଓ ଏକ ତାତ୍ତ୍ୱିକ ସତ୍ତା ଯେପରି ଏକ କାଳ୍ପନିକ ବିଷୟ, ପୁନର୍ଜନ୍ମ ମଧ୍ୟ ଏକ କାଳ୍ପନିକ କାହାଣୀ । ଆତ୍ମା, ଆତ୍ମାର ଅମରତ୍ୱ, ପୁନର୍ଜନ୍ମ, ଈଶ୍ୱର, ସ୍ୱର୍ଗ, ନରକ ଇତ୍ୟାଦି ଭାବନା ସକଳ କେବଳ ଧାର୍ମିକ ବିଶ୍ୱାସ । ସମାଜର ଧାର୍ମିକ ବିଶ୍ୱାସ ସକଳକୁ ଦାର୍ଶନିକ ଭିତ୍ତି ଦେବାକୁ ଯାଇ ନାନା ସୈଦ୍ଧାନ୍ତିକ ତତ୍ତ୍ୱ ବୈଚାରିକ ସ୍ତରରେ ବିକାଶ ଲାଭ କରିଛି । ତେବେ ଆତ୍ମା ସଂପର୍କିତ ଭାରତୀୟ ଦର୍ଶନର ତାତ୍ତ୍ୱିକ ସିଦ୍ଧାନ୍ତ ମାନ କେବଳ କଳ୍ପନା (gross assumption) । ଏହି କଳ୍ପନା ଗୁଡିକର ନୈତିକ ବା ବ୍ୟାବହାରିକ ମହତ୍ତ୍ୱ ଥାଇପାରେ କିନ୍ତୁ ଏହାର କୌଣସି ଆନୁଭବିକ ଭିତ୍ତି ବା ଯୁକ୍ତିଶୀଳ ଆଧାର ଥିବା ମନେହୁଏ ନାହିଁ ।

ତେବେ ଏହି ସବୁ କାଳ୍ପନିକ ତତ୍ତ୍ୱର ଏକ ବ୍ୟାବହାରିକ ଓ ସମ୍ଭବତଃ ମାନବିକ ବ୍ୟାଖ୍ୟା କରାଯାଇପାରେ । ବ୍ୟକ୍ତିର ଆତ୍ମା ବା ପୁନର୍ଜନ୍ମ ନ ଥାଇପାରେ, କିନ୍ତୁ ଆଳଙ୍କାରିକ ଭାବରେ ଏକ ଦେଶ ବା ମଣିଷ ଜାତିର ଆତ୍ମା ରହିଛି ଓ ଉନ୍ନତି ପଥେ ଅଗ୍ରସର ହେଉଛି । ବ୍ୟକ୍ତିର କର୍ମର ପରିଣାମ ତାର ପରଜନ୍ମକୁ ପ୍ରଭାବିତ କରେ ନାହିଁ । କିନ୍ତୁ ବ୍ୟକ୍ତିମାନଙ୍କର କର୍ମର ପ୍ରଭାବ ସେମାନଙ୍କର ସାମାଜିକ ଜୀବନଧାରାକୁ ଓ ପର ପିଢ଼ିକୁ ପ୍ରଭାବିତ କରିଥାଏ । ବ୍ୟକ୍ତିମାନଙ୍କର ମହତର କାର୍ଯ୍ୟର ସୁଫଳ ଓ ମନ୍ଦ କାର୍ଯ୍ୟର କୁଫଳ ସମାଜ ଉପରେ ପଡିଥାଏ ଓ ଏକ ଜାତିର ଆତ୍ମା ସେହି ଫଳ ପାଇଥାଏ । ପୁନଶ୍ଚ ସାମଗ୍ରିକ ଭାବେ ମଣିଷ ଜାତିକୁ ଯଦି ଏକ ଆତ୍ମା ଭାବରେ କଳ୍ପନା କରାଯାଏ ତେବେ ବର୍ତ୍ତମାନର ରାଷ୍ଟ୍ରନୀତିଜ୍ଞ ମାନଙ୍କର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଭବିଷ୍ୟତ ପାଇଁ ନିର୍ଣ୍ଣାୟକ ମନେହୁଏ । କେତେକ ଆଧୁନିକ ଲେଖକ ଏହି ଦୃଷ୍ଟିଭଙ୍ଗୀକୁ ବୁଦ୍ଧଙ୍କ ନୈରାତ୍ମ୍ୟବାଦ ଓ ମାନବବାଦୀ ଜୀବନଧାରା ସହିତ ସଂଶ୍ଳିଷ୍ଟ କରିଛନ୍ତି । ଆଜି ଆମର ଜୀବନଧାରା ଆମର ପୂର୍ବସୂରି ମାନଙ୍କର ପ୍ରଦତ୍ତ ଜ୍ଞାନ, ପ୍ରଯୁକ୍ତି ଓ ମାନବିକ ଦୃଷ୍ଟିଦ୍ୱାରା ବହୁଭାବରେ ଅନୁପ୍ରାଣିତ; ସେହିପରି ଆମର ସମ୍ବେଦନଶୀଳ ଜୀବନ ଦୃଷ୍ଟି, ନୀତିବୋଧ, ମାନବିକ ସଂପ୍ରୀତି ଓ ଉତ୍ତରଦାୟିତ୍ୱବୋଧ ବିଶ୍ୱ ମାନବିକତାକୁ ଓ ଆଗାମୀ ପିଢ଼ିକୁ ପ୍ରଭାବିତ କରିବ । ସୁତରାଂ ଆମେ ଏକ ଏକ ଆତ୍ମକୈନ୍ଦ୍ରିକ ମୁକ୍ତିକାମୀ ବା ସ୍ୱର୍ଗକାମୀ ବ୍ୟକ୍ତି-ସତ୍ତା ନୁହଁ, ବରଂ ପରସ୍ପର ସହଯୋଗୀ ଏକ ବିଶ୍ୱର ନାଗରିକ । ଆମର ସ୍ୱପ୍ନ ଆମର ଦେହାତୀତ ସ୍ୱର୍ଗାବାସ ନୁହେଁ, ବରଂ ଆମର ଆଗାମୀ ବଂଶଧରଙ୍କ ପାଇଁ ଏକ ସୁନ୍ଦରତର, ମହତ୍ତର ଓ ପ୍ରୀତିପୂର୍ଣ୍ଣ ପୃଥିବୀର ରୂପାୟନ । ଯଦି ବିଶ୍ୱରେ ଏକ ଅହିଂସ, ମମତାପୂର୍ଣ୍ଣ ଓ ସମତାପୂର୍ଣ୍ଣ ପରିବେଶ ସୃଷ୍ଟି ହୁଏ, ତାହା ହେବ ମଣିଷ ଜାତିର ପୁନର୍ଜନ୍ମ ।



# କୁସଂସ୍କାର : ଏକ ଅଧ୍ୟୟନ

କୁସଂସ୍କାର ଜ୍ଞାନର ପରିପନ୍ଥୀ । ଯେଉଁ ସମାଜରେ ଏହା ଯେତିକି ଅଧିକ ସେହି ସମାଜ ସେତିକି ପଛୁଆ । ଅବଶ୍ୟ ଅତ୍ୟନ୍ତ ସଭ୍ୟ ଓ ପ୍ରଗତିଶୀଳ ସମାଜ ଯେ କୁସଂସ୍କାରରୁ ସଂପୂର୍ଣ୍ଣ ମୁକ୍ତ ଏହା କୁହାଯାଇ ପାରିବ ନାହିଁ । ବିଭିନ୍ନ ସମାଜରେ ଭିନ୍ନ ଭିନ୍ନ ଧାରାରେ ଓ ପରିମାଣରେ କୁସଂସ୍କାର ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ଯେକୌଣସି ସଭ୍ୟ ସମାଜରେ କୁସଂସ୍କାରର ବିଲୋପ ସାଧନ ପାଇଁ ଉଦ୍ୟମ ହେବା ବାଞ୍ଛନୀୟ । କୁସଂସ୍କାର ବିରୁଦ୍ଧରେ ସାମାଜିକ ସଚେତନତା ଯେତିକି ଅଧିକ, ସମାଜ ସେତିକି ପ୍ରଗତିଶୀଳ, ଅଥଚ ଯେଉଁଠାରେ ଏହି ସଚେତନତା କମ୍ ତାହା ଆନୁପାତିକ ଭାବରେ ସେତିକି କ୍ଷୟଶୀଳ । ଏକ ସଭ୍ୟ ସମାଜରେ ଜ୍ଞାନର ବିକାଶ ପାଇଁ ଦେଶର ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନ ଇତ୍ୟାଦି ଜରିଆରେ ପ୍ରୟାସ କରାଯାଏ । ବ୍ୟକ୍ତିଗତ ସାଧନା ଓ ସଂଗଠିତ ଉଦ୍ୟମଦ୍ୱାରା ବୌଦ୍ଧିକ ଦିଗନ୍ତ କ୍ରମବର୍ଦ୍ଧିଷ୍ଣୁ ଭାବରେ ପ୍ରସାରିତ ହେବା ଦେଖାଯାଏ । ପରନ୍ତୁ ସାମାଜିକ ପରିବେଶ ଜ୍ଞାନର ବିକାଶ ପରିବର୍ତ୍ତେ ଯଦି ରୂଢ଼ିବାଦ, ଅନ୍ଧବିଶ୍ୱାସ, କୁସଂସ୍କାର, ରକ୍ଷଣଶୀଳ ଜନିତ ରୁଦ୍ଧ ମାନସିକତା ଆଦି ବିକାଶ ଦିଗରେ ସହାୟକ ହୁଏ ତେବେ ସମାଜର ଗୁଣାତ୍ମକ ଅଭିବୃଦ୍ଧି ପରିବର୍ତ୍ତେ ପଶ୍ଚାତଗତି ହୋଇଥାଏ । ଯେଉଁ ସମାଜରେ ବିଚାରଶୀଳତା ପରିବର୍ତ୍ତେ କୁସଂସ୍କାର ସାଧାରଣ ଜୀବନ ପ୍ରବାହରେ ଅଧିକ ପ୍ରସାର ଲାଭ କରୁଥାଏ ତାହା କ୍ଷୟଶୀଳ ହୋଇଥାଏ । ପୁନଶ୍ଚ ଅତୀତର ସମାଜରେ କୁସଂସ୍କାର ନିର୍ଦ୍ଦିଷ୍ଟ ପରିସରରେ ସୀମାବଦ୍ଧ ହୋଇ ରହୁଥିବା ବେଳେ ସଂପ୍ରତି ଏହାର ବ୍ୟାପକତା ଦୃଷ୍ଟିଗୋଚର ହୁଏ । ସାଂପ୍ରତିକ ଗଣମାଧ୍ୟମ ଓ ସମ୍ବାଦପତ୍ରର ବହୁଳ ପ୍ରସାର ଯୋଗୁଁ କୁସଂସ୍କାର ଶୀଘ୍ର ବ୍ୟାପକ ହୋଇଥାଏ ।

କିନ୍ତୁ କୁସଂସ୍କାର କହିଲେ କ'ଣ ବୁଝାଏ ? ଏହାର କିଛି ସାଧାରଣ ବା ସାର୍ବିକ ସଂଜ୍ଞା ରହିଛି କି ? କୁସଂସ୍କାର ବା superstition ର ଅର୍ଥ ଅକ୍ସଫୋର୍ଡ ଅଭିଧାନରେ ଦିଆଯାଇଛି" .......credulity regarding the supernatural, irrational fear of the unknown or mysterious, misdirected reverence; a religion or particular opinion based on such tendencies." ଅର୍ଥାତ୍ କୁସଂସ୍କାର ହେଉଛି ଆଧିଦୈବିକ ଶକ୍ତିରେ ଅସନ୍ଦିଗ୍ଧ ବିଶ୍ୱାସ, ଅଜ୍ଞେୟ ଶକ୍ତି ପାଇଁ ଅହେତୁକ ଭୟ, ମିଥ୍ୟା ବା ରହସ୍ୟମୟ ଭକ୍ତି ଓ ସେହି ଭୟ ଯୋଗୁଁ କରୁଥିବା ଧର୍ମୀୟ ଉପାସନା ଓ କୌଣସି ଆଧାର ନ ଥାଇ ପୋଷଣ କରୁଥିବା କେତେକ ମତ । ସୁତରାଂ କୁସଂସ୍କାରର ଭିତ୍ତି ଅନ୍ଧବିଶ୍ୱାସ, ଭୟ, ଅହେତୁକ ମନୋଭାବ ଓ ଚିନ୍ତାଶୂନ୍ୟତା ଉପରେ ଗଢ଼ିଉଠିଥାଏ ।

ମଣିଷ ନିଜର ଅନୁଭୂତି, ଶିକ୍ଷା ଓ ଜ୍ଞାନଦ୍ୱାରା ସାମାଜିକ ପରିସ୍ଥିତି ଓ ପ୍ରାକୃତିକ ଘଟଣାବଳୀ ବୁଝିବାରେ ସମର୍ଥ ହୁଏ । କେତେକ ବ୍ୟକ୍ତି କୌତୂହଳୀ ହୋଇ ବିଭିନ୍ନ ବିଷୟ ଜାଣିବାକୁ ଅନୁସନ୍ଧାନରେ ବ୍ରତୀ ହୁଅନ୍ତି । ଜ୍ଞାନର ବିକାଶ ପଶ୍ଚାତରେ ଅନୁସନ୍ଧିତ୍ସୁ ଓ ଦୁଃସାହସୀ ବ୍ୟକ୍ତିଙ୍କର ଅବଦାନ ଥାଏ । କିନ୍ତୁ କୌତୂହଳ ପ୍ରବଣତାକୁ ପରିହାର କରି ଆଧିଦୈବିକ

ଶକ୍ତିରେ ଅହେତୁକ ଭୟ ଓ ବିଶ୍ୱାସ ଯୋଗୁଁ କେତେକ କୁସଂସ୍କାର ଉଦ୍ରେକ ହୋଇଥାଏ । ଯୁକ୍ତିଶୀଳ ଆଧାର ନ ଥାଇ ଅବାଚର ବିଶ୍ୱାସ ସକଳ ଉପରେ ଆସ୍ଥା ସ୍ଥାପନ କରିବାକୁ ଅନ୍ଧ ବିଶ୍ୱାସ କୁହାଯାଏ । ଅଜ୍ଞତା ଯୋଗୁଁ କେତେକ ଭାବନା ବା ଦୃଷ୍ଟିକୋଣ ପରମ୍ପରାକ୍ରମେ ସମାଜରେ ଚଳି ଆସି ମନସ୍ତାତ୍ତ୍ୱିକ ସ୍ତରରେ ବଦ୍ଧମୂଳ ହୋଇଯାଏ, ଯଦ୍ୱାରା ସେସବୁର ପ୍ରଭାବ ସହଜରେ ସମାଜରୁ ଦୂର ହୋଇପାରେ ନାହିଁ । ସେହିପରି ପ୍ରାଚୀନ ଶାସ୍ତ୍ର, ଧର୍ମଗ୍ରନ୍ଥ ଓ ପୁରାଣ ଇତ୍ୟାଦିରେ ଏପରି କେତେକ ଚମତ୍କାର କାଳ୍ପନିକ ଘଟଣାର ବର୍ଣ୍ଣନା ଦେଖିବାକୁ ମିଳେ ଯାହାକୁ ସାଧାରଣ ବ୍ୟକ୍ତି ବିଶେଷ ସତ୍ୟ ବୋଲି ଗ୍ରହଣ କରିନିଅନ୍ତି । ପୁନଶ୍ଚ ସାମାଜିକ ପ୍ରଭାବ ଥିବା କେତେକ ବ୍ୟକ୍ତିଙ୍କର କୁସଂସ୍କାର ଜନିତ ବିଶ୍ୱାସ ବା ଆଚରଣକୁ ଅନ୍ୟମାନେ ଅନୁକରଣ କରିବା ଦ୍ୱାରା କୁସଂସ୍କାର ବ୍ୟାପିଥାଏ । ନିଜକୁ ଅବତାର, ସିଦ୍ଧପୁରୁଷ, ଦିବ୍ୟ ଦୃଷ୍ଟିର ଅଧିକାରୀ ଆଦି କହି ଓ ଚମତ୍କାରିତା ଦେଖାଇ କେହି କେହି ଜନଗଣଙ୍କ ଭିତରେ ନାନା ଅହେତୁକ ଭାବନା ସୃଷ୍ଟି କରିଥାନ୍ତି । ନିଜର ପ୍ରତିଷ୍ଠା ପାଇଁ ଯୋଜନାବଦ୍ଧ ଭାବରେ ସମାଜର ପ୍ରଭାବଶାଳୀ ବ୍ୟକ୍ତିଙ୍କ ମାଧ୍ୟମରେ ସେମାନେ ଅନ୍ଧବିଶ୍ୱାସର ପ୍ରସାର କରିଥାନ୍ତି । କେତେକ ସମ୍ବାଦପତ୍ର ଓ ଗଣମାଧ୍ୟମ ଏପରି କେତେକ କୁସଂସ୍କାର ଜନିତ ସମ୍ବାଦ ପ୍ରକାଶ କରନ୍ତି ଯାହା ଅନ୍ଧବିଶ୍ୱାସର ପ୍ରସାର ଦିଗରେ ସାହାଯ୍ୟ କରିଥାଏ । ଏହିପରି ନାନା କାରଣ ମଧ୍ୟଦେଇ ସମାଜରେ କୁସଂସ୍କାର ପ୍ରସାର ଲାଭ କରିଥାଏ ।

କୁସଂସ୍କାରର ପରିସର ବହୁ ବ୍ୟାପକ ମନେହୁଏ । ଏହା ଖାଦ୍ୟ, ପୋଷାକ, ଶୟନ, ଯାତ୍ରା, ବ୍ୟବସାୟ, ବିବାହ, ଗର୍ଭଧାରଣ, ଜନ୍ମ, ମୃତ୍ୟୁ, ରୋଗ, ଚାଷବାସ, ବୃତ୍ତି, ପ୍ରସାଧାନ, ଦାନ ଇତ୍ୟାଦି ନାନା କ୍ଷେତ୍ରରେ ରହିବା ଦେଖାଯାଏ । କେତେକ ବାର ବା ତିଥିରେ ନିର୍ଦ୍ଦିଷ୍ଟ ଖାଦ୍ୟ ନ ଖାଇବା, ନୂଆ ବସ୍ତ୍ର ପରିଧାନ କରିବା ପାଇଁ ତିଥିବାର ଦେଖିବା ବା ସେଥିରେ ହଳଦି ଲଗାଇବା, ନିର୍ଦ୍ଦିଷ୍ଟ ଦିଗକୁ ମୁଣ୍ଡକରି ଶୋଇବା, ଯାତ୍ରା ସମୟରେ ବେଳ କାଳ ଦେଖି ବାହାରିବା ଓ ନିଶ୍ୱାସ-ପ୍ରଶ୍ୱାସ ଦେଖି ଗୋଡ଼ ବାହାର କରିବା, କେତେକ ବାର ବା ତିଥିରେ ବାଳ ବା ଦାଢ଼ି ଖିଅର ନ ହେବା, ଗୃହ ନିର୍ମାଣ ବା ବିବାହ ଇତ୍ୟାଦି କାର୍ଯ୍ୟ ପାଇଁ ଶୁଭ ଲଗ୍ନ ବାହାର କରିବା, ରୋଗରେ ଆକ୍ରାନ୍ତ ହେଲେ ଗ୍ରହ ଶାନ୍ତି କରିବା, ପରୀକ୍ଷା ବା ସାକ୍ଷାତକାର ପାଇଁ ଗଲାବେଳେ ପୂର୍ଣ୍ଣ କୁମ୍ଭ ଦେଖି ଯିବା ଇତ୍ୟାଦି ଅସଂଖ୍ୟ ଉଦାହରଣ ଦିଆଯାଇପାରେ । ସେହିପରି କେତେକ ଜୀବ ବା ଜନ୍ତୁଙ୍କର ଶବ୍ଦ ବା ଦୃଶ୍ୟକୁ ଶୁଭ ଓ ଅନ୍ୟ କେତେକ ଜୀବଙ୍କୁ ଅଶୁଭ, କେତେକ ସଂଖ୍ୟାକୁ ପବିତ୍ର ଓ ଅନ୍ୟ ସଂଖ୍ୟାକୁ ଅପବିତ୍ର, କେତେକ ବସ୍ତୁକୁ ପୁଣ୍ୟ ବୋଲି ଗ୍ରହଣ କରିବା ଇତ୍ୟାଦି ନାନା ଅହେତୁକ ବିଶ୍ୱାସ ରହିବା ଦେଖାଯାଏ । ଏସବୁ ବଶ୍ୱାସ ବିଭିନ୍ନ ସାମାଜିକ ପରିବେଶରେ ଥାଏ ଓ ସେଗୁଡିକ ଧର୍ମ, ସ୍ଥାନ, କାଳ ଭେଦରେ ପୃଥକ୍ ପୃଥକ୍ ହୋଇଥାଏ । କେତେକ କାର୍ଯ୍ୟ- ତାହା ବ୍ୟକ୍ତିଗତ ହେଉ ବା ସାମୂହିକ ହେଉ- ପୁରୁଷାନୁକ୍ରମେ କରାଯାଉଥିଲେ ତାହା ଅବଚେତନ ସ୍ତରରେ ବଦ୍ଧମୂଳ ହୋଇଯାଏ । ପରମ୍ପରା ରକ୍ଷାକରି ତାହାକୁ ଅତୀତର ବିଧି ଅନୁଯାୟୀ କରାଯାଏ ଅଥଚ ସେସବୁର କୌଣସି ଉପଯୋଗିତା ନଥାଏ । ଏହିପରି କେତେକ କୁସଂସ୍କାର ପରମ୍ପରା କ୍ରମରେ ସାମାଜିକ ଜୀବନରେ ଚଳି ଆସିଥାଏ ।

ସମାଜରେ ଏପରି କେତେକ କୁସଂସ୍କାର ଦେଖାଯାଏ ଯାହା ବିଜ୍ଞାନର ଭିତ୍ତିକୁ ଆହ୍ୱାନ ଦେଇଥାଏ । ପ୍ରତିଷ୍ଠିତ ପ୍ରାକୃତିକ ନିୟମକୁ ବିରୁଦ୍ଧାଚରଣ କରି ସେହି କୁସଂସ୍କାର ଥାଏ । ଶୂନ୍ୟରୁ ବସ୍ତୁ ସୃଷ୍ଟି ହେବା ସମ୍ଭବ, ପ୍ରର୍ଥନା ଦ୍ୱାରା ବର୍ଷା କରାଯାଇ ପାରିବ, ଯୋଗ ଶକ୍ତିଦ୍ୱାରା ମାଧ୍ୟାକର୍ଷଣ ଶକ୍ତିକୁ ଉଲ୍ଲଙ୍ଘନ କରିହେବ, ଆଧାତ୍ମିକ ଶକ୍ତି ଦ୍ୱାରା ଦୂର ସମ୍ବେଦନ ସାମର୍ଥ୍ୟ ଆସିପାରିବ ଓ ଆଗତ ଭବିଷ୍ୟତ ଏବଂ ଅତୀତ ଦୃଷ୍ଟିଗୋଚର ହେବ, ମନ୍ତ୍ରଦ୍ୱାରା ଶରୀର ଭିତରୁ ବିଷାକ୍ତ ବସ୍ତୁକୁ ନିର୍ଗତ କରିହେବ, ସିଦ୍ଧି ପ୍ରାପ୍ତ ହେଲେ ଜଳ ଉପରେ ଚାଲିହେବ, ଧ୍ୟାନଦ୍ୱାରା ଭୂମି ଉପରୁ ଶୂନ୍ୟକୁ ଉଠିହେବ ଇତ୍ୟାଦି

ବିଶ୍ୱାସଗୁଡିକ ସମାଜରେ ଦେଖାଯାଏ । ସେହିପରି କେତେକ ବିଶ୍ୱାସର ବୈଜ୍ଞାନିକ ଭିତ୍ତି ଥିବା ବେଳକେ ଯୁକ୍ତି କରାଯାଏ । ଫଳିତ ଜ୍ୟୋତିଷ ବା ସାମୁଦ୍ରିକ ବିଜ୍ଞାନସମ୍ମତ ବୋଲି ଏକ ସାଧାରଣ ବିଶ୍ୱାସ ସମାଜରେ ଦେଖାଯାଏ । ବିଜ୍ଞାନ ବସ୍ତୁନିଷ୍ଠ ପଦ୍ଧତି ଅବଲମ୍ବନରେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଦ୍ୱାରା ଘଟଣାବଳୀକୁ ବିଶ୍ଳେଷଣ କରି କାର୍ଯ୍ୟକାରଣ ନିୟମ ଅବଲମ୍ବନରେ ସମାନ୍ୟୀକରଣ କରିଥାଏ । ତାହାଦ୍ୱାରା ପ୍ରାକୃତିକ ନିୟମରାଜି କ୍ଷେତ୍ରରେ ଏକ ବ୍ୟତିକ୍ରମବିହୀନ କ୍ରମ ପ୍ରତିଷ୍ଠା ହୁଏ ଯାହା ସକଳ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଦେଖାଯାଏ । ପ୍ରକୃତିରେ ସୃଷ୍ଟ ପ୍ରତ୍ୟେକ ଘଟଣା ପଶ୍ଚାତରେ ପ୍ରାକୃତିକ କାରଣ ଥାଏ ଓ ସେହି ପ୍ରାକୃତିକ କାରଣ ବା ନିୟମରାଜିକୁ ନିର୍ଦ୍ଦିଷ୍ଟ ପ୍ରଣାଳୀ ସାହାଯ୍ୟରେ ବ୍ୟାଖ୍ୟା କରାଯାଏ । ବୈଜ୍ଞାନିକ ବ୍ୟାଖ୍ୟା କ୍ଷେତ୍ରରେ ଯେପରି ବସ୍ତୁନିଷ୍ଠ ପ୍ରଣାଳୀ ଅବଲମ୍ବନ କରାଯାଏ ଫଳିତ ଜ୍ୟୋତିଷ ବା ସାମୁଦ୍ରିକ ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ସେପରି କରାଯାଏ ନାହିଁ ଏବଂ ସେମାନଙ୍କ କ୍ଷେତ୍ରରେ ବୈଜ୍ଞାନିକ କ୍ରମ ବା ତଥ୍ୟପରକ ସତ୍ୟତା ନଥାଏ । ସମାଜରେ ସେସବୁ ଯୁଗ ଯୁଗ ଧରି ଚଳି ଆସିଥିବା ଯୋଗୁଁ ସେସବୁର ସତ୍ୟତା ନେଇ ଏକ ବିଶ୍ୱାସ ରହିଥାଏ ।

କେତେକ କୁସଂସ୍କାର ସମାଜ ବିରୋଧୀ ଓ ଅତ୍ୟନ୍ତ ଭୟାନକ ମନେହୁଏ । ଦେବୀଙ୍କୁ ମଣିଷ ବଳି ଦ୍ୱାରା ସନ୍ତୁଷ୍ଟ କଲେ ମନସ୍କାମନା ପୂର୍ଣ୍ଣ ହେବ ବା ପୁତ୍ର ସନ୍ତାନ ଲାଭ ହେବ, ମାଟି ଦେବତାକୁ ରକ୍ତ ଦେଲେ ଭଲ ଫସଲ ଉତ୍ପାଦିତ ହେବ, କେତେକ ପୂଜା କଲେ ନିଜର ଅର୍ଥ ଦ୍ୱିଗୁଣିତ ହେବ, ତନ୍ତ୍ର ସାଧନାଦ୍ୱାରା ଅପ୍ରାପ୍ତ ବସ୍ତୁ ମିଳିପାରିବ ଇତ୍ୟାଦି ବିଶ୍ୱାସ ସମାଜ ପାଇଁ କ୍ଷତିକାରକ ଅଟେ । ସେହିପରି ନିଜ ପରିବାରର କୌଣସି ବ୍ୟକ୍ତିଙ୍କର ଅସୁସ୍ଥତା ବା ମୃତ୍ୟୁ ପାଇଁ ଅନ୍ୟ ପରିବାରର ଗୁଣି ଗାରେଡିକୁ ଦାୟୀ କରିବା, ଗୋଟିଏ ଗ୍ରାମରେ କିଛି ବିପର୍ଯ୍ୟୟ ହେଲେ ଅନ୍ୟ ଗ୍ରାମର ଲୋକମାନଙ୍କର ମନ୍ତ୍ର ତନ୍ତ୍ର ପ୍ରୟୋଗର ଫଳବୋଲି ଭାବିବା ଦ୍ୱାରା ପରସ୍ପର ଭିତରେ ତିକ୍ତତାର ବାତାବରଣ ସୃଷ୍ଟି ହୋଇଥାଏ । ଏହି ପ୍ରକାରର ବିଶ୍ୱାସର ବଶବର୍ତ୍ତୀ ହୋଇ ବ୍ୟକ୍ତି ବିଶେଷ ସାମାଜିକ ସ୍ଥିରତା ଓ ଶୃଙ୍ଖଳାକୁ ବ୍ୟାହତ କରିଥାନ୍ତି । ବଳିପ୍ରଥା ପରି ଭାବନା ଏକ ଜଘନ୍ୟ ଓ ଅସାମାଜିକ କାର୍ଯ୍ୟ ଅଟେ, କାରଣ ଏହା ଅନ୍ୟ ବ୍ୟକ୍ତିର ଜୀବନ ପ୍ରତି ବିପଦ ଆଣିଥାଏ । ସେହିପରି ଯେଉଁ କେତେକ ବିପଦପୂର୍ଣ୍ଣ ବା ଅଘଟଣ ଘଟଣା ସାଧାରଣତଃ ପ୍ରାକୃତିକ ଭାବରେ ଘଟିଥାଏ ସେପାଇଁ ଅନ୍ୟ ଉପରେ ଦୋଷଦେବା ଏକ ଅହେତୁକ ଭାବନା ଅଟେ । ଏହି ପ୍ରକାରର କୁସଂସ୍କାରରୁ ସମୟେ ସମୟେ ଗ୍ରାମ ଗ୍ରାମ ଭିତରେ ସଂଘର୍ଷ ଜନିତ ପରିସ୍ଥିତି ସୃଷ୍ଟି ହୋଇଥାଏ ।

କୁସଂସ୍କାରର ପରିସର ବହୁ ବ୍ୟାପକ ମନେ ହେଉଥିଲେ ବି ଏଗୁଡିକୁ କେତେକ ଶ୍ରେଣୀରେ ବିଭାଜିତ କରିବା ଅସମ୍ଭବ ନୁହେଁ । ଅବଶ୍ୟ ସେମାନଙ୍କର ବିଭାଜନ କ୍ଷେତ୍ରରେ ବିଭିନ୍ନ ମାନଦଣ୍ଡ ରହିପାରେ । କୁସଂସ୍କାରର ସ୍ୱରୂପ ନେଇ ସେମାନଙ୍କୁ ଧର୍ମଗତ, ପରମ୍ପରାଗତ, ବୃତ୍ତିଗତ ଓ ବ୍ୟକ୍ତିଗତ ବୋଲି ଶ୍ରେଣୀ ବିଭାଜନ କରାଯାଇ ପାରେ । ଏହି ବିଭାଜନ ଏକ ଶୁଦ୍ଧ ବିଭାଜନ ନୁହେଁ, କାରଣ କେତେକ କୁସଂସ୍କାର ଉଭୟ ଶ୍ରେଣୀରେ ରହିପାରେ । ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ସମୁଦ୍ରରେ ବୁଡ଼ ପକାଇଲେ ସ୍ୱର୍ଗ ପ୍ରାପ୍ତି ହେବ ବା ପାପ କ୍ଷୟ ହେବ, କାଳ୍ପନିକ ଦେବତାଙ୍କର ମନୋରଞ୍ଜନ ପାଇଁ ଦେବଦାସୀ ରହିବା ଆବଶ୍ୟକ, ଶ୍ରାଦ୍ଧ ଦିବସରେ ପୂଜକଙ୍କୁ ଦାନ ଦ୍ୱାରା ମୃତ ଆତ୍ମାର ସଦ୍‌ଗତି ହେବ ଇତ୍ୟାଦି ବିଶ୍ୱାସ ଗୁଡିକ ଗୋଟିଏ ଧର୍ମର ଲୋକଙ୍କ ପାଖରେ ପରମ୍ପରାକ୍ରମେ ଚଳି ଆସିବା ଦେଖାଯାଏ । ବିଭିନ୍ନ ଧର୍ମ ପରମ୍ପରାରେ ମଧ୍ୟ କୁସଂସ୍କାର ଦେଖିବାକୁ ମିଳିଥାଏ । ବିଭିନ୍ନ ଧର୍ମ ପରମ୍ପରାରେ ପ୍ରଚଳିତ ଥିବା ବହୁ ଲୋକବିଶ୍ୱାସ, ଧର୍ମଗ୍ରନ୍ଥରେ ବର୍ଣ୍ଣିତ ନାନା କାହାଣୀ, ବିଭିନ୍ନ ପୁରାଣମାନଙ୍କରେ ବର୍ଣ୍ଣିତ କେତେକ ଘଟଣା ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଥାଏ । କେତେକ ପରମ୍ପରାଗତ ଚଳଣି ଧର୍ମୀୟ ବିଶ୍ୱାସ ଉପରେ ଆଧାରିତ ଥିବାବେଳେ ଅନ୍ୟ କେତେକ କ୍ଷେତ୍ରରେ କେବଳ

ପ୍ରାଚୀନତା ରହିଥାଏ । କେତେକ ପରମ୍ପରା ପ୍ରାଚୀନ କାଳରୁ ଚଳି ଆସିଥିବା ଯୋଗୁଁ ସେଗୁଡ଼ିକର ଯଥାର୍ଥତା ପ୍ରତି ଧ୍ୟାନ ଦିଆ ନଯାଇ ସେସବୁକୁ ଏକ ସାଂସ୍କୃତିକ ପ୍ରବାହର ଅଙ୍ଗ ଭାବରେ ନିଆଯାଏ । ଅତି ସୂକ୍ଷ୍ମ ସ୍ତରରେ କେତେକ ବିଶ୍ୱାସ, ଭାବନା ଆଦି ସାମାଜିକ ଅବଚେତନରେ ବଦ୍ଧମୂଳ ହୋଇ ରହିଥାଏ । ସେହିପରି ବୃତ୍ତି ଅନୁଯାୟୀ ନିର୍ଦ୍ଦିଷ୍ଟ କୁସଂସ୍କାର ଦେଖିବାକୁ ମିଳିଥାଏ । କେତେକ କାର୍ଯ୍ୟ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ବ୍ୟକ୍ତି କରିବା ବା ନ କରିବା ନେଇ ସ୍ଥଳ ବିଶେଷରେ ସାମାଜିକ କଟକଣା ଥାଏ । ବିଶେଷକରି ଜାତିଭିତ୍ତିକ ସମାଜରେ ବୃତ୍ତିଗତ 'ଜୀବିକା କ୍ଷେତ୍ରରେ ପ୍ରଚଳିତ ଚଳଣିକୁ ମାନି ନିଆଯାଏ । ବ୍ୟକ୍ତିଗତ କୁସଂସ୍କାର ବ୍ୟାପକ ଅଟେ । ସମାଜରେ ବିଭିନ୍ନ ବ୍ୟକ୍ତି ନାନା ପ୍ରକାରର ଅହେତୁକ ବିଶ୍ୱାସକୁ ନିଜର ଜୀବନଚର୍ଯ୍ୟା ଭିତରେ ଗ୍ରହଣ କରିଥାନ୍ତି ଓ ସେସବୁକୁ ପାଳନ କରିବା ନେଇ ଭାବ ପ୍ରବଣତା ଦେଖାଇଥାନ୍ତି । ହୁଏତ ସ୍ଥଳ ବିଶେଷରେ ସାମାଜିକ ଚଳଣିର ପ୍ରଭାବରୁ ବ୍ୟକ୍ତି କେତେକ ବିଶ୍ୱାସକୁ ଜୀବନରେ ବଦ୍ଧମୂଳ କରି ଧରିଥାଏ କିମ୍ବା ନିଜେ କେତେକ ବିଶ୍ୱାସ ସୃଷ୍ଟି କରି ଅହେତୁକ ଭାବରେ ସେଥିରେ ବିଶ୍ୱାସ କରୁଥାଏ । ବ୍ୟକ୍ତିଗତ ବିଶ୍ୱାସ, ରୁଚି, କାର୍ଯ୍ୟ କ୍ଷେତ୍ରରେ ସେପରି କିଛି ଆଧାର ନ ଥାଇ କେବଳ ମନସ୍ତାତ୍ତ୍ୱିକ ସ୍ତରର ଆବେଗ ହୋଇଥିଲେ ଓ ତାହା ପାଳନ କରିବାରେ ବ୍ୟକ୍ତି ଅହେତୁକ ଶ୍ରଦ୍ଧା ପ୍ରକାଶ କରୁଥିଲେ ତାହା ବ୍ୟକ୍ତିଗତ ସ୍ତରର କୁସଂସ୍କାର ହୋଇଥାଏ । କେତେକ ବିଶ୍ୱାସ ସମାଜରେ ମୁଷ୍ଟିମେୟ ବ୍ୟକ୍ତିଙ୍କ ପାଖରେ ସୀମିତ ଥିବାବେଳେ କେତେକ ବ୍ୟକ୍ତିଗତ ସ୍ତରର ବିଶ୍ୱାସ କାଳକ୍ରମେ ସାମାଜିକ ସ୍ୱୀକୃତି ଲାଭ କରି ସମାଜରେ ପ୍ରଚଳିତ ହୋଇଯାଏ ।

କୁସଂସ୍କାର ଅଶିକ୍ଷିତ ବା ସାଧାରଣ ଲୋକଙ୍କ ପାଖରେ ଯେପରି ଦେଖିବାକୁ ମିଳେ, ସେହିପରି ଉଚ୍ଚଶିକ୍ଷା ଥିବା ଓ ସାମାଜିକ ପ୍ରତିଷ୍ଠା ଥିବା ଲୋକଙ୍କ ପାଖରେ ମଧ୍ୟ ଦେଖିବାକୁ ମିଳେ । ଅଧିକାଂଶ କୁସଂସ୍କାର ପଶ୍ଚାତରେ ଅଜ୍ଞତା ଜନିତ ଭୟ ଥାଏ । ଦୁଃଖ, ଉତ୍କଣ୍ଠା, ଅନିଶ୍ଚିତତା, ନୈରାଶ୍ୟ, ରୋଗ ଓ ମୃତ୍ୟୁ ଇତ୍ୟାଦି ଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ରହିଛି । ଆବଶ୍ୟକ ସ୍ଥଳେ ଏକ ଅଜ୍ଞାତ ମହତର ଶକ୍ତି ପ୍ରତିକୂଳ ପରିସ୍ଥିତିରେ ସହାୟକ ହେବ ବୋଲି ଏକ ମାନସିକତା ସମାଜରେ ରହିଛି । ଜୀବନ ସଂଗ୍ରାମ ଭିତରେ ନିଜର ଅସହାୟବୋଧ ଯୋଗୁଁ ମଣିଷ କୁସଂସ୍କାରରେ ବିଶ୍ୱାସ କରିଛି । ଏତଦ୍‌ବ୍ୟତୀତ ନିଜ ପରିବେଶରେ ମଣିଷ ନାନା କାଳ୍ପନିକ ବ୍ୟାଖ୍ୟାର ଆଶ୍ରୟ ନେଇଛି । ପୁରୁଷାନୁକ୍ରମେ ସେହି କାଳ୍ପନିକ ଭାବନାଗୁଡ଼ିକ ସତ୍ୟପରକ ବୋଲି ସାମାଜିକ ସ୍ୱୀକୃତି ଲାଭ କରି ବ୍ୟକ୍ତିର ମାନସିକତାକୁ ଆଚ୍ଛାଦିତ କରଛି ।

ସେହିପରି ଧର୍ମଧାରଣା, ପରମ୍ପରା ଓ ସାମାଜିକ ପରିବେଶରେ ଥିବା ବିଭିନ୍ନ ଚଳଣିର ସମ୍ମିଳିତ ପ୍ରଭାବ ବ୍ୟକ୍ତି ମାନସକୁ ପ୍ରଭାବିତ କରିଥାଏ । ବ୍ୟକ୍ତି ଭିତରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ଦୃଢ଼ ମାନସିକ ସାମର୍ଥ୍ୟ ନ ଥିଲେ ସାମାଜିକ ଚଳଣିର ପ୍ରଭାବରୁ ମୁକ୍ତ ରହିବା ସମ୍ଭବ ହୋଇନଥାଏ । ଏପରିକି ସାମାଜିକ ପ୍ରଭାବ ଦ୍ୱାରା ବ୍ୟକ୍ତି ମାନସିକ ସ୍ତରରେ ସର୍ତ୍ତବଦ୍ଧ ହୋଇଯିବା ଦ୍ୱାରା କୁସଂସ୍କାର ଓ ବାସ୍ତବତା ମଧ୍ୟରେ ପ୍ରଭେଦ କରିପାରେ ନାହିଁ । ଏତଦ୍‌ବ୍ୟତୀତ କେତେକ ତଥାକଥିତ ଅବତାର ପୁରୁଷ ଓ ରହସ୍ୟବାଦୀ ବ୍ୟକ୍ତି କୁସଂସ୍କାରର ପ୍ରସାର ପାଇଁ ଦାୟୀ ଅଟନ୍ତି ।

କେତେକ କୁସଂସ୍କାର ଏପରି ପରମ୍ପରାଗତ ହୋଇଯାଏ ଯେ ତା'ର ବିରୋଧ ଭାବପ୍ରବଣତା ଜନିତ ଗଭୀର ଆଲୋଡ଼ନ ସୃଷ୍ଟି କରିଥାଏ । କେତେକ ପର୍ବ ପର୍ବାଣୀ ବା ସାମାଜିକ ଉତ୍ସବରେ ପାଳିତ ହେଉଥିବା ଔପଚାରିକତା ଯେତେ ଅର୍ଥଶୂନ୍ୟ ହେଲେବି ତାହାକୁ ପାଳନ କରାଯାଏ । ଏପରିକି କେତେକ ବ୍ୟକ୍ତି କୁସଂସ୍କାରକୁ ଅନୁଭବ କଲେ ମଧ୍ୟ ତାହାକୁ ବିରୋଧ କଲେ ସାମାଜିକ କଟାକ୍ଷର ସମ୍ମୁଖୀନ ହେବାର ଆଶଙ୍କା ଯୋଗୁଁ ପ୍ରଚଳିତ ବିଶ୍ୱାସ ସକଳକୁ ବାଧ୍ୟ ହୋଇ ଗ୍ରହଣ

କରିନିଅନ୍ତି । ଫଳରେ ସେସବୁ ସାମାଜିକ ଚଳଣିରେ ଜୀବନ୍ତ ହୋଇ ରହେ । କେତେକ କୁସଂସ୍କାରର ପ୍ରାଚୀନତା ଯୋଗୁଁ ସେସବୁ ଯେତେ ଅର୍ଥହୀନ ହେଲେ ମଧ୍ୟ ସେସବୁକୁ ସାଂସ୍କୃତିକ ଜୀବନଧାରାର ଅଙ୍ଗ ଭାବରେ ନିଆଯାଏ ।

ସୁତରାଂ ମନସ୍ତାତ୍ତ୍ୱିକ, ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ କାରଣରୁ ସମାଜରେ କୁସଂସ୍କାର ରହିବା ଦେଖାଯାଏ । କୁସଂସ୍କାର ପଶ୍ଚାତରେ ଏକ ବା ଏକାଧିକ ଜଟିଳ କାରଣ ଥାଇପାରେ । ସ୍ଥଳ ବିଶେଷରେ ଏହା ସୂକ୍ଷ୍ମ ଭାବରେ ମଧ୍ୟ ପ୍ରକାଶ ପାଇଥାଏ । କେତେକ ବ୍ୟକ୍ତି ବୈଜ୍ଞାନିକ ଚିନ୍ତନର ସମର୍ଥକ ହୋଇ ମଧ୍ୟ ଜୀବନର କେତେକ ବ୍ୟାପାରରେ କୁସଂସ୍କାରରୁ ସଂପୂର୍ଣ୍ଣ ମୁକ୍ତ ରହିପାରନ୍ତି ନାହିଁ ।

କିନ୍ତୁ କୁସଂସ୍କାର ଏକ ରୁଦ୍ଧ ମାନସିକତାର ପ୍ରତୀକ ଅଟେ । ଏହା ଅନୁସନ୍ଧିତ୍ସାମୂଳକ ମନୋଭାବ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । ଜ୍ଞାନ ସତ୍ୟପରକ ହୋଇଥିବାବେଳେ କୁସଂସ୍କାର ଭିତ୍ତିହୀନ ଓ ଅବାନ୍ତର ବିଶ୍ୱାସକୁ ସୂଚାଏ । କୁସଂସ୍କାର ନୈତିକ ମୂଲ୍ୟବୋଧର ମଧ୍ୟ ପ୍ରତିକୂଳ ମନେହୁଏ । ନୈତିକ ଆଚରଣ ବା ସାମାଜିକ କର୍ତ୍ତବ୍ୟବୋଧ ଅପେକ୍ଷା ପାରଲୌକିକ ବିଶ୍ୱାସ ବ୍ୟକ୍ତି-ବିଶେଷଙ୍କୁ ବେଳକେ ଅଧିକ ପ୍ରଭାବିତ କରିଥାଏ । କେତେକ ବିଶ୍ୱାସର ବଶବର୍ତ୍ତୀ ହୋଇ ଅନ୍ୟକୁ ଅସ୍ପୃଶ୍ୟ ବୋଲି ଭାବିବା, ସତୀପ୍ରଥାକୁ ସମର୍ଥନ କରିବା, ମନ୍ଦିରରେ ବଳିଦାନକୁ ଶାସ୍ତ୍ରସମ୍ମତ ବୋଲି କହିବା ଓ ସମାଜ ବିରୋଧୀ କାର୍ଯ୍ୟରେ ଲିପ୍ତ ଥାଇ ଧର୍ମୀୟ ଉପାସନାକୁ ଗୁରୁତ୍ୱ ଦେବାର ବହୁ ଦୃଷ୍ଟାନ୍ତ ସାମାଜିକ ଜୀବନରେ ଦୃଷ୍ଟିଗୋଚର ହୁଏ । ନାନା ଅହେତୁକ ପୂଜା ପାର୍ବଣରେ ସଂପୃକ୍ତ ରହିଥିବା ଅଥଚ ସାମାଜିକ କର୍ତ୍ତବ୍ୟ ପ୍ରତି ଉଦାସୀନ ଥିବା ବହୁ ଦୃଷ୍ଟାନ୍ତ ସମାଜରେ ମିଳିଥାଏ । ନାଗରିକ ଶୃଙ୍ଖଳା ଓ କର୍ତ୍ତବ୍ୟବୋଧ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଉଦାସୀନତା ଦେଖାଯାଉଥିବା ବେଳେ ମନ୍ଦିର ନିର୍ମାଣ, ଧର୍ମୀୟ ଔପଚାରିକତା ଓ ସାଂପ୍ରଦାୟିକ ବିଦ୍ୱେଷ କ୍ଷେତ୍ରରେ ଯଥେଷ୍ଟ କ୍ରିୟାଶୀଳତା ପ୍ରକାଶ ପାଏ । ଏହା ଯେ ସାଂସ୍କୃତିକ ଅବକ୍ଷୟର ସୂଚନା ଦିଏ ଏହା ନିଃସନ୍ଦେହ ଭାବେ କୁହାଯାଇପାରେ ।

ପ୍ରଶ୍ନ ହେଉଛି-କୁସଂସ୍କାରର ବିଲୋପସାଧନ ସମ୍ଭବ କି ? ଆଧୁନିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ବିକାଶ ସତ୍ତ୍ୱେ କୁସଂସ୍କାର ତିଷ୍ଠି ରହିବା ଏକ ବିଡମ୍ବନା ନିଶ୍ଚୟ । କିନ୍ତୁ ସମାଜରେ ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ନ ହେଲେ କୁସଂସ୍କାରର ବିଲୋପ ସମ୍ଭବ ନୁହେଁ । କାରଣ କୁସଂସ୍କାର ଓ ବୈଜ୍ଞାନିକ ଦୃଷ୍ଟିକୋଣ ମଧ୍ୟରେ ବିପରୀତମୁଖୀ ପରିବର୍ତ୍ତନ ଜନିତ ସମ୍ବନ୍ଧ ଦେଖିବାକୁ ମିଳେ । ବୈଜ୍ଞାନିକ ଦୃଷ୍ଟିକୋଣ ଯେଉଁ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ସେହି ସମାଜରେ କୁସଂସ୍କାର ସେତିକି କମ୍; ଅଥଚ ଯେଉଁ ପରିବେଶରେ ତାହା ଯେତିକି କମ୍, ସେଠାରେ କୁସଂସ୍କାର ସେତେ ଅଧିକ । ସୁତରାଂ କୁସଂସ୍କାରର ବିଲୋପ ପାଇଁ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ପାଇଁ ଦେଶର ଶିକ୍ଷା ବ୍ୟବସ୍ଥା ଓ ଗଣମାଧ୍ୟମର ଭୂମିକା ଯଥେଷ୍ଟ ବେଶି, କାରଣ ଜନଜୀବନକୁ ତାହା ଗଭୀର ଭାବରେ ପ୍ରଭାବିତ କରିଥାଏ । ସୁତରାଂ ଅନୁସନ୍ଧିତ୍ସୁ ମନୋଭାବ, ସତ୍ୟର ଉଦ୍‌ଘାଟନ ପ୍ରତି ଅନୁରକ୍ତି ତଥା ବିଚାରଶୀଳ ଭାବନାର ବିକାଶକୁ ପ୍ରସାର କରିବା ପାଇଁ ଶିକ୍ଷା ଓ ଗଣମାଧ୍ୟମ ଜରିଆରେ ପ୍ରୟାସ ଆବଶ୍ୟକ । ଏସବୁର ବିକାଶ ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରିବାବେଳେ ଏହାର ଅଭାବ କୁସଂସ୍କାର ତିଷ୍ଠି ରହିବାରେ ସାହାଯ୍ୟ କରିଥାଏ ।



# ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ

ମଣିଷ ଅନୁସନ୍ଧିତ୍ସୁ । ଏହି ଅନୁସନ୍ଧିତ୍ସା ତା'ର ବୌଦ୍ଧିକ ସାମର୍ଥ୍ୟର ପରିଣାମ । ଭାଷା ବ୍ୟବହାର କରିବାର ସାମର୍ଥ୍ୟ ଓ ବୌଦ୍ଧିକତା ମଣିଷର ବୈଶିଷ୍ଟ୍ୟ ଯୋଗୁଁ ସେ ପ୍ରକୃତି ଓ ଜୀବନକୁ ବୁଝିବାକୁ ପ୍ରୟାସ କରିଆସିଛି । ସେହି ପ୍ରୟାସ ମଧ୍ୟ ଦେଇ ସମାଜ ଦୃଢ଼ ହୋଇଛି, ଶିକ୍ଷା, ସଭ୍ୟତା, ସଂସ୍କୃତିର ବିକାଶ ହୋଇଛି । ଜ୍ଞାନ ବିଜ୍ଞାନ ସ୍ତରରେ ମଣିଷ ସୋପାନ ପରେ ସୋପାନ ଅତିକ୍ରମ କରି ଆଧୁନିକ ଜୀବନଧାରା କ୍ଷେତ୍ରକୁ ଆସିଛି । ତେବେ ବିଜ୍ଞାନର ବିକାଶ ସଭ୍ୟତାର କ୍ରମବିକାଶକୁ ତ୍ୱରାନ୍ୱିତ କରିଛି । ଅବଶ୍ୟ ମଣିଷର ଅନୁସନ୍ଧିତ୍ସାର ଇତିହାସ ବହୁ ପ୍ରାଚୀନ ହେଲେ ବି ଆଧୁନିକ ବିଜ୍ଞାନର ଇତିହାସ ମାତ୍ର ତିନି ଚାରି ଶତାବ୍ଦୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜି ତ ବିଜ୍ଞାନ ସଭ୍ୟ ଜୀବନଧାରା ପାଇଁ ନିର୍ଣ୍ଣାୟକ ଭୂମିକା ନେଇପାରିଛି । ତେବେ ଶଂସିତ ପ୍ରବନ୍ଧରେ ବିଜ୍ଞାନ ଏବଂ ପ୍ରଯୁକ୍ତିର ମାନବିକ ରୂପ ବିଷୟରେ ସମ୍ୟକ ଆଲୋଚନା କରାଯାଇଛି । ଅବଶ୍ୟ ଏ ପ୍ରତ୍ୟେକ ପ୍ରସଂଗର ପରିସର ଏତେ ବ୍ୟାପକ ଯେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧର ପରିସରରେ ଏସବୁର ଏକ ବିସ୍ତୃତ ବ୍ୟାଖ୍ୟା ସମ୍ଭବ ନୁହେଁ । ସୁତରାଂ ଏଠାରେ ସେସବୁର କେତେକ ସାଧାରଣ ଲକ୍ଷଣକୁ ଦର୍ଶାଇବା ପାଇଁ ମାତ୍ର ଉଦ୍ୟମ କରାଯାଇଛି ।

(୧)

ପ୍ରଥମେ ବିଜ୍ଞାନ କହିଲେ କ'ଣ ବୁଝାଏ ସେ ବିଷୟରେ ସାମାନ୍ୟ ଆଲୋଚନା କରାଯାଉ । କେତେକ ବିଜ୍ଞାନର ସଂଜ୍ଞା ଦେବାକୁ ଯାଇ କହିଛନ୍ତି ଏହା ହେଉଛି 'ସୁବ୍ୟବସ୍ଥିତ ବା ପ୍ରଣାଳୀବଦ୍ଧ ଜ୍ଞାନ' । ବିଜ୍ଞାନକୁ ଯଦି କେବଳ ସୁବ୍ୟବସ୍ଥିତ ଜ୍ଞାନ ଭାବେ ନିଆଯାଏ, ଏହା ଏକ ବ୍ୟାପକ ସଂଜ୍ଞା ହେବ ଓ ସେପରି ସ୍ଥଳେ ଗଣିତ ପରି ଆକାରନିଷ୍ଠ ଅଧ୍ୟୟନ ଓ ନୀତିଶାସ୍ତ୍ର ପରି ମାନକୀୟ ଅଧ୍ୟୟନ (normative study) ଇତ୍ୟାଦି ବିଜ୍ଞାନର ଅନ୍ତର୍ଭୁକ୍ତ ହୋଇଯିବ । କାରଣ ଗଣିତ ପରି ଏକ ଆକାରନିଷ୍ଠ ଅଧ୍ୟୟନ ବା ନୀତିଶାସ୍ତ୍ର ଓ ସୌନ୍ଦର୍ଯ୍ୟଶାସ୍ତ୍ର ପରି ମାନକୀୟ ଅଧ୍ୟୟନ କ୍ଷେତ୍ରରେ ଲାଭ କରାଯାଉଥିବା ଜ୍ଞାନ ମଧ୍ୟ ସୁବ୍ୟବସ୍ଥିତ ଓ ପ୍ରଣାଳୀବଦ୍ଧ । ସେହିପରି ବିଜ୍ଞାନର ସଂଜ୍ଞା ଦେବାକୁ ଯାଇ ଯଦି କୁହାଯାଏ, 'ଏହା ବିଜ୍ଞାନାଗାରରେ ଲାଭ କରାଯାଉଥିବା ଜ୍ଞାନ' ତେବେ ଏହି ପ୍ରକାରର ସଂଜ୍ଞା ଅତି ସଂକୀର୍ଣ୍ଣ ହେବ । କାରଣ ସେପରି ସ୍ଥଳେ ସାମାଜିକ ବିଜ୍ଞାନ (social science) ବିଜ୍ଞାନ ପଦବାଚ୍ୟ ହେବ ନାହିଁ, ଯେହେତୁ ସମାଜ-ବିଜ୍ଞାନ ଜନିତ ଜ୍ଞାନକୁ ପରୀକ୍ଷାଗାର ଭିତରେ ପରୀକ୍ଷଣଦ୍ୱାରା ସୃଷ୍ଟି କରାଯାଏ ନାହିଁ । ସୁତରାଂ ବିଜ୍ଞାନର ସଂଜ୍ଞା ଏପରି ହେବା ଉଚିତ ଯାହା ପ୍ରାକୃତିକ ଓ ସାମାଜିକ ଅଧ୍ୟୟନ ଜନିତ ଜ୍ଞାନକୁ ବୁଝାଯିବ । ସେହି ପରିପ୍ରେକ୍ଷୀରେ ବୈଜ୍ଞାନିକ ଜ୍ଞାନର ଏକ ସନ୍ତୋଷଜନକ ସଂଜ୍ଞା ହେବ: 'ବିଜ୍ଞାନ ହେଉଛି ସୁବ୍ୟବସ୍ଥିତ, ବିଭାଗୀକୃତ ଓ ତଥ୍ୟଭିତ୍ତିକ ପର୍ଯ୍ୟବେକ୍ଷଣୀୟ ଜ୍ଞାନ, ଯାହା ଆରୋହ ପ୍ରଣାଳୀ ମଧ୍ୟ ଦେଇ ଉତ୍ପନ୍ନ ହୋଇଥାଏ' । ବିଜ୍ଞାନ ଘଟଣା ଓ ବସ୍ତୁସକଳକୁ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନ କରି ବ୍ୟାଖ୍ୟା କରିଥାଏ ।

ବିଜ୍ଞାନ ପ୍ରାକୃତିକ ସ୍ତରର ବସ୍ତୁ ଓ ଘଟଣା ପ୍ରବାହକୁ ଯେପରି ଶ୍ରେଣୀ ବିଭାଗ କରି ନିୟମ, ଏକରୂପତା ଓ ସାମାନ୍ୟୀକରଣ ସାହାଯ୍ୟରେ ବ୍ୟାଖ୍ୟା କରିଥାଏ ସେହିପରି ସାମାଜିକ ଜୀବନ ପ୍ରବାହର ଘଟଣା ପ୍ରବାହକୁ ବର୍ଗୀକରଣ କରି ସେ ସବୁକୁ ମଧ୍ୟ ସୁବ୍ୟବସ୍ଥିତ ଧାରାରେ ବିଶ୍ଳେଷଣ କରିଥାଏ । ପ୍ରକୃତିରେ ଥିବା ବିଭିନ୍ନ ବସ୍ତୁ ଓ ସୃଷ୍ଟି ହେଉଥିବା ଘଟଣାମାନଙ୍କୁ ଏହା କେତେକ ନିୟମ ଆଧାରରେ ବିଶ୍ଳେଷଣ କରିଥାଏ । ପ୍ରକୃତିରେ ଥିବା ବିଭିନ୍ନ ବସ୍ତୁ ଓ ସୃଷ୍ଟି ହେଉଥିବା ଘଟଣାମାନଙ୍କୁ କେତେକ ନିୟମ ଆଧାରରେ ବ୍ୟାଖ୍ୟା କରାଯିବା ଦ୍ୱାରା ପ୍ରକୃତି ବିଷୟକ ଜ୍ଞାନର ବିକାଶ ସମ୍ଭବ ହୋଇଛି । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ପ୍ରାଣୀ ବିଜ୍ଞାନ, କୃଷି ବିଜ୍ଞାନ, ଖଗୋଳ ବିଜ୍ଞାନ ପରି ବିଭିନ୍ନ ବିଭାଗଦ୍ୱାରା ପ୍ରକୃତିର ନାନା ସ୍ତରକୁ ବିଭିନ୍ନ ବର୍ଗୀକରଣ କରି ସେ ସବୁକୁ ଶୃଙ୍ଖଳିତ ଭାବେ ବ୍ୟାଖ୍ୟା କରାଯାଇ ପାରୁଛି । ସେହିପରି ସମାଜର ବିଭିନ୍ନ ଘଟଣା ପ୍ରବାହ ଓ ମାନବିକ ସମ୍ବନ୍ଧ ଇତ୍ୟାଦିକୁ ଶ୍ରେଣୀ ବିଭାଗ କରି ଅଧ୍ୟୟନ କରିବା ଦ୍ୱାରା ରାଜନୀତି ବିଜ୍ଞାନ, ଅର୍ଥନୀତି, ସମାଜ ଶାସ୍ତ୍ର, ନୃତତ୍ତ୍ୱ ଇତ୍ୟାଦି ବିଭିନ୍ନ ସମାଜ-ବିଜ୍ଞାନର ଉଦ୍ଭବ ହୋଇଛି । ପ୍ରାକୃତିକ ବିଜ୍ଞାନ ପ୍ରାକୃତିକ ଘଟଣା ଓ ବସ୍ତୁ ସକଳକୁ ବ୍ୟାଖ୍ୟା କରୁଥିବା ବେଳେ ସମାଜ-ବିଜ୍ଞାନ ସାମାଜିକ ଘଟଣା ପ୍ରବାହ ଓ ସମ୍ବନ୍ଧକୁ ବ୍ୟାଖ୍ୟା କରୁଛି । ତେବେ ଏ ଉଭୟ କ୍ଷେତ୍ରରେ ଏକା ପ୍ରଣାଳୀ ପ୍ରୟୋଗ କରାଯାଉଛି । ତଥ୍ୟ ଓ ଘଟଣାମାନଙ୍କର ବୈଜ୍ଞାନିକ ବ୍ୟାଖ୍ୟା କେବଳ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନରେ କରାଯାଉ ଥିବାରୁ ବିଜ୍ଞାନକୁ 'ପ୍ରଣାଳୀବଦ୍ଧ' ଜ୍ଞାନ କୁହାଯାଉଛି ଓ ଏହି ମାନଦଣ୍ଡରେ ପ୍ରାକୃତିକ ବିଜ୍ଞାନ ଓ ସାମାଜ-ବିଜ୍ଞାନ ପରସ୍ପର ସହ ସଂଯୋଜିତ ଓ ଉଭୟକୁ ଭୌତିକ-ବିଜ୍ଞାନର ଆଖ୍ୟା ଦିଆଯାଉଛି । ଜ୍ଞାନର ବିକାଶ ଯେତେ ଅଧିକରୁ ଅଧିକ ହେଉଛି, ବୌଦ୍ଧିକ ସ୍ତରରେ ସେତିକି ବିଶେଷତା (specialization) ପ୍ରକାଶ ପାଉଛି ।

ତେବେ ଭୌତିକ ବିଜ୍ଞାନର ଆଧାର ହେଉଛି ଆମର ଅନୁଭୂତି ବା ପର୍ଯ୍ୟବେକ୍ଷଣ-ଭିତ୍ତିକ ଘଟଣା ପ୍ରବାହ । ଘଟଣାମାନଙ୍କୁ ବ୍ୟାଖ୍ୟା କରିବା ହେଉଛି ବିଜ୍ଞାନର ଆଭିମୁଖ୍ୟ । ଏହି ବ୍ୟାଖ୍ୟା କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଂଗ ହେଉଛି ଏହାର ପ୍ରଣାଳୀ । ବୈଜ୍ଞାନିକ ପ୍ରଣାଳୀ ଏକ ସୁନିର୍ଦ୍ଦିଷ୍ଟ ପଦ୍ଧତି ଅବଲମ୍ବନ କରିଥାଏ । ଯେଉଁ କ୍ଷେତ୍ରରେ ଏହି ସୁବ୍ୟବସ୍ଥିତ ପ୍ରଣାଳୀ ପ୍ରୟୋଗ କରାଯାଇ ସିଦ୍ଧାନ୍ତର ଅବତାରଣା କରାଯାଏ ତାହା ହିଁ ବୈଜ୍ଞାନିକ ଜ୍ଞାନ ପଦବାଚ୍ୟ ହୋଇଥାଏ ।

ମୋଟ ଉପରେ କହିଲେ ଆମର ଅନୁଭୂତିର ପରିସର ଭିତରେ ଆସୁଥିବା ପ୍ରାକୃତିକ ବା ସାମାଜିକ ଘଟଣାମାନଙ୍କୁ ଏକ ସୁନିର୍ଦ୍ଦିଷ୍ଟ ପ୍ରଣାଳୀ ପ୍ରୟୋଗ କରି ବ୍ୟାଖ୍ୟା କରିବା ହେଉଛି ବୈଜ୍ଞାନିକ ଜ୍ଞାନ । ବିଜ୍ଞାନ ପ୍ରୟୋଗ କରୁଥିବା ପ୍ରଣାଳୀ ହେଉଛି ବସ୍ତୁନିଷ୍ଠ ଓ ଏହା କେତେକ ସୋପାନ ମଧ୍ୟ ଦେଇ ସମାହିତ ହୋଇଥାଏ ।

ବୈଜ୍ଞାନିକ ପ୍ରଣାଳୀର ପ୍ରଥମ ସୋପାନଟି ହେଉଛି ପର୍ଯ୍ୟବେକ୍ଷଣ । ଆମେ ଆମର ଇନ୍ଦ୍ରିୟର ସାହାଯ୍ୟରେ ଘଟଣା ପ୍ରବାହକୁ ପ୍ରତ୍ୟକ୍ଷ କରୁ । ତେବେ ଆମର ଇନ୍ଦ୍ରିୟର ସାମର୍ଥ୍ୟ ସୀମିତ ଥିବାରୁ ଓ ଘଟଣା ବା ବସ୍ତୁ ସକଳ ଅତ୍ୟନ୍ତ ଜଟିଳ ହୋଇଥିବାରୁ ବିଭିନ୍ନ ଅନୁଭୂତିକୁ ଯଥାର୍ଥ ଓ ତ୍ରୁଟିଶୂନ୍ୟ କରିବା ପାଇଁ ବିଭିନ୍ନ ଯନ୍ତ୍ର ଓ ଉପକରଣର ସହାୟତା ନିଆଯାଇଥାଏ । ବିଭିନ୍ନ ଯନ୍ତ୍ର ଓ ଉପକରଣର ପ୍ରୟୋଗଦ୍ୱାରା ଆମର ପର୍ଯ୍ୟବେକ୍ଷଣ ବାସ୍ତବ ଓ ସଠିକ ହୋଇଥାଏ । ତେବେ ପର୍ଯ୍ୟବେକ୍ଷଣ ବା ପରୀକ୍ଷଣ ଏକ ବ୍ୟବସ୍ଥିତ ଧାରାରେ ସମାହିତ ହୁଏ । କୌଣସି ଘଟଣାକୁ ବିଶ୍ଳେଷଣ କରିବା ପାଇଁ ତାହାକୁ ପର୍ଯ୍ୟବେକ୍ଷଣ କରାଯାଇ ତାହାର ପରିସରକୁ ନିର୍ଦ୍ଦିଷ୍ଟ କରାଯାଏ । ତେବେ ପ୍ରକୃତି ବା ଘଟଣା ପ୍ରବାହ ଏତେ ଜଟିଳ

ଯେ ଗୋଟିଏ ଘଟଣାର ଯଥାଯଥ ବ୍ୟାଖ୍ୟା କରିବା ସବୁକ୍ଷେତ୍ରରେ ସହଜ ହୁଏ ନାହିଁ । ପ୍ରକୃତିରେ ରହିଥିବା ଅସଂଖ୍ୟ ଏକରୂପତା ଓ ପ୍ରାକୃତିକ ନିୟମ ଆଧାରରେ ପ୍ରାକୃତିକ ଘଟଣାମାନଙ୍କୁ ସାଧାରଣତଃ ବ୍ୟାଖ୍ୟା କରାଯାଏ । ବିଶେଷକରି ପ୍ରକୃତିରେ ଥିବା ବ୍ୟତିକ୍ରମହୀନ ଏକରୂପତା (exceptionless regularity) ସକଳକୁ ଆବିଷ୍କାର କରିବା ପ୍ରାକୃତିକ ବିଜ୍ଞାନର ଏକ ମୁଖ୍ୟ ଲକ୍ଷ୍ୟ ହୋଇଥାଏ । ତେବେ ଅନେକ ଘଟଣାକୁ କୌଣସି ଏକରୂପ ଶୃଂଖଳା ବା ନିୟମ ସହ ସଂଶ୍ଳିଷ୍ଟ କରିବା ପାଇଁ ବହୁ ସମୟରେ ପ୍ରକଳ୍ପ (hypothesis) ସଂରଚନା କରାଯାଏ । କୌଣସି ଘଟଣାର କାରଣ ଉପସ୍ଥିତ ଜ୍ଞାନର ପରିସରରେ ବ୍ୟାଖ୍ୟା ହେବା ସମ୍ଭବ ହେଉ ନ ଥିଲେ ତାହାର କାରଣ ବା ବ୍ୟାଖ୍ୟା ଜାଣିବା ପାଇଁ ପ୍ରକଳ୍ପ ପ୍ରଣୟନ କରାଯାଇଥାଏ । ପ୍ରତ୍ୟେକ ପ୍ରକଳ୍ପ ଏକ ସମ୍ଭାବନାମୂଳକ ପ୍ରସ୍ତାବ ଯାହା ବାସ୍ତବ ତଥ୍ୟଦ୍ୱାରା ସମର୍ଥିତ ହୋଇ ପରୀକ୍ଷିତ ହେଲେ ଗ୍ରହଣଯୋଗ୍ୟ ହୋଇଥାଏ ନଚେତ୍ ତାହାର ନିରାକରଣ କରାଯାଇ ନୂତନ ପ୍ରକଳ୍ପ ବିଷୟ ଚିନ୍ତା କରାଯାଏ । କୌଣସି ଘଟଣାର ବାସ୍ତବ ଓ ଯଥାର୍ଥ ବ୍ୟାଖ୍ୟା ଏକ ପ୍ରାସଙ୍ଗିକ, ପରୀକ୍ଷାଯୋଗ୍ୟ, ତଥ୍ୟଭିତ୍ତିକ ଓ ପ୍ରାମାଣିକ ପ୍ରକଳ୍ପ ମଧ୍ୟ ଦେଇ ହୋଇଥାଏ । ବୈଜ୍ଞାନିକ ଅନୁସନ୍ଧାନ କ୍ଷେତ୍ରରେ ଯଦି ବାସ୍ତବ ଘଟଣା ଓ ଅନ୍ୟାନ୍ୟ ପ୍ରତିଷ୍ଠିତ ନିୟମଦ୍ୱାରା ପ୍ରକଳ୍ପ ସମର୍ଥିତ ହେଉଥାଏ ତେବେ ତାହା ଗୃହୀତ ହୁଏ । ଏକ ପ୍ରକଳ୍ପ ଗୃହୀତ ହେଲେ ତାହାକୁ ଆଧାର କରି ସାମାନ୍ୟୀକରଣ (generalization) କରାଯାଏ । କୌଣସି ଘଟଣାର କାରଣଟି ବ୍ୟାଖ୍ୟା ହୋଇପାରିଲେ ପରୀକ୍ଷିତ ଦୃଷ୍ଟାନ୍ତକୁ ଭିତ୍ତି କରି ସେହି ଶ୍ରେଣୀୟ ସକଳ ଘଟଣା ବିଷୟରେ ସାମାନ୍ୟୀକରଣ କରାଯାଏ । ସାମାନ୍ୟୀକରଣ କ୍ଷେତ୍ରରେ ଆରୋହ-ଲଂଫନ ହେଉଥାଏ । ଏହା ସୀମିତ, ପରୀକ୍ଷିତ ଓ ଅନୁଭୂତି ଆଧାରିତ ଘଟଣାକୁ ନେଇ ଅସୀମ, ଅପରୀକ୍ଷିତ ଓ ଏକ ଶ୍ରେଣୀର ସକଳ ଘଟଣା ମାନଙ୍କ ବିଷୟରେ ଏକ ସିଦ୍ଧାନ୍ତ ଦେଉଥାଏ । ବୈଜ୍ଞାନିକ ଜ୍ଞାନର ଏହାହିଁ ହେଉଛି ଲକ୍ଷ୍ୟ ଯେ ଏହା ସାମାନ୍ୟୀକରଣଦ୍ୱାରା ସିଦ୍ଧାନ୍ତ ଉପସ୍ଥାପିତ କରେ ।

ବୈଜ୍ଞାନିକ ପ୍ରଣାଳୀ ବସ୍ତୁତଃ ପର୍ଯବେକ୍ଷଣ, ପ୍ରକଳ୍ପ ପ୍ରଣୟନ, ପ୍ରକଳ୍ପର ସଠିକତା ପ୍ରମାଣ ସୋପାନ ମଧ୍ୟ ଦେଇ ଏକ ସିଦ୍ଧାନ୍ତ ବା ସାମାନ୍ୟୀକରଣରେ ଉପନୀତ ହୋଇଥାଏ । ଏହି ପଦ୍ଧତି ଏକ ବସ୍ତୁନିଷ୍ଠ ପ୍ରକ୍ରିୟା ଓ ଏହି ପ୍ରକ୍ରିୟା ମଧ୍ୟ ଦେଇ ଜ୍ଞାନର ବିକାଶ ହୋଇଥାଏ । ବୈଜ୍ଞାନିକ ପ୍ରଣାଳୀ ବସ୍ତୁନିଷ୍ଠ, ପରୀକ୍ଷଣମୂଳକ ଓ ତଥ୍ୟଭିତ୍ତିକ ହୋଇଥିବାରୁ ଏହାହିଁ ସକଳ ଭୌତିକ ବିଜ୍ଞାନର ମାପକାଠି ହୋଇଥାଏ । ଅର୍ଥାତ୍ ଏହି ପ୍ରଣାଳୀକୁ ତର୍କଶାସ୍ତ୍ରର ପରିଭାଷାରେ ଆରୋହ ପଦ୍ଧତି (inductive method) କୁହାଯାଏ । ଗଣିତ କ୍ଷେତ୍ରରେ ପ୍ରୟୋଗ ହେଉଥିବା ଅବରୋହ ପଦ୍ଧତିଠାରୁ ଏହା ଭିନ୍ନ । ବୈଜ୍ଞାନିକ ଜ୍ଞାନ କେବଳ ଆରୋହ ପଦ୍ଧତି ଆଧାରରେ ହୋଇଥାଏ ।

ବିଜ୍ଞାନ ଯେହେତୁ ଏକ ଆରୋହ ପଦ୍ଧତି ପ୍ରୟୋଗ କରି ତଥ୍ୟଭିତ୍ତିକ ସିଦ୍ଧାନ୍ତ ପ୍ରତିଷ୍ଠା କରିଥାଏ, ଏହାର ସିଦ୍ଧାନ୍ତକୁ ଚିରନ୍ତନ, ଶାଶ୍ୱତ ବା ଧ୍ରୁବ କୁହାଯାଏ ନାହିଁ । ବରଂ ଏହା ଆମକୁ ପ୍ରକୃତି ବା ସମାଜ ବିଷୟରେ ପ୍ରଗତିଶୀଳ ଜ୍ଞାନ ଦେଇ ଚାଲିଥାଏ । ଆମର ଅନୁଭୂତି ଯେତିକି ବ୍ୟାପକ ହେଉଥାଏ ଓ ଆମର ପର୍ଯ୍ୟବେକ୍ଷଣର ସ୍ତର ଯେତିକି ବିସ୍ତାରିତ ହେଉଥାଏ ଏହି ଜ୍ଞାନର ପରିସୀମା ସେତିକି ବିସ୍ତୃତି ଲାଭ କରୁଥାଏ । ସୁତରାଂ କୌଣସି ଜ୍ଞାନକୁ ଏହା ଚିରନ୍ତନ ଭାବେ ନିଏ ନାହିଁ । ଏହି ମାନଦଣ୍ଡରେ ବୈଜ୍ଞାନିକ ଜ୍ଞାନ ସମ୍ଭାବନାମୂଳକ ହୋଇଥାଏ । ଯେକୌଣସି ବିଶେଷ ବୈଜ୍ଞାନିକ କ୍ଷେତ୍ରଟିରେ ଆମେ ଉପନୀତ ହେଉଥିବା ସିଦ୍ଧାନ୍ତ ବା ନିୟମ ସକଳ ତଥ୍ୟଭିତ୍ତିକ ହୋଇଥିବାରୁ ସେ ସବୁ ସଂଶ୍ଳେଷଣାତ୍ମକ

(synthetic) ଅଟେ । ସଂଶ୍ଳେଷଣାତ୍ମକ ସିଦ୍ଧାନ୍ତ ସତ୍ୟମିଥ୍ୟାର ମାନଦଣ୍ଡରେ ନିରୂପିତ ହୋଇଥାଏ ଓ ତାହା ପରିବର୍ତ୍ତନ ସାପେକ୍ଷ । ଗାଣିତିକ ଜ୍ଞାନ ବିଶ୍ଳେଷଣାତ୍ମକ (analytic) ଯାହା କୌଣସି ଉଚ୍ଚତର ସିଦ୍ଧାନ୍ତ ବା ସ୍ୱତଃସିଦ୍ଧ ତର୍କବଚନରୁ ଅପରିହାର୍ଯ୍ୟ ଭାବେ ନିଃସୃତ ହେଉଥାଏ । ଗାଣିତିକ ଜ୍ଞାନ ଓ ବୈଜ୍ଞାନିକ ଜ୍ଞାନ ଭିତରେ ପ୍ରଣାଳୀଗତ ଓ ସିଦ୍ଧାନ୍ତଗତ ପାର୍ଥକ୍ୟ ରହିଥାଏ । ବୈଜ୍ଞାନିକ ଜ୍ଞାନ ଆରୋହ ପଦ୍ଧତି ଅବଲମ୍ବନଦ୍ୱାରା ତଥ୍ୟମାନଙ୍କୁ ପର୍ଯ୍ୟବେକ୍ଷଣ କରି ପ୍ରାକୃତିକ ଏକରୂପତା ଆଧାରରେ ସାମାନ୍ୟ ସିଦ୍ଧାନ୍ତ ଉପସ୍ଥାପନ କରିଥାଏ ।

ପୁନଶ୍ଚ ବୈଜ୍ଞାନିକ ଜ୍ଞାନ କୌଣସି ଏକକ ବା ଅସଂଯୋଜିତ ଘଟଣାକୁ ବ୍ୟାଖ୍ୟା ନକରି ଜ୍ଞାନ କ୍ଷେତ୍ରରେ ଏକ କ୍ରମ ସ୍ଥାପନ କରିଥାଏ । ବୈଜ୍ଞାନିକ ସିଦ୍ଧାନ୍ତ ବା ନିୟମଗୁଡ଼ିକ ପରସ୍ପର ସଂଯୋଜିତ ହୋଇ ଉଚ୍ଚରୁ ଉଚ୍ଚତର କ୍ରମ ପ୍ରତିଷ୍ଠା କରିଥାନ୍ତି । ସୁତରାଂ ଏହି ଜ୍ଞାନ କ୍ରମାନୁବନ୍ଧ ଓ ଶୃଂଖଳିତ । ସାଧାରଣତଃ ବୈଜ୍ଞାନିକ ବ୍ୟାଖ୍ୟା ଜନିତ ଅନୁଶୀଳନ କ୍ଷେତ୍ରରେ ବିଭିନ୍ନ କ୍ରମର ଅବତାରଣା ଦେଖିବାକୁ ମିଳିଥାଏ । ଘଟଣାମାନଙ୍କୁ ମୌଳିକ ଲକ୍ଷଣ ଆଧାରରେ ଶ୍ରେଣୀକରଣ କରିବା 'ଶ୍ରେଣୀ ବିଭାଗ ଜନିତ କ୍ରମ' ଓ ଏହାହିଁ ବୈଜ୍ଞାନିକ ଜ୍ଞାନର ପ୍ରାଥମିକ କ୍ରମ । ଜଣେ ଜୀବ ବିଜ୍ଞାନୀ ପ୍ରାଣୀ ମାନଙ୍କର ମୌଳିକ ଲକ୍ଷଣ ଆଧାରରେ ଜଣେ ରସାୟନ ବିଜ୍ଞାନୀ ପଦାର୍ଥମାନଙ୍କର ମୌଳିକ ଧର୍ମ ଆଧାରରେ, ଜଣେ ଚିକିତ୍ସା ବିଜ୍ଞାନୀ ରୋଗର ଲକ୍ଷଣମାନଙ୍କର ମୌଳିକ ସାମଞ୍ଜସ୍ୟକୁ ବିଚାରକୁ ନେଇ ବିଭିନ୍ନ ଶ୍ରେଣୀ ବିଭାଜନ କରିଥାନ୍ତି । ଶ୍ରେଣୀବିଭାଜନ ଜରିଆରେ ବସ୍ତୁ ବା ଘଟଣାମାନଙ୍କ ମଧ୍ୟରେ ସହସମ୍ବନ୍ଧ ଜନିତ ସାମଞ୍ଜସ୍ୟ ଓ ଅପରିବର୍ତ୍ତନୀୟ ଲକ୍ଷଣଗୁଡ଼ିକ ବିଷୟରେ ଧାରଣା ସ୍ପଷ୍ଟ ହୋଇଥାଏ ।

ସେହିପରି କାର୍ଯ୍ୟକାରଣ ଭିତ୍ତିକ କ୍ରମ ବୈଜ୍ଞାନିକ ବିଶ୍ଳେଷଣ ପ୍ରକ୍ରିୟାରେ ଅନ୍ୟ ଏକ କ୍ଷେତ୍ର ଅଟେ । ବିଜ୍ଞାନର କେତେକ ବିଶେଷ ସୋପାନରେ ଏହି କାର୍ଯ୍ୟକାରଣ ଜନିତ ବ୍ୟାଖ୍ୟାନକୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ । କୌଣସି ଘଟଣା କିପରି ଓ କାହାଦ୍ୱାରା ସଂଘଟିତ ବା ସୃଷ୍ଟି ହୋଇଛି ତାହା ଜାଣିବାଦ୍ୱାରା ସ୍ଥଳ ବିଶେଷରେ ଏହା ବିଶ୍ଳେଷିତ ହୋଇଥାଏ । କୌଣସି ରୋଗ କେଉଁ କାରଣ ଯୋଗୁଁ ହେଉଛି ବା ବ୍ୟାପୁଛି ଅଥବା ଏକ ସୁନାମି କେଉଁ ପୂର୍ବବର୍ତ୍ତୀ ପରିସ୍ଥିତି ଯୋଗୁଁ ଉଦ୍ଭବ ହେଉଛି ତାହାର କାରଣ ନିର୍ଣ୍ଣୟ କରିବା ପାଇଁ ବିଜ୍ଞାନରେ କରାଯାଉଥିବା ପ୍ରୟାସକୁ କାର୍ଯ୍ୟକାରଣ ଜନିତ କ୍ରମ କୁହାଯାଏ । କାର୍ଯ୍ୟର କାରଣ ଜାଣିବା ବୈଜ୍ଞାନିକ ବିଶ୍ଳେଷଣର ଏକ ମହତ୍ତ୍ୱପୂର୍ଣ୍ଣ ଦିଗ ।

ବିଜ୍ଞାନର କେତେକ ବିକଶିତ ବିଭାଗରେ ସିଦ୍ଧାନ୍ତ ବା ସାମାନ୍ୟୀକରଣମାନଙ୍କୁ ଗାଣିତିକ ଧାରାରେ ବ୍ୟକ୍ତ କରାଯାଇଥାଏ । ବିଜ୍ଞାନର ବିକାଶଧାରାରେ ଯେତେବେଳେ ପ୍ରାକୃତିକ ଏକରୂପତାକୁ ଗାଣିତିକ ଧାରାରେ ବ୍ୟକ୍ତ କରାଯିବାର ଉଦ୍ୟମ ହୁଏ ସେତେବେଳେ ଗାଣିତିକ କ୍ରମର ଅବଧାରଣା ଆସିଥାଏ । ଆଲୋକ, ଶବ୍ଦ, ବେଗ, ପରମାଣୁ ଇତ୍ୟାଦି କ୍ଷେତ୍ରର ନିୟମ ସକଳକୁ ଗାଣିତିକ ମାନଦଣ୍ଡରେ ବ୍ୟାଖ୍ୟା କରାଯିବା ଓ ସେସବୁ ନିୟମର ଏକପ୍ରକାର ନିଶ୍ଚିତତା ରହିବା ଗାଣିତିକ କ୍ରମର ଲକ୍ଷଣ ଅଟେ ।

ପ୍ରାକୃତିକ ବିଜ୍ଞାନର ବିଭିନ୍ନ ସ୍ତରରେ ପ୍ରତିଷ୍ଠା କରାଯାଇଥିବା ନିୟମ ଓ ସାମାନ୍ୟୀକରଣ ସକଳକୁ ସୁବ୍ୟବସ୍ଥିତ କରି ସେମାନଙ୍କୁ କୌଣସି ଉଚ୍ଚତର ସିଦ୍ଧାନ୍ତରୁ ନିଃସୃତ କରାଯିବାର ଲକ୍ଷ୍ୟରେ ଯେଉଁ କ୍ରମ ପ୍ରତିଷ୍ଠା ହୁଏ ତାହାକୁ ସୈଦ୍ଧାନ୍ତିକ କ୍ରମ କୁହାଯାଏ । ବିଜ୍ଞାନର କେତେକ ଅଣଦୃଷ୍ଟାନ୍ତ ମୂଳକ ସିଦ୍ଧାନ୍ତର (non-instantial hypothesis) ଅବତାରଣା

କରାଯାଏ ଯାହା ବିଭିନ୍ନ ସାମାନ୍ୟୀକରଣ ସକଳକୁ ସୁସଂଯୋଜିତ କରି ଏକ ସର୍ବୋଚ୍ଚ ନିୟମ ମାଧ୍ୟମରେ ବ୍ୟକ୍ତ କରିବାକୁ ପ୍ରୟାସ କରିଥାଏ । ଏହି ସର୍ବୋଚ୍ଚ ନିୟମ ବିଭିନ୍ନ ସ୍ତରରେ ରହିଥିବା ନିୟମ ଓ ଏକରୂପତାକୁ ଏକ ସୈଦ୍ଧାନ୍ତିକ ଭିତ୍ତି ପ୍ରଦାନ କରିଥାଏ । ଆଇନଷ୍ଟାଇନଙ୍କର ଆପେକ୍ଷିକ ତତ୍ତ୍ୱ ଏହି ସ୍ତରର ଏକ ସିଦ୍ଧାନ୍ତ । କେବଳ ଜଣେ ଅତି ପ୍ରତିଭାବାନ ବୈଜ୍ଞାନିକ ଏହିପରି ଏକ ସୈଦ୍ଧାନ୍ତିକ କ୍ରମର ପରିକଳ୍ପନା କରିଥାନ୍ତି ।

ମୋଟ ଉପରେ କହିଲେ ପ୍ରାକୃତିକ ବିଜ୍ଞାନ ପ୍ରକୃତି କ୍ଷେତ୍ରରେ ରହିଥିବା ଏକରୂପତାକୁ ଆବିଷ୍କାର କରିବା, ବିଭିନ୍ନ ଘଟଣାର କାରଣମାନଙ୍କୁ ନିର୍ଣ୍ଣୟ କରିବା, ବିଭିନ୍ନ ବିଭାଗରେ ଉପଲବ୍ଧ ସାମାନ୍ୟୀକରଣମାନଙ୍କ ମଧ୍ୟରେ ଏକ ସମନ୍ୱୟ ପ୍ରତିଷ୍ଠା ପୂର୍ବକ ଉଚ୍ଚତର ସିଦ୍ଧାନ୍ତରେ ଉପନୀତ ହେବା ବୈଜ୍ଞାନିକ ଜ୍ଞାନର ଆଭିମୁଖ୍ୟ ଅଟେ । ଏହାକୁ ସ୍ଥୂଳ ବିଶେଷରେ ବୈଜ୍ଞାନିକ ତନ୍ତ୍ର (scientific system) ମଧ୍ୟ କୁହାଯାଏ । ବିଭିନ୍ନ କ୍ଷେତ୍ରରେ ରହିଥିବା ନିୟମମାନଙ୍କୁ ସୁବ୍ୟବସ୍ଥିତ ଭାବେ ଏକ ସମଷ୍ଟିଗତ ରୂପରେଖ ଦେବା ପାଇଁ ସୈଦ୍ଧାନ୍ତିକ ସ୍ତରରେ ପରିକଳ୍ପନା କରାଯାଇଥାଏ । ସୁତରାଂ ସୈଦ୍ଧାନ୍ତିକ ସ୍ତରରେ କ୍ରମ ଓ ତନ୍ତ୍ରର ଅବତାରଣା ବୈଜ୍ଞାନିକ ବ୍ୟାଖ୍ୟାନର ମୂଳଭିତ୍ତି ହୋଇଛି । ତେବେ ଏହି ମୂଳଭିତ୍ତିର ଆଧାର ହେଉଛି ପର୍ଯ୍ୟବେକ୍ଷିତ ତଥ୍ୟ ।

(୨)

ବୌଦ୍ଧିକ ଜିଜ୍ଞାସା କ୍ଷେତ୍ରରେ ବୈଜ୍ଞାନିକ ବ୍ୟାଖ୍ୟାକୁ ଏତେ ଗୁରୁତ୍ୱ ଦିଆଯିବାର ଆଭିମୁଖ୍ୟ ହେଉଛି ଏହା ଘଟଣାମାନଙ୍କର ଯଥାର୍ଥ ବିଶ୍ଳେଷଣ ଏକ ସୁନିର୍ଦ୍ଦିଷ୍ଟ ପଦ୍ଧତି ଅବଲମ୍ବନରେ କରିଥାଏ । ଏହି ପଦ୍ଧତି ଏକ ସାର୍ବଜନୀନ ପଦ୍ଧତି ଯାହା ବସ୍ତୁନିଷ୍ଠ ତଥା ସମୀକ୍ଷାମୂଳକ ଭାବେ ସିଦ୍ଧାନ୍ତ ବା ନିୟମମାନଙ୍କୁ ପର୍ଯ୍ୟାଲୋଚନା କରିଥାଏ । ଏହା କୌଣସି ଭାବନାକୁ ବିଶ୍ୱାସ ଆଧାରରେ ଅକାଟ୍ୟ ଭାବେ ଗ୍ରହଣ କରେନାହିଁ । ଏହାର ମୂଳଭିତ୍ତି ହେଉଛି ଆମର ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଜନିତ ତଥ୍ୟ । ଏହିଠାରେ ବିଜ୍ଞାନ ଧର୍ମ ଓ ଦର୍ଶନଠାରୁ ପୃଥକ୍ ମନେହୁଏ । ବୈଜ୍ଞାନିକ ଦୃଷ୍ଟି ଓ ଧର୍ମୀୟ ଦୃଷ୍ଟିରେ ମୌଳିକ ପାର୍ଥକ୍ୟ ରହିଆସିଛି । ଧର୍ମୀୟ ଦୃଷ୍ଟି କ୍ଷେତ୍ରରେ ବିଶ୍ୱାସ ପ୍ରାଧାନ୍ୟ ଲାଭ କରିଥାଏ । ଧର୍ମଗ୍ରନ୍ଥର ବାଣୀକୁ ଧର୍ମୀୟ ପରମ୍ପରାରେ ଶାଶ୍ୱତ ଓ ଚିରନ୍ତନ ବୋଲି ନିଆଯାଏ । ଅତୀନ୍ଦ୍ରିୟ ଭାବନା ଓ ଚମତ୍କାରିତା ଧର୍ମ ଭାବନାରେ ସଂଶ୍ଳିଷ୍ଟ । ଧର୍ମୀୟ ଚେତନା ସମୟରେ ରୁଦ୍ଧ ମନ ନେଇ ବା ପୂର୍ବ ଧାରଣାର ବଶବର୍ତ୍ତୀ ହୋଇ ଘଟଣାମାନଙ୍କୁ ବିଶ୍ୱାସ କରିଥାଏ । ଏଥିପାଇଁ ପୃଥିବୀର ବହୁ ଭୂଖଣ୍ଡରେ ଧର୍ମୀୟ ଭାବନା ବୈଜ୍ଞାନିକ ଚିନ୍ତାର ବିକାଶରେ ନାନା ପ୍ରତିବନ୍ଧକ ହୋଇ ଆସିଛି । ବହୁ ରାଷ୍ଟ୍ରର ସାଂସ୍କୃତିକ ଇତିହାସରେ ଧର୍ମ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଭିତରେ ସଂଘର୍ଷ ସୁବିଦିତ ଅଟେ । ତେବେ ସେସବୁ ଆମେ ଏଠାରେ ଆଲୋଚନା କରିବା ନାହିଁ । କେବଳ ଏତିକି କହିବା ଯେ ଇଉରୋପୀୟ ନବଜାଗରଣ ଓ ନବସଂସ୍କାର ପର୍ଯ୍ୟନ୍ତ ଧର୍ମର ଭାବନା-ତାହା ଯେତେ ଅସତ୍ୟ ହେଲେ ମଧ-ସୁଦୃଢ଼ ରହିଥିଲା ଓ ଧର୍ମର ଛାଇ ତଳେ ବିଜ୍ଞାନର ବିକାଶ ସମ୍ଭବ ହେଉ ନଥିଲା ।

ତେବେ ଧର୍ମ ଯେ କେବଳ ବିଜ୍ଞାନ ପାଇଁ ପ୍ରତିବନ୍ଧକ ହୋଇଛି ତାହା ନୁହେଁ ଏପରିକି ଦର୍ଶନ ମଧ୍ୟ ବିଜ୍ଞାନର ପ୍ରତିକୂଳ ହୋଇଛି । ଦର୍ଶନ ଏକ ପ୍ରତ୍ୟୟାତ୍ମକ ଅନୁଶୀଳନ ଭାବେ ମୌଳିକ ପ୍ରଶ୍ନ ଗୁଡିକ ଉପରେ ଗଭୀର ବିଶ୍ଳେଷଣ କରୁଥିଲେ ବି କେତେକ ଦାର୍ଶନିକ ତତ୍ତ୍ୱ ବିଜ୍ଞାନର ବିକାଶ ପ୍ରତି ଅନ୍ତରାୟ ହୋଇଛି । ଇନ୍ଦ୍ରିୟଲବ୍ଧ ଜ୍ଞାନକୁ ଭ୍ରମାତ୍ମକ ବୋଲି

ଅସ୍ୱୀକାର କରି ଜ୍ଞାନକୁ ଅନ୍ତର୍ମୁଖୀ ଭାବେ ନେବା, ଜଗତକୁ ମିଥ୍ୟା ବୋଲି ଗ୍ରହଣ କରିବା ଓ ସକଳ ଜ୍ଞାନ ସ୍ତରରେ ଚିନ୍ତନକୁ ସାର ବୋଲି ନେବା କେତେକ ଦାର୍ଶନିକ ତତ୍ତ୍ୱର ମୂଳଭିତ୍ତି ହୋଇ ରହିଛି । ବିଶ୍ୱର ମୂଳବସ୍ତୁ ବିଷୟରେ ତତ୍ତ୍ୱର ଅବତାରଣା କରିବା, ଈଶ୍ୱର, ଆତ୍ମା ଇତ୍ୟାଦି ବିଷୟରେ ନାନା କାଳ୍ପନିକ ଭାବନାକୁ ସତ୍ୟର ରୂପ ଦେବା ଇତ୍ୟାଦି ଦାର୍ଶନିକ ଜିଜ୍ଞାସାରେ ଗୁରୁତ୍ୱପୂର୍ଣ୍ଣ ହୋଇଛି । ତେବେ ବିଜ୍ଞାନର ଦୃଷ୍ଟି ପୃଥକ୍ ହୋଇ ଆସିଛି । ବିଜ୍ଞାନ ଜଗତର ଅସ୍ତିତ୍ୱକୁ ସ୍ୱୀକାର କରିଥାଏ । ପର୍ଯ୍ୟବେକ୍ଷଣ ଜନିତ ଓ ତଥ୍ୟାଧାରିତ ଜ୍ଞାନକୁ ଏହା ସବୁଠାରୁ ଅଧିକ ଗୁରୁତ୍ୱ ଦିଏ ଓ କାଳ୍ପନିକ ତତ୍ତ୍ୱର ଅବତାରଣା ପରିବର୍ତ୍ତେ ବସ୍ତୁନିଷ୍ଠ ବିଶ୍ଲେଷଣକୁ ମହତ୍ତ୍ୱ ଦେଇଥାଏ । ଆତ୍ମାର ସ୍ୱରୂପ କ'ଣ, ମୋକ୍ଷ କିପରି ସମ୍ଭବ, ଈଶ୍ୱର ସାକାର ନା ନିରାକାର ଇତ୍ୟାଦି ପ୍ରଶ୍ନ କାଳ୍ପନିକ ଓ ଏ ସବୁ କ୍ଷେତ୍ରରେ ନାନା ଅନୁମାନ କରାଯାଇପାରେ । କିନ୍ତୁ 'ରକ୍ତ ସଞ୍ଚାଳନ ଶରୀରରେ କିପରି ହୁଏ' ଏକ ବୈଜ୍ଞାନିକ ପ୍ରଶ୍ନ ଓ ଏହାର ଉତ୍ତର ଜୀବନ ପାଇଁ ବାସ୍ତବରେ ଉପଯୋଗୀ । ବିଶ୍ୱର ଆଦି କାରଣ କ'ଣ ଏକ ଦାର୍ଶନିକ ପ୍ରଶ୍ନ ଓ ଏହିପ୍ରକାର ପ୍ରଶ୍ନର ନାନା କାଳ୍ପନିକ ଉତ୍ତର ଚିନ୍ତାସ୍ତରକୁ ଆସିପାରେ । କିନ୍ତୁ ମାଟିର ଉପାଦାନ ଓ ପ୍ରକାରଭେଦକୁ ଜାଣିବା ଏକ ବୈଜ୍ଞାନିକ ପ୍ରଶ୍ନ ଯାହାଦ୍ୱାରା ବାସ୍ତବ ଜ୍ଞାନ ଲାଭ ହୋଇଥାଏ ଓ ସେହି ଜ୍ଞାନ ଶସ୍ୟ ଉତ୍ପାଦନ ପାଇଁ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ତେବେ ଯେଉଁ ଯୁଗରେ ଯେଉଁ ପ୍ରକାରର ଭାବନା ଚିନ୍ତାରାଜ୍ୟରେ ଗୁରୁତ୍ୱପୂର୍ଣ୍ଣ ହୋଇଛି ସେ ଯୁଗରେ ଦର୍ଶନ ସେହି ଭାବନାମାନଙ୍କୁ ନେଇ ତତ୍ତ୍ୱମାନ ସୃଷ୍ଟି କରିଛି । ଆଧୁନିକ ବିଜ୍ଞାନର ବିକାଶପରେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ମଧ କିଛି ମୌଳିକ ପରିବର୍ତ୍ତନର ସୂତ୍ରପାତ ହୋଇଛି । କାଳ୍ପନିକ ଓ ଛବିଳ ଚିନ୍ତାରୁ ସୃଷ୍ଟ ତତ୍ତ୍ୱମୀମାଂସା ଆଧୁନିକ ଦାର୍ଶନିକ ଅନ୍ୱେଷାରେ ନିରର୍ଥକ ମନେହୋଇଛି । ଦର୍ଶନ ସଂପ୍ରତି ପ୍ରତ୍ୟୟ ବିଶ୍ଲେଷଣ, ବୌଦ୍ଧିକ ସ୍ୱଚ୍ଛତା, ତାର୍କିକ ପଦ୍ଧତି ଇତ୍ୟାଦି ଅମୂର୍ତ୍ତୀୟ (abstract) ଆଲୋଚନା ଭିତରେ ନିଜକୁ ସୀମିତ ରଖିଛି ଓ କାଳ୍ପନିକ ତତ୍ତ୍ୱର ଅବତାରଣା ଦର୍ଶନରେ ମହତ୍ତ୍ୱ ହରାଇଛି ।

ମୋଟ ଉପରେ କହିଲେ ଅଜ୍ଞତା ଓ ରହସ୍ୟମୟ ଜୀବନଦୃଷ୍ଟିର ଭୂମି ଉପରେ ଧର୍ମ ଓ ମଧ୍ୟଯୁଗୀୟ ଦର୍ଶନ ବିକାଶଲାଭ କରିଛି । ପ୍ରାକ୍-ବୈଜ୍ଞାନିକ ଯୁଗରେ ଧର୍ମୀୟ କଳ୍ପନା ବିଶ୍ୱର ରହସ୍ୟମୟ ବ୍ୟାଖ୍ୟା ଦେବାକୁ ପ୍ରଯତ୍ନ କରିଛି । ସେହି ବିଶ୍ୱାସ ସକଳକୁ ଈଶ୍ୱରୀୟ ବିଧାନ ଭାବେ ନିଆଯାଇ ସେ ସବୁକୁ ଶ୍ରୁତି (revelation) ବୋଲି ମାନ୍ୟତା ଦିଆଯାଇଛି । ସୁତରାଂ ବିଜ୍ଞାନର ବିକାଶ ସନ୍ଧିକ୍ଷଣରେ ଧର୍ମ ବୈଜ୍ଞାନିକ ବିଚାର କ୍ଷେତ୍ରରେ ନାନା ପ୍ରତିକୂଳ ହୋଇ ରହିଛି । ତେବେ ବହୁ ବୈଚାରିକ ସଂଘର୍ଷ ପରେ ବିଜ୍ଞାନର ପରଂପରାଟି ସୁଦୃଢ଼ ହୋଇଛି । ତିନି ଶହ ବର୍ଷର କ୍ରମବିକାଶ ଧାରାରେ ବିଜ୍ଞାନର ପରମ୍ପରାଟି ଆଧୁନିକ ଯୁଗରେ ଜୀବନଧାରାର ଅବଚ୍ଛେଦ୍ୟ ଅଙ୍ଗ ହୋଇ ଯାଇଛି । ଅଧିକନ୍ତୁ ବିଜ୍ଞାନର ବିଜୟଯାତ୍ରା ଅପ୍ରତିହତ ଭାବେ ଆଗେଇ ଚାଲିଛି । ଏହା ଜୀବନ ଧାରଣର ମାନକୁ ବୃଦ୍ଧି କରିଛି, ଆଧୁନିକ ପ୍ରଯୁକ୍ତି ଜୀବନକୁ ମହତ୍ତର କରିବାର ଅବକାଶ ଆଣିଛି, ରୋଗ ଓ ପ୍ରାକୃତିକ ଦୁର୍ବିପାକ ଜନିତ ଦୁଃଖ ଦୁର୍ଦ୍ଦଶାକୁ ପରାହତ କରିପାରିଛି ଓ ସର୍ବୋପରି ପୃଥିବୀକୁ ଏକ 'ବିଶ୍ୱ-ଗ୍ରାମ' ରେ ପରିଣତ କରିଛି ।

ତେବେ ବିଜ୍ଞାନର ଅଭୂତପୂର୍ବ ବିକାଶ ଓ ସେହି ଜ୍ଞାନର ପ୍ରୟୋଗରେ ଆଧୁନିକ ପ୍ରଯୁକ୍ତି ଜୀବନକୁ ଯେତେ ସୁଖକର କରିଥିଲେ ବି ଧର୍ମୀୟ ଆବେଗର ଯେଉଁ ପରମ୍ପରା ଶହ ଶହ ବର୍ଷ ହେଲା ଗଢ଼ି ଉଠିଛି ତାହା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ଏବେ ମଧ ପ୍ରତିକୂଳ ହୋଇ ରହିଛି । ଅନ୍ୟ ଭାବରେ କହିଲେ ବୈଜ୍ଞାନିକ ଜ୍ଞାନର ବିସ୍ଫୋରଣ

ହୋଇଛି, କିନ୍ତୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏବେ ବି ଅନ୍ଧ ସଂସ୍କାର ଜନିତ ପରମ୍ପରା ଯୋଗୁଁ ସାର୍ବଜନୀନ ହୋଇପାରୁ ନାହିଁ ଓ ଏପରିକି ନାନା ପ୍ରତିବନ୍ଧକର ସମ୍ମୁଖୀନ ହେଉଛି । ସାଧାରଣ ଜୀବନ ପ୍ରବାହରେ ଓ ବିଶେଷକରି ଅନୁନ୍ନତ ଓ ବିକାଶଶୀଳ ରାଷ୍ଟ୍ର ସମୂହର ସମାଜରେ ଏବେ ମଧ ମଧ୍ୟଯୁଗୀୟ ଦୃଷ୍ଟିଭଙ୍ଗୀର ପ୍ରାଧାନ୍ୟ ରହିଛି । ଏହି ପୃଷ୍ଠଭୂମିରେ ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ସ୍ୱଚ୍ଛତା ରଖିବା ପାଇଁ ଏହାର ଆଲୋଚନା ଅବଶ୍ୟମ୍ଭାବୀ ମନେହୁଏ ।

(୩)

'ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ' ବୌଦ୍ଧିକ ବିଚାରର କ୍ରମ ବିବର୍ତ୍ତନ ଧାରାରେ ଏକ ବୈପ୍ଳବିକ ଚିନ୍ତନ ଥିଲା । ପ୍ରାଗ୍‌ବୈଜ୍ଞାନିକ ଯୁଗରେ ଅର୍ଥାତ୍ ସପ୍ତଦଶ ଶତାବ୍ଦୀ ପୂର୍ବରୁ ବିଶ୍ୱର ଯାବତୀୟ ଘଟଣା ସକଳକୁ ଏକ ରହସ୍ୟମୟ, ଅଲୌକିକ ତଥା ଦୈବୀ ବିଧାନ ଭାବେ ନିଆଯାଉଥିଲା । ଏପରିକି ସାମାଜିକ ଘଟଣା ପ୍ରବାହକୁ ମଧ ଈଶ୍ୱରୀୟ ବିଧାନର ପରିଣାମ ଭାବେ କଳ୍ପନା କରାଯାଉଥିଲା । ସବୁକିଛିକୁ ଈଶ୍ୱରଙ୍କ କାର୍ଯ୍ୟ ବୋଲି ଭାବନା ସାଧାରଣତଃ ସମାଜରେ ବ୍ୟାପକ ରହିଥିଲା । ତେବେ ବିଜ୍ଞାନ ଏକ ଭିନ୍ନ ବୌଦ୍ଧିକ ବିଚାରର ସୂତ୍ରପାତ କରାଇଲା । ପ୍ରକୃତିର ସବୁ କିଛି ପ୍ରାକୃତିକ ବିଧାନର ପରିଣାମ । ସୁତରାଂ ଅନୁସନ୍ଧିତ୍ସାଦ୍ୱାରା ଏହାର ପ୍ରାକୃତିକ କାରଣକୁ ଆବିଷ୍କାର କରାଯିବା ସମ୍ଭବ, ବିଜ୍ଞାନ ଏହି ବାର୍ତ୍ତା ଦେଲା । ବୈଜ୍ଞାନିକ ପ୍ରକୃତିବାଦ (scientific naturalism) ଚିନ୍ତା ରାଜ୍ୟରେ ଏକ ବିପ୍ଳବର ସୂତ୍ରପାତ କଲା । ଏହା ବିଚାର ଦେଲା ଯେ ପ୍ରକୃତିର ବା ସାମାଜିକ ଜୀବନ ପ୍ରବାହର ପ୍ରତ୍ୟେକଟି ଘଟଣାକୁ ବସ୍ତୁନିଷ୍ଠ ଭାବେ ବ୍ୟାଖ୍ୟା କରାଯାଇ ପାରିବ । ପ୍ରକୃତିର ଏପରି କୌଣସି କ୍ଷେତ୍ର ନାହିଁ ଯାହା ପଶ୍ଚାତରେ ରହସ୍ୟମୟ ଈଶ୍ୱରୀୟ ନିୟନ୍ତ୍ରଣ ରହିଛି । ସବୁକିଛି ପ୍ରାକୃତିକ ଓ ସକଳ ଘଟଣା ପଶ୍ଚାତରେ କିଛି କାରଣ ରହିଛି । କେଉଁଠି ଏପରି କୌଣସି ନିୟମ ବା ବିଧାନ ନାହିଁ ଯାହା ପ୍ରାକୃତିକ ଶୃଙ୍ଖଳାକୁ ଉଲଂଘନ କରିପାରିବ । ପ୍ରାକୃତିକ ନିୟମ ବାହାରେ କୌଣସି ଅଲୌକିକ ବା ଆଧିଦୈବିକ କାରଣ ନାହିଁ । ବିଶ୍ୱ ସମ୍ବନ୍ଧରେ, ଜୀବନର ଦୁଃଖ ଘନଘଟା ସଂପର୍କରେ, ପ୍ରାକୃତିକ ବା ସାମାଜିକ ପରିବର୍ତ୍ତନ ଧାରାରେ ଆମେ କୌଣସି ପ୍ରାକୃତିକ-ନିୟମ-ବିରୋଧୀ ରହସ୍ୟମୟ ତତ୍ତ୍ୱ ପାଇବା ନାହିଁ । ସକଳ ଘଟଣା ପ୍ରବାହକୁ ପ୍ରାକୃତିକ ଶୃଙ୍ଖଳା ଭିତରେ ବ୍ୟାଖ୍ୟା କରାଯାଇ ପାରିବ । ପଦାର୍ଥ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ, ରସାୟନ ବିଜ୍ଞାନ, ଜୀବ ବିଜ୍ଞାନ ଇତ୍ୟାଦି ସମ୍ମିଳିତ ଭାବେ ପ୍ରାକୃତିକ ବ୍ୟବସ୍ଥାର ମହତ୍ତ୍ୱ ଓ ସ୍ୱାୟତ୍ତକୁ (autonomy of natural order) ପ୍ରତିଷ୍ଠା କଲେ । ଏହି ସିଦ୍ଧାନ୍ତରୁ ଏହା ନିଃସୃତ ହେଲା ଯେ ପ୍ରକୃତିରେ ବହୁ ରହସ୍ୟ ରହିଛି, ହେଲେ ଅଲୌକିକତା (miracle) ବା ଆଧିଦୈବିକ କାରଣ ନାହିଁ । ଜ୍ଞାନର ଦିଗନ୍ତ ଯେତିକି ବିସ୍ତାରିତ ହୋଇ ଚାଲିଥିବ, ଆମର ପ୍ରକୃତି ବା ଜୀବନ ସଂକ୍ରାନ୍ତୀୟ ଜ୍ଞାନ ସେତିକି ବିକାଶଲାଭ କରୁଥିବ । ଆଜି ଯାହା ରହସ୍ୟମୟ ମନେହେଉଛି କାଲି ତାହା ବୋଧଗମ୍ୟ ହୋଇପାରିବ ।

ସେହିପରି ବୈଜ୍ଞାନିକ ଜ୍ଞାନ ଏକ ସୁବ୍ୟବସ୍ଥିତ ପ୍ରଣାଳୀ ଆଧାରରେ ହୋଇପାରିବ । ଏହି ବିଶାଳ ପ୍ରକୃତି ଏକ ଖୋଲା ପୁସ୍ତକ ଭାବେ ଆମ ପାଖରେ ରହିଛି । ପ୍ରାକୃତିକ ଘଟଣା ପ୍ରବାହ ଓ ସେସବୁ ପଶ୍ଚାତରେ ରହିଥିବା ପ୍ରାକୃତିକ ନିୟମ ସକଳକୁ ସୁବ୍ୟବସ୍ଥିତ ପଦ୍ଧତିଦ୍ୱାରା ଜାଣିହେବ । ବୈଜ୍ଞାନିକ ପଦ୍ଧତିର ପ୍ରୟୋଗ ଦ୍ୱାରା ପ୍ରକୃତିର ଗୂଢ଼ ରହସ୍ୟକୁ ଭେଦକରି ହେବ । ବୈଜ୍ଞାନିକ ପ୍ରଣାଳୀକୁ ପ୍ରତ୍ୟାଖାନ କରି କୌଣସି ନିର୍ଭରଯୋଗ୍ୟ ତଥ୍ୟଭିତ୍ତିକ ଜ୍ଞାନ ସମ୍ଭବପର ନୁହେଁ । କୌଣସି ସିଦ୍ଧାନ୍ତର ଯଥାର୍ଥତା ସମୀକ୍ଷାତ୍ମକ ଭାବେ ବୈଜ୍ଞାନିକ ପ୍ରଣାଳୀ ମାଧମରେ ସ୍ଥିର କରାଯାଇ ପାରିବ ।

ବୈଜ୍ଞାନିକ ମାନସିକତା ଏକ ମୁକ୍ତ ମନର ସୂଚନା ଦିଏ । ଜ୍ଞାନ ଲାଭ ପାଇଁ ଏହା ଏକ ପ୍ରାଥମିକ ଆବଶ୍ୟକତା । କୌଣସି ପୂର୍ବ ଧାରଣାର ବଶବର୍ତ୍ତୀ ହୋଇ ରହସ୍ୟମୟ ବ୍ୟାଖ୍ୟାରେ ବିଶ୍ୱାସ କରିବା ବୈଜ୍ଞାନିକ ଚିନ୍ତନର ପରିପନ୍ଥୀ ଅଟେ । ତେବେ ଯେଉଁ କ୍ଷେତ୍ରରେ ଆମର ବ୍ୟାଖ୍ୟା ସନ୍ତୋଷଜନକ ହେଉ ନାହିଁ ତାହାକୁ ସ୍ୱୀକାର କରିବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଚାୟକ ଅଟେ । ଆମର ପର୍ଯ୍ୟବେକ୍ଷଣ ଅଧିକ ପ୍ରସାରିତ ହେବା, ଅନୁଶୀଳନ ଗଭୀର ହେବା ଓ ଅଧିକ ତଥ୍ୟର ସନ୍ଧାନ ପାଇବାଦ୍ୱାରା ହୁଏତ ସଂପ୍ରତି ବ୍ୟାଖ୍ୟା ହୋଇ ପାରୁନଥିବା ଘଟଣା ଭବିଷ୍ୟତରେ ବ୍ୟାଖ୍ୟା ହୋଇପାରିବ । ସୁତରାଂ ରହସ୍ୟମୟ ବା ଦୈବୀକରଣ ଜନିତ ବ୍ୟାଖ୍ୟାରେ ସନ୍ତୁଷ୍ଟ ରହିବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ଅଟେ ।

ଜଗତ ବିଷୟକ ଆମର ଜ୍ଞାନ ପରିବର୍ତ୍ତନ ସାପେକ୍ଷ ଓ ପ୍ରଗତିଶୀଳ । ବିଜ୍ଞାନର କୌଣସି ସିଦ୍ଧାନ୍ତ ନୂତନ ତଥ୍ୟ ବା ଅନୁଭୂତି ଆଧାରରେ ହୁଏତ ପରିବର୍ତ୍ତନ ହୋଇପାରେ । ସୁତରାଂ କୌଣସି ଜ୍ଞାନକୁ ଅକାଟ୍ୟ ବା ଚିରନ୍ତନ ଭାବେ ନେବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସହ ସମତାଳ ମନେହୁଏ ନାହିଁ ।

ବିଚାରଶୀଳତା ହିଁ ବୈଜ୍ଞାନିକ ଦୃଷ୍ଟିକୋଣର ମୁଖ୍ୟ ଆଭିମୁଖ୍ୟ । ଯାହା ଯୁକ୍ତି ଯୁକ୍ତ ଓ ତଥ୍ୟାଧାରିତ ତାହା ହିଁ ଗ୍ରହଣ ଯୋଗ୍ୟ । କୌଣସି ଭାବନା ସମାଜରେ ବହୁଳ ଭାବେ ରହିବା ବା ଶାସ୍ତ୍ରୀୟ ସମର୍ଥନ ଲାଭ କରିବାଦ୍ୱାରା ତାହା ଏକ ବୈଜ୍ଞାନିକ ସିଦ୍ଧାନ୍ତରେ ପରିଣତ ହୁଏ ନାହିଁ । ବରଂ ତଥ୍ୟ ଉପରେ ଆଧାରିତ ହେବାଦ୍ୱାରା ଏହା ସମର୍ଥିତ ହୋଇଥାଏ । ବିଚାରଶୀଳତାର କଷଟି ହିଁ ସକଳ ଜ୍ଞାନର ମାନଦଣ୍ଡ । ତାହା ହିଁ ହେତୁବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତଃସ୍ୱର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବସ୍ତୁତଃ ବୈଜ୍ଞାନିକ ପ୍ରକୃତିବାଦ, ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାରିତ ପ୍ରଣାଳୀ, ବିଚାରଶୀଳତାର ମହତ୍ତ୍ୱ, ମୁକ୍ତମନ ଓ ସତ୍ୟ ପ୍ରତି ଅନୁରକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ମୌଳିକ ତାତ୍ପର୍ଯ୍ୟ ଅଟେ । ବୈଜ୍ଞାନିକ ଦୃଷ୍ଟିକୋଣ ଅନ୍ତର୍ବୋଧ ଓ ସୃଜନଶୀଳ ଆବେଗକୁ ମଧ୍ୟ ସ୍ୱୀକାର କରେ । ମଣିଷର ଅନ୍ତର୍ବୋଧ ଓ ସୃଜନଶୀଳତା ମଧ୍ୟଦେଇ ସାହିତ୍ୟ, କଳା ଓ ଦର୍ଶନର ଯେ ବିକାଶ ହୋଇଛି ଏହା ସତ୍ୟ ଅଟେ । ତେବେ ଏକ ବୈଜ୍ଞାନିକ ସିଦ୍ଧାନ୍ତ ଓ ସାହିତ୍ୟିକ ପରିକଳ୍ପନା ମଧ୍ୟରେ ପାର୍ଥକ୍ୟ ରହିଛି । ସାହିତ୍ୟ ଏକ ସୃଜନଶୀଳ କଳାତ୍ମକ ଅଭିବ୍ୟକ୍ତି ଯାହା ଅନୁଭୂତି, ଆବେଗ ଓ କଳ୍ପନା ଆଧାରରେ ରୂପ ନେଇଥାଏ । ଏହା ବିଜ୍ଞାନ ନୁହେଁ ବା ଏଠାରେ ବସ୍ତୁନିଷ୍ଠ ସତ୍ୟତାର ପ୍ରଶ୍ନ ସଂଶ୍ଲିଷ୍ଟ ନୁହେଁ । କିନ୍ତୁ ପ୍ରକୃତି ସମ୍ବନ୍ଧୀୟ କୌଣସି ସିଦ୍ଧାନ୍ତ ବା ତଥ୍ୟ ସଂପର୍କିତ ପ୍ରତିଜ୍ଞପ୍ତିର (Proposition) ସତ୍ୟତାର ମାନଦଣ୍ଡ ବୈଜ୍ଞାନିକ ପଦ୍ଧତିରେ ହିଁ ନିରୂପିତ ହୋଇଥାଏ ।

ବୈଜ୍ଞାନିକ ପ୍ରଣାଳୀ ତଥ୍ୟଭିତ୍ତିକ ଜ୍ଞାନର ବିକାଶ ପାଇଁ ଯେ ଅବଶ୍ୟମ୍ଭାବୀ ଏହା ଅନସ୍ୱୀକାର୍ଯ୍ୟ । ତେବେ ମଣିଷର ସକଳ ସମସ୍ୟାକୁ ବିଜ୍ଞାନ ଯେ ସମାଧାନ କରିଦେବ ଏହା ଏକ ଅତ୍ୟୁକ୍ତି ଓ ଅତିରଂଜିତ ମତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଯେ କୌଣସି ଏକ ସମସ୍ୟାର ଅସଲ ସ୍ୱରୂପକୁ ଜାଣିବା ପାଇଁ ବୈଜ୍ଞାନିକ ଦୃଷ୍ଟିକୋଣ ଅତ୍ୟନ୍ତ ସହାୟକ ହୋଇଥାଏ । କୌଣସି ସମସ୍ୟାର ସ୍ୱରୂପ ବିଷୟରେ ଅବଗତ ହେଲାପରେ ଏହାର ସମାଧାନ ପାଇଁ ସୃଜନଶୀଳ ବିଚାରର ସୂତ୍ରପାତ ହୁଏ । ତେବେ ବୈଜ୍ଞାନିକ ଦୃଷ୍ଟିକୋଣ ଏକ ମୁକ୍ତ ମନ ନେଇ କୌଣସି ସମସ୍ୟାର ବସ୍ତୁନିଷ୍ଠ ବିଶ୍ଳେଷଣ ପାଇଁ ଅଭିନିବେଶ ଯୋଗାଇଥାଏ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଏହାର ସ୍ୱୀକୃତ ପ୍ରଣାଳୀ ଅବଲମ୍ୱନରେ ବିଜ୍ଞାନ ଓ ପ୍ରଯୁକ୍ତିର ଯେ ବିକାଶ ହୋଇଛି ଏହା କୁହାଯାଇପାରେ । ଜଣେ ବୈଜ୍ଞାନିକଙ୍କର ଅନ୍ତର୍ଦୃଷ୍ଟି ଓ ସୃଜନଶୀଳ ସାମର୍ଥ୍ୟ ଯୋଗୁଁ ସେ ଜଟିଳ ପ୍ରକୃତିର କିଛି ରହସ୍ୟକୁ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଥାନ୍ତି ବା ପ୍ରକୃତିର କୌଣସି ବ୍ୟତିକ୍ରମବିହୀନ ଏକରୂପତାକୁ ଆବିଷ୍କାର କରିଥାନ୍ତି । ଆବିଷ୍କୃତ ନିୟମ ବା ସାମାନ୍ୟୀକରଣକୁ ସେ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ୱନରେ ହିଁ ପ୍ରତିଷ୍ଠା କରିଥାନ୍ତି । ଅର୍ଥାତ୍ ବୈଜ୍ଞାନିକ ପ୍ରଣାଳୀ ହିଁ ବୈଜ୍ଞାନିକ ଜ୍ଞାନର ଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତେବେ ବିଜ୍ଞାନର କୌଣସି ବିଭାଗକୁ ଅଧ୍ୟୟନ କରିଥିବା ଜଣେ ବ୍ୟକ୍ତିଙ୍କ ଭିତରେ ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅପରିହାର୍ଯ୍ୟ ଭାବେ ଥାଏ ଏହା କୁହାଯାଇ ନପାରେ । କିମ୍ବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ଯେ ଜଣେ ବୈଜ୍ଞାନିକ ତାହା ମଧ୍ୟ ନୁହେଁ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ମୂଲ୍ୟଚୟ ପ୍ରତି ପ୍ରତିବଦ୍ଧତା ରଖିବା ଦ୍ୱାରା ଜଣଙ୍କର ବୈଜ୍ଞାନିକ ଦୃଷ୍ଟିକୋଣ ରହିବା କୁହାଯାଇପାରେ । ବିଜ୍ଞାନର କୌଣସି ବିଭାଗରେ ଉଚ୍ଚ ଶିକ୍ଷା ଲାଭ କରିଥିବା ବ୍ୟକ୍ତିଙ୍କର ବୈଜ୍ଞାନିକ ଦୃଷ୍ଟିକୋଣ ପ୍ରତି ପ୍ରତିବଦ୍ଧତା ନ ଥାଇପାରେ । ଜଣେ ଶ୍ରେଣୀଗୃହରେ ବା ବିଜ୍ଞାନ ଚର୍ଚ୍ଚା ସମୟରେ ଯେଉଁ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ତାହାକୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଯେ ପ୍ରୟୋଗ କରିଥାନ୍ତି ତାହା ସତ୍ୟ ନୁହେଁ । ତାଙ୍କର ମାନସିକତା ଭିତରେ ଜୀବନର ଅନ୍ୟାନ୍ୟ ବ୍ୟାପାରରେ କେତେକ ବଦ୍ଧମୂଳ ବିଶ୍ୱାସ ହୁଏତ ଦୃଢ଼ ଥାଇପାରେ । ନାନା ଅନ୍ଧ ସଂସ୍କାର ବା ପରଂପରାଗତ ବିଶ୍ୱାସରୁ ସେ ମାନସିକ ସ୍ତରରେ ମୁକ୍ତ ନଥାଇପାରନ୍ତି । ତେବେ ଏକ ଜୀବନଦୃଷ୍ଟିର ମୂଲ୍ୟାୟନ କଲାବେଳେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ମୂଲ୍ୟଚୟ ପ୍ରତି ଅଙ୍ଗୀକାରବଦ୍ଧତା ହିଁ ମାନଦଣ୍ଡ ହୋଇଥାଏ ।

ସମାଜରେ ଏପରି ଅନେକ ବିଶ୍ୱାସ ପରିବ୍ୟାପ୍ତ ହୋଇରହିଛି ଯାହା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ମନେହୁଏ । ପ୍ରାକ୍-ବୈଜ୍ଞାନିକ ସମୟରୁ ସମାଜରେ ପ୍ରଚଳିତ ବିଶ୍ୱାସମାନଙ୍କୁ ନେଇ ଯେଉଁ ସାଂସ୍କୃତିକ ପରଂପରା ଓ ବଦ୍ଧମୂଳ ବିଶ୍ୱାସ ଗଢ଼ି ଉଠିଛି ତାହା ବିଜ୍ଞାନର ବିକାଶ ସତ୍ତ୍ୱେ ସମାଜରୁ ଦୂର ହୋଇପାରୁ ନାହିଁ । ବରଂ ଆଧୁନିକ ପ୍ରଯୁକ୍ତିକୁ ସାଧନ ଭାବେ ନେଇ କେତେକ ବିଶ୍ୱାସକୁ ଚଞ୍ଚକତାପୂର୍ଣ୍ଣ ଭାବେ ବିଜ୍ଞାନର ରୂପଦେବାକୁ ପ୍ରୟାସ କରାଯାଉଛି । ସମାଜର ଦୁଇଟି ପ୍ରଚଳିତ ବିଶ୍ୱାସ ଯଥା ଫଳିତ ଜ୍ୟୋତିଷ ଓ ବାସ୍ତୁଶାସ୍ତ୍ର ଏହାର ନମୂନା କହିଲେ ଅତ୍ୟୁକ୍ତି ହେବ ନାହିଁ । 'ବ୍ୟକ୍ତିର ଭବିଷ୍ୟତ ବା ଭାଗ୍ୟ ଦୈବୀ ଶକ୍ତିଦ୍ୱାରା ନିୟନ୍ତ୍ରିତ ଓ ପୂର୍ବନିର୍ଦ୍ଧାରିତ; ଜଣେ ବ୍ୟକ୍ତିର ଜନ୍ମ ସମୟରେ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟାନ୍ୟ ଗ୍ରହମାନଙ୍କର ଅବସ୍ଥିତି ତା'ର ଜୀବନର ଘଟଣା ପ୍ରବାହକୁ ନିର୍ଦ୍ଦିଷ୍ଟ କରିଥାଏ'- ଫଳିତ ଜ୍ୟୋତିଷର ମୁଖ୍ୟ ବିଶ୍ୱାସ । ସେହିପରି 'ଏକ ଗୃହର କୋଠରୀ ଓ ଅବସ୍ଥିତି ପରିବାରର ସମୃଦ୍ଧି ବା ଦୁଃଖ ଦୁର୍ଦ୍ଦଶାର କାରଣ' ବୋଲି ବାସ୍ତୁବିଦ୍ୟା ପ୍ରଚାର କରିଥାଏ । ଫଳିତ ଜ୍ୟୋତିଷ ଓ ବାସ୍ତୁଶାସ୍ତ୍ର ନା କୌଣସି ବୈଜ୍ଞାନିକ ପଦ୍ଧତି ଅବଲମ୍ୱନ କରନ୍ତି ନା ସେମାନଙ୍କର ସମାନ୍ୟୀକରଣ ଭିତରେ କୌଣସି ବୈଜ୍ଞାନିକ କ୍ରମର ଭିତ୍ତିଥାଏ । ସେମାନଙ୍କର ସିଦ୍ଧାନ୍ତ କାଳ୍ପନିକ ଓ କାକତାଳୀୟ ନ୍ୟାୟ ଆଧାରିତ । ହୁଏତ କୌଣସି ସକାରାତ୍ମକ ଦୃଷ୍ଟାନ୍ତ ଦେଖି ସେମାନଙ୍କର ସମାନ୍ୟୀକରଣ ସତ୍ୟ ବୋଲି ସେମାନେ ବିଶ୍ୱାସ କରିଥାନ୍ତି । ନକାରାତ୍ମକ ଦୃଷ୍ଟାନ୍ତ ପ୍ରତି ସେମାନେ ଗୁରୁତ୍ୱ ଦେଇନଥାନ୍ତି । ତା ସହିତ କୌଣସି ଘଟଣା ସହ ପରିଣାମର କ'ଣ କାର୍ଯ୍ୟ-କାରଣ ସମ୍ବନ୍ଧ ରହିଛି ତାହାର କୌଣସି ବ୍ୟାଖ୍ୟା ସେମାନେ କରନ୍ତି ନାହିଁ । ସେହିପରି ମନ୍ତ୍ର ତନ୍ତ୍ର ଦ୍ୱାରା ଏକ କାର୍ଯ୍ୟ ସାଧିତ

ହେବ, ହୋମ ଯଜ୍ଞ ଓ ମନ୍ତ୍ରପାଠଦ୍ୱାରା ବର୍ଷା ହେବ ବା ଶାନ୍ତି ପ୍ରତିଷ୍ଠା ହେବ ଇତ୍ୟାଦି ବିଶ୍ୱାସ ଗୁଡ଼ିକ କେବଳ ଲୋକବିଶ୍ୱାସ ମାତ୍ର । ଏହା ପଛରେ ନା କିଛି ବୈଜ୍ଞାନିକ ଆଧାର ରହିଛି ନା ଏଗୁଡ଼ିକ କୌଣସି ବୈଜ୍ଞାନିକ ପ୍ରଣାଳୀ ମଧ୍ୟଦେଇ ଲାଭ କରାଯାଇଛି । କେବଳ ପ୍ରାଗ୍-ବିଜ୍ଞାନ ଯୁଗରେ କେତେକ ବିଶ୍ୱାସ କାଳକ୍ରମେ ସାମାଜିକ ପରଂପରାରେ ଦୃଢ଼ ହୋଇ ରହିବା ସହ ଏହା ସହିତ ନାନା ଭାବାବେଗ ସଂଶ୍ଳିଷ୍ଟ ହୋଇରହିଛି । ସେହିପରି କେତେକ ସମାଜରେ କେତେକ ବାବା ବସ୍ତୁ ଯେ ଶୂନ୍ୟରୁ ସୃଷ୍ଟି ହୋଇପାରିବ', 'ଯୋଗ ଓ ଧ୍ୟାନଦ୍ୱାରା ପ୍ରାକୃତିକ ନିୟମକୁ ଉଲଂଘନ କରିହେବ' ଏହା ପ୍ରଚାର କରିଥାନ୍ତି । ସେଗୁଡ଼ିକର କୌଣସି ବୈଜ୍ଞାନିକ ଆଧାର ନଥିଲେ ମଧ୍ୟ ସମାଜରେ କିଛି ଲୋକଙ୍କ ଭିତରେ କୁସଂସ୍କାରର ଚେର ମାଡ଼ିକରି ରହିଥିବାରୁ ଏହି ସବୁ ବେଶ୍ ପ୍ରସାରିତ ହୋଇରହିଛି । ପୁନଶ୍ଚ ପରଂପରାକୁ ଧର୍ମୀୟ ବିଶ୍ୱାସ ସହିତ ସଂପୃକ୍ତ କରାଯିବା ଓ ଧର୍ମର ପ୍ରଭାବ ଜନମାନସରେ ବଳିଷ୍ଠ ଥିବା ଯୋଗୁଁ ପରଂପରା ନାମରେ ବହୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ସମାଜରେ ତିଷ୍ଠି ରହିଛି । ଏପରିକି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ସହାୟତାରେ ଧାର୍ମିକ ବିଶ୍ୱାସ ଓ ଅନେକ ଅଯୌକ୍ତିକ ଚଳଣିକୁ ନାନା ରଙ୍ଗରସ ଦେଇ ପ୍ରସାର କରାଯାଉଛି । ଆଧୁନିକ ଜୀବନଧାରାରେ ନାନା ସମସ୍ୟା, ପ୍ରତିଯୋଗିତା ଓ ମାନସିକ ଉଦ୍‌ବେଳନ ଯୋଗୁ ଏହି ସବୁ ଜନମାନସକୁ ସ୍ପର୍ଶ କରୁଛି । ନାନା ମନସ୍ତାତ୍ତ୍ୱିକ ଓ ଏପରିକି ଆର୍ଥିକ କାରଣରୁ ବିଜ୍ଞାନ ବିରୋଧୀ ବିଶ୍ୱାସ ଗୁଡ଼ିକ ସମାଜରେ ପ୍ରଭାବ ବିସ୍ତାର କରି ରହିଛି ।

(୫)

ଏହା ଅନସ୍ୱୀକାର୍ଯ୍ୟ ଯେ ବିଜ୍ଞାନରେ ସୂକ୍ଷ୍ମାତିସୂକ୍ଷ୍ମ ଗବେଷଣା ଯୋଗୁଁ ଜ୍ଞାନର ଯେଉଁ ବିସ୍ଫୋରଣ ହୋଇଛି ତାହାର ପରିଣାମ ସ୍ୱରୂପ ଜୀବନରେ ସୁଖ, ସମୃଦ୍ଧି ବଢ଼ିଛି, ଶିକ୍ଷାର ପ୍ରଭୂତ ବିକାଶ ହୋଇଛି, ଉନ୍ନତ ସ୍ୱାସ୍ଥ୍ୟ ସେବା ଉପଲବ୍ଧ ହୋଇପାରୁଛି ଓ ପୃଥିବୀ ଏକ ବିଶ୍ୱ-ଗ୍ରାମରେ ପରିଣତ ହୋଇଛି । ଏ ସବୁ ସହ ବୈଚାରିକ ସ୍ତରରେ କେତେକ ସାଂସ୍କୃତିକ ବିପ୍ଳବର ମଧ୍ୟ ସୂତ୍ରପାତ ହୋଇଛି । ପୃଥିବୀର ଦୂରତା ଯେତିକି କମିଯାଉଛି ସେହିଭାବରେ ଏକ ବିଶ୍ୱଭାବ ଓ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ସାଧନ ହେବାରେ ଲାଗିଛି । ଅତୀତରେ ଜାତି, ଧର୍ମ, ଭାଷା ଓ ଜାତୀୟତା ଆଧାରରେ ମଣିଷ ସମାଜରେ ଯେଉଁ ବିଦ୍ୱେଷର ବାତାବରଣ ଥିଲା ତାହା ବିଜ୍ଞାନ ଓ ତଦାଶ୍ରୟୀ ଜୀବନଧାରାର ବିକାଶଦ୍ୱାରା କେତେକାଂଶରେ ଦୂର ହୋଇପାରିଛି । ଧର୍ମ, ଜାତୀୟତା ଇତ୍ୟାଦିକୁ ନେଇ ଯେଉଁ ସାଂପ୍ରଦାୟିକ ବିଦ୍ୱେଷ ଓ ହିଂସାତ୍ମକ ପରିବେଶ ପୃଥିବୀରେ ରହିଥିଲା ସେସବୁ ବୈଜ୍ଞାନିକ ସଂସ୍କୃତିର ପ୍ରଭାବରେ କମିଆସିଛି । ପୁନଶ୍ଚ ବୈଚାରିକ ସ୍ତରରେ ସମତାଭାବ, ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀ ଓ ଗଣତାନ୍ତ୍ରିକ ଚେତନା ବିଜ୍ଞାନର ବିକାଶ ସହିତ କ୍ରମବର୍ଦ୍ଧିଷ୍ଣୁ ଭାବେ ବିଶ୍ୱ ଚିନ୍ତାମାନସକୁ ପ୍ରଭାବିତ କରିପାରିଛି । ଏହି ମୂଲ୍ୟଚୟ ଗୁଡ଼ିକ ଆଧୁନିକ ବିଶ୍ୱରେ ସାର୍ବଜନୀନ ହେବାରେ ଲାଗିଛି । ଭୌଗୋଳିକ ଦୂରତା କମିଯିବା ଯୋଗୁଁ ଦେଶ ଦେଶ ଭିତରେ ପାରସ୍ପରିକ ନିର୍ଭରଶୀଳତା ବୃଦ୍ଧି ପାଇଛି ଓ ପରିଣାମତଃ ସମଗ୍ର ମଣିଷଜାତିର ଏକତ୍ୱ ନେଇ ବିଚାର ପ୍ରକଟ ହେଉଛି । ବିଜ୍ଞାନ ମଣିଷ ଭିତରର ବିଭେଦ-ପ୍ରାଚୀରକୁ ଭାଙ୍ଗିବାରେ ସମର୍ଥ ହୋଇଛି । ପରିଣାମ ସ୍ୱରୂପ ମାନବତାବାଦ ଏକ ସାର୍ବଜନୀନ ଆଦର୍ଶ ଭାବେ ବିଶ୍ୱ ଚିନ୍ତାମାନସରେ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି ।

ପ୍ରବନ୍ଧଟି ଉପସଂହାର କରିବା ପୂର୍ବରୁ ଆଧୁନିକ ପ୍ରଯୁକ୍ତି ବିଷୟରେ କିଞ୍ଚିତ ସୂଚନା ଦେବାକୁ ଉଚିତ ମନେ କରୁଛି । ବିଜ୍ଞାନର ପ୍ରୟୋଗାତ୍ମକ କ୍ଷେତ୍ରଟି ହେଉଛି ପ୍ରଯୁକ୍ତି । ଯେତେବେଳେ କୌଣସି ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ପ୍ରକୃତି

ସମ୍ବନ୍ଧୀୟ ଜ୍ଞାନକୁ ବିନିଯୋଗ କରାଯାଏ, ଅର୍ଥାତ୍ ଜ୍ଞାନର ପ୍ରୟୋଗ ହୁଏ, ତାହାକୁ ସାଧାରଣତଃ ପ୍ରଯୁକ୍ତି କୁହାଯାଏ । ଟେଲିଭିଜନ, କମ୍ପ୍ୟୁଟର, ଉଡାଜାହାଜ ହେଉଛି ପ୍ରଯୁକ୍ତି । ଏହି ପ୍ରଯୁକ୍ତି ପଶ୍ଚାତରେ ପ୍ରକୃତି ସମ୍ବନ୍ଧୀୟ ଯେଉଁ ଜ୍ଞାନ ରହିଛି ଅର୍ଥାତ୍ ଯେଉଁ ଜ୍ଞାନକୁ ଭିତ୍ତି କରି ଏସବୁ ଜୀବନ ପାଇଁ ଉପଲବ୍ଧ କରାଯାଇ ପାରୁଛି ତାହା ହେଉଛି ବିଜ୍ଞାନ ।

ବିଜ୍ଞାନ ମୌଳିକତଃ ନୀତିନିରପେକ୍ଷ । ବିଜ୍ଞାନ ଓ ପ୍ରଯୁକ୍ତିର ପ୍ରୟୋଗରେ ସମାଜର ହିତ ସାଧନ କରାଯାଇପାରେ । କିନ୍ତୁ ଆଧୁନିକ ପ୍ରଯୁକ୍ତି ଯଦି ଅର୍ଥନୈତିକ ଶୋଷଣ ଓ ସାମ୍ରାଜ୍ୟବାଦର ବିସ୍ତାର ପାଇଁ ବିନିଯୋଗ ହୁଏ, ପ୍ରକୃତିର ସୀମିତ ସାଧନ ଗୁଡିକୁ ମାତ୍ର କେତୋଟି ଶତାବ୍ଦୀ ଭିତରେ ଧ୍ୱଂସ କରିଦିଏ, ଏକ ଅବିରତ ପ୍ରଗତି ପରିବର୍ତ୍ତେ ପ୍ରକୃତିର ଭାରସାମ୍ୟତାକୁ ଧ୍ୱଂସ କରେ, ଭୟଙ୍କର ମାରାଣାସ୍ତ୍ର ନିର୍ମାଣକରି ପରିବେଶର ସନ୍ତୁଳନକୁ ନଷ୍ଟ କରିଦିଏ, ତେବେ ସଭ୍ୟତା ଉତ୍ତୁଙ୍ଗ ଶିଖରକୁ ଯାଇ ମଧ୍ୟ ଏହା ଧ୍ୱଂସ ହୋଇଯିବ । ଯେଉଁ ପ୍ରାଯୁକ୍ତିକ ଜ୍ଞାନ ବୃହତ୍ତର ସମାଜର ହିତ ପରିବର୍ତ୍ତେ ଅହିତ ସାଧନକରେ ଏବଂ ବିଶ୍ୱରେ ବୈଷମ୍ୟ ଓ ଶୋଷଣ ବୃଦ୍ଧି କରାଏ ତାହାକୁ ପରିହାର କରାଯିବା ଆବଶ୍ୟକ ।

ମୋଟ ଉପରେ ବିଜ୍ଞାନର ଅଭୂତପୂର୍ବ ବିକାଶ ଏକ ସୁନ୍ଦର ଓ ସୁଖସମୃଦ୍ଧ ଭରା ବିଶ୍ୱର ବାସ୍ତବ ରୂପାୟନ କରିବା ସହ ଜୀବନର ଗୁଣାତ୍ମକ ବିକାଶ କରାଇପାରିବ । ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକତା ପୂରଣ କରିବା ସହ ପ୍ରତ୍ୟେକ ବ୍ୟକ୍ତିକୁ ଶିକ୍ଷା, ସ୍ୱାସ୍ଥ୍ୟ ସେବା, ବିନୋଦନ ଇତ୍ୟାଦିର ପରିବେଶ ଦେଇପାରିବ । କେତେ ମନୀଷୀଙ୍କର ସର୍ବଜନହିତୈଷୀ ବିଶ୍ୱର ବାସ୍ତବ ସଫଳତା ବିଜ୍ଞାନ ସୃଷ୍ଟି କରିପାରିବ । ନଚେତ ଅପରପକ୍ଷରେ ଏହା ମୁଷ୍ଟିମେୟ ବ୍ୟକ୍ତିଙ୍କୁ ପ୍ରାଚୁର୍ଯ୍ୟ ଦେଇ ଅଗଣିତ ବ୍ୟକ୍ତିଙ୍କୁ ଜୀବନର ଆବଶ୍ୟକତାରୁ ବଞ୍ଚିତ ମଧ୍ୟ କରିପାରିବ । ମୋଟ ଉପରେ କହିଲେ ବିଜ୍ଞାନ ଓ ପ୍ରଯୁକ୍ତିର ସୁବିନିଯୋଗ ଦ୍ୱାରା ସଭ୍ୟତାର ରୂପରେଖ ଉତ୍କର୍ଷର ଶୀର୍ଷକୁ ଯାଇପାରିବ ଓ ଏହାର ବିଚାରହୀନ ପ୍ରୟୋଗଦ୍ୱାରା ଆମର ସଂସାର ଧ୍ୱଂସ ପଥରେ ଅଗ୍ରସର ହେବ । ବିଜ୍ଞାନ ଓ ପ୍ରଯୁକ୍ତି ମାନବିକ ରୂପ ନେଇ ସମଗ୍ର ବିଶ୍ୱର କଲ୍ୟାଣ ଦିଗରେ ବିନିଯୋଗ ହେବା ଉଚିତ । ଆଜି ଆମ ସମସ୍ତଙ୍କ ପାଇଁ ଏହା ଏକ ଆହ୍ୱାନ ହୋଇରହିଛି ।



# ହେତୁବାଦୀ ଦୃଷ୍ଟିଭଙ୍ଗୀ: ପ୍ରୀତିପୂର୍ଣ୍ଣ ବିଶ୍ୱ

ସବୁ ସଭ୍ୟତାରେ ଜୀବନର ଘନଘଟା ଓ ପ୍ରକୃତିର ରହସ୍ୟକୁ ଜାଣିବାକୁ କିଛି ବ୍ୟକ୍ତି କୌତୂହଳୀ ହୋଇଛନ୍ତି । ସେମାନେ ସ୍ୱାଧୀନ ଭାବେ ଚିନ୍ତା କରିବାକୁ ପ୍ରୟାସ କରିଛନ୍ତି ଓ ସେହି ପ୍ରୟାସରୁ ସଭ୍ୟତାର ବିକାଶ ହୋଇଛି । ଗତ ଅଢେଇ ହଜାର, ତିନି ହଜାର ବର୍ଷର ଏକ ଧାରାବାହିକ ଇତିହାସରୁ ସଭ୍ୟତାର ଅଗ୍ରଗତି ବିଷୟରେ ଯେଉଁ ଚିତ୍ରଟି ମିଳେ ସେଥିରୁ ଜଣାଯାଏ ଯେ ଆଦିମ ଗୋଷ୍ଠୀ ଜୀବନରୁ ନଦୀକୂଳର ଗ୍ରାମୀଣ ସଭ୍ୟତା, କ୍ଷୁଦ୍ର ରାଜ୍ୟ, ରାଷ୍ଟ୍ର ଇତ୍ୟାଦିର ଭାବନା ବିକଶିତ ହୋଇଛି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତା ଧୀର ମନ୍ଥର ଗତିରେ ଆଗକୁ ଯାଇଛି । କେଉଁଠି କେଉଁଠି କୌଣସି କାରଣ ଯୋଗୁଁ କେତେକ ଜନଗୋଷ୍ଠୀର ସଭ୍ୟତାର ବିଲୋପ ମଧ୍ୟ ହୋଇଛି । ଗୋଟିଏ ଗୋଟିଏ ନୂତନ ଉଦ୍‌ଭାବନ ବା ଆବିଷ୍କାର, ନୂତନ ପ୍ରାଯୁକ୍ତିକ ଜ୍ଞାନ ସଭ୍ୟତାର ଅଗ୍ରଗତି କ୍ଷେତ୍ରରେ ବଳିଷ୍ଠ ଭିତ୍ତି ଯୋଗାଇଛି । ଆଦିମ ଯୁଗର ଶଙ୍କାକୁଳ ଯାଯାବର ଜୀବନରୁ ଆଜି ଯୁଗର ସଂହତିପୂର୍ଣ୍ଣ ନିରାପଦ ସାମାଜିକ ଜୀବନର କ୍ରମବିକାଶ ପଶ୍ଚାତରେ ରହିଛି ମଣିଷର ଅନୁସନ୍ଧିତ୍ସା, କିଛି ବ୍ୟକ୍ତିଙ୍କର ଅବଦାନ, ନିଷ୍ଠାପର ପ୍ରୟାସ ଓ ସର୍ବୋପରି ମଣିଷର ବିଚାରଶୀଳ ସାମର୍ଥ୍ୟ । ଭାଷା ବ୍ୟବହାର କରିବାର ସାମର୍ଥ୍ୟ ଓ ବିଚାରଶୀଳତା ଯୋଗୁଁ ଜୀବନର କ୍ରମୋନ୍ନତି ଓ ସାମାଜିକ ବିକାଶ ସମ୍ଭବ ହୋଇପାରିଛି । ଇତର ପ୍ରାଣୀମାନଙ୍କ ଜୀବନଧାରାରେ କୌଣସି ପରିବର୍ତ୍ତନ ହୋଇନାହିଁ । ଗାଈ,କୁକୁର,ବିରାଡି,କାଉ ଇତ୍ୟାଦି ଇତର ପ୍ରାଣୀମାନେ ଲକ୍ଷେ ବର୍ଷ ତଳେ ଯେଉଁ ସ୍ତରରେ ଥିଲେ ଆଜି ବି ସେହି ସ୍ତରରେ ବଞ୍ଚିଛନ୍ତି । କିନ୍ତୁ ମଣିଷ ନିଜର ବିଚାରଶୀଳ ସାମର୍ଥ୍ୟ ଯୋଗୁ ସଚେତନ ଭାବେ ନିଜର ବିକାଶ ଘଟାଇବାରେ ସମର୍ଥ ହୋଇଛି । ମଣିଷର ବିଚାରଶୀଳ ସାମର୍ଥ୍ୟ କିଛିଟା ସହଜାତ ହେଲେ ମଧ୍ୟ ସାମାଜିକ ବିକାଶଧାରାରେ ଏହା ବି କ୍ରମବର୍ଦ୍ଧିଷ୍ଣୁ ଭାବେ ବିକଶିତ ହୋଇଚାଲିଛି । କିଛି ବ୍ୟକ୍ତି ମଣିଷର ସ୍ଥିତିରେ ଉନ୍ନତି ପାଇଁ ଚିନ୍ତାପ୍ରକଟ କରିଛନ୍ତି ଓ ନୂଆ ମାର୍ଗ ଦର୍ଶାଇଛନ୍ତି । କିଛି ବ୍ୟକ୍ତିଙ୍କର ସ୍ୱାଧୀନ ଭାବେ ଚିନ୍ତା କରିବାର ଅବକାଶ ଯୋଗୁ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଛି, ସଭ୍ୟତାର ରୂପ ବଦଳିଛି ଓ ବୌଦ୍ଧିକ ସୃଜନଶୀଳତା ଦେଇ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ଏହି ଧାରା ନିରନ୍ତର ଭାବେ ଅବ୍ୟାହତ ରହିଛି ଓ ମଣିଷ ଜାତିର ଐକ୍ୟ ପାଇଁ ପରିବେଶ ଆସିପାରିଛି ।

ହେତୁବାଦ ଏକ ବୈଚାରିକ ଆଲୋଡନ ଓ ଏକ ଜୀବନ ଦର୍ଶନ । ମୁକ୍ତମନ, ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମନୋଭାବ ହେତୁବାଦର ଅନ୍ତଃସ୍ୱର । କୌଣସି ପୂର୍ବ ଧାରଣାର ବଶବର୍ତ୍ତୀ ନହୋଇ ସତ୍ୟସନ୍ଧାନୀ ହେବା ଓ ମୁକ୍ତ ମନ ନେଇ ପର୍ଯ୍ୟବେକ୍ଷଣ ପରୀକ୍ଷଣ ଆଧାରରେ ଜ୍ଞାନର ବିକାଶ ଘଟାଇବା ହେତୁବାଦର ଲକ୍ଷ୍ୟ ହୋଇଆସିଛି । ବୈଜ୍ଞାନିକ ପଦ୍ଧତିକୁ ବସ୍ତୁନିଷ୍ଠ ଜ୍ଞାନର ମୂଳ ଭାବେ ନେଇ ଏହା ଜ୍ଞାନର ଦିଗନ୍ତକୁ ବିସ୍ତାର କରିପାରିଛି । ୟୁରୋପୀୟ ନବଜାଗରଣ ଯୁଗ ପରେ ରାଜ୍ୟରେ ଯେଉଁ ଆଲୋଡନ ଆସିଛି ତାହା ପଶ୍ଚାତରେ ରହିଛି ବୈଜ୍ଞାନିକ ଦୃଷ୍ଟି । ଏହି ବିଶାଳ ବିଶ୍ୱକୁ ଜାଣିବା

ପାଇଁ ବିଜ୍ଞାନ ତାହାର ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ପ୍ରୟାସ କରିଛି । ପରିଣାମତଃ ପ୍ରକୃତିର ବହୁ ରହସ୍ୟ ଓ ତଥ୍ୟ ଜଣାପଡ଼ିଛି । ବିଜ୍ଞାନ ବିଶ୍ୱ ସଂକ୍ରାନ୍ତରେ ଜ୍ଞାନର ଯେଉଁ ସିଦ୍ଧାନ୍ତମାନ ଉନ୍ମୋଚନ କରିଛି ତାହା ସତ୍ୟ, ପରୀକ୍ଷିତ, ସାର୍ବଜନୀନ, ପ୍ରଗତିଶୀଳ ହୋଇପାରିଛି । ବିଜ୍ଞାନ ନିରପେକ୍ଷ ଭାବେ ନିଜର ଗବାକ୍ଷକୁ ସର୍ବଦା ଉନ୍ମୁକ୍ତ କରିଆସିଛି ଓ କୌଣସି କିଛିକୁ ଶାଶ୍ୱତ, ଚିରନ୍ତନ ବୋଲି ନେଇନାହିଁ ।

କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରକୃତିର ରହସ୍ୟକୁ ମଣିଷ ନିଜର ଅନୁସନ୍ଧିତ୍ସା ଓ ବୈଜ୍ଞାନିକ ଅନୁସନ୍ଧାର୍ନ ଦ୍ୱାରା ଯେତିକି ଜାଣିବାକୁ ସମର୍ଥ ହୋଇଛି ତାହାରି ଆଧାରରେ ନୂଆନୂଆ ପ୍ରଯୁକ୍ତିମାନ ଉଦ୍ଭବ ହୋଇଛି । ମାତ୍ର ବିଗତ ଦୁଇଶହ ବର୍ଷ ଭିତରେ ପୃଥିବୀର ରୂପରେଖ କଳ୍ପନାତୀତ ଭାବେ ବଦଳିବାରେ ଲାଗିଛି । କୃଷି, ଉତ୍ପାଦନ, ଗମନାଗମନ, ଗଣମାଧ୍ୟମ, ଆଧୁନିକ ଚିକିତ୍ସା, ଶିକ୍ଷା, ଗୃହନିର୍ମାଣ, କଂପୁଟର, ଇଣ୍ଟରନେଟ୍ ଇତ୍ୟାଦି ନାନା କ୍ଷେତ୍ରରେ ଅଭୂତପୂର୍ବ ସଫଳତା ମିଳିପାରିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ନାନା କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବାରେ ସଫଳ ହୋଇଛି । ବୈଜ୍ଞାନିକ ପ୍ରଣାଳୀ କେବଳ ଯେ ପ୍ରକୃତିର ରହସ୍ୟ ଓ ନିୟମକୁ ଅନୁଶୀଳନ କରିଛି ତାହା ନୁହେଁ ଏହା ସମାଜ, ସମାଜର ବିକାଶ ପ୍ରକ୍ରିୟା, ସାମାଜିକ ସଂଗଠନ, ଅନୁଷ୍ଠାନ, ସମାଜର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଧାରା ସକଳକୁ ମଧ୍ୟ ଅନୁଶୀଳନ କରିଛି । ପ୍ରତ୍ୟେକ ସଭ୍ୟତା, ସଂସ୍କୃତି ଏକ ଜନଗୋଷ୍ଠୀର ନୀତିବୋଧ, ପରଂପରା, ଜୀବନଦୃଷ୍ଟିକୁ ବିଚାରଶୀଳ ଭାବେ ବିଶ୍ଲେଷଣ କରିଛି । ପ୍ରତ୍ୟେକ ସଭ୍ୟତା ବା ସଂସ୍କୃତିର ସକାରାତ୍ମକ ଆବେଦନ ସହ ତାହାର ନକାରାତ୍ମକ ଦିଗ ଗୁଡିକୁ ମଧ୍ୟ ଏହା ପଦାକୁ ଆଣିଛି । ଏହା ସହିତ ନାନା ମନୋବୈଜ୍ଞାନିକ ଅନୁଶୀଳନ ଦ୍ୱାରା ବ୍ୟକ୍ତିର ସ୍ୱଭାବ, ଆବେଗ, ଚରିତ୍ରକୁ ଏହା ବିଶ୍ଲେଷଣ କରିଛି । ମାନସିକ ସୁସ୍ଥତା ଓ ଅସୁସ୍ଥ ମନ ନେଇ ଏହା ବିଶ୍ଲେଷଣ କରିଛି । ମାନସିକ ସୁସ୍ଥତା ଓ ଅସୁସ୍ଥ ମନ ନେଇ ଏହା କେତେକ ଲୁକ୍କାୟିକ ତଥ୍ୟ ପଦାକୁ ଆଣିଛି । ମନୋବିଜ୍ଞାନ ବ୍ୟକ୍ତିର ଆଚରଣ, ପାରିପାର୍ଶ୍ୱିକ ପରିସ୍ଥିତି, ମାନସିକ ଆବେଗ, କ୍ରିୟା, ପ୍ରତିକ୍ରିୟା, ବ୍ୟକ୍ତିତ୍ୱ, ମାନସିକ ବ୍ୟାଧି ଇତ୍ୟାଦି ପ୍ରସଙ୍ଗ ଉପରେ ବୈଜ୍ଞାନିକ ପଦ୍ଧତିରେ ଅନୁଶୀଳନ କରିବା ଦେଖାଯାଏ । ହେତୁବାଦ ଜ୍ଞାନ ବିଜ୍ଞାନର ଅନୁଶୀଳନ କ୍ଷେତ୍ରରେ ଯେଉଁ ବୌଦ୍ଧିକ ଆଲୋଡନ ସୃଷ୍ଟି କରିଛି ତାହାର ପରିଣାମ ସ୍ୱରୂପ ପ୍ରାକୃତିକ ବିଜ୍ଞାନ, ସମାଜ-ବିଜ୍ଞାନ, ମନୋବିଜ୍ଞାନ କ୍ଷେତ୍ରରେ ନାନା ଦିଗନ୍ତ ସୃଷ୍ଟି ହୋଇଛି ।

ମଣିଷର ସ୍ୱରୂପ ଓ ବ୍ୟକ୍ତି-ଚରିତ୍ରର ଅନୁଶୀଳନୀରୁ ଏହା ପ୍ରତୀୟମାନ ହୋଇଥାଏ ଯେ ମଣିଷ ସ୍ୱଭାବରେ ଏକ ଆବେଗିକ ସ୍ତର ରହିବା ସହିତ ଏକ ବୌଦ୍ଧିକ ସ୍ତର ରହିଛି । ଆମର ସାମାଜିକ ପରିବେଶ, ଶିକ୍ଷା, ଭାବନା ଇତ୍ୟାଦି ଆମର ଚେତନାକୁ ପ୍ରଭାବିତ କରିଥାଏ । ବ୍ୟକ୍ତିର ଭାବନା, ଅନୁଭୂତି, ପ୍ରତ୍ୟକ୍ଷ, ବୁଦ୍ଧି, ଅନୁଶୀଳନାତ୍ମକ ଦକ୍ଷତା ବ୍ୟକ୍ତିର ଚେତନାକୁ ପ୍ରସାରିତ କରିଥାଏ । ଜୀବନ, ସମାଜ, ପରିବେଶ, ପ୍ରାକୃତିକ କ୍ଷେତ୍ର ବିଷୟରେ ଆମର ଯାହା କିଛି ଜ୍ଞାନ, ବିଚାରବୋଧ ଥାଏ ତାହା ଆମ ବୌଦ୍ଧିକ ବିକାଶ ସହିତ ସମ୍ପୃକ୍ତ ହେବା ଦେଖାଯାଏ । ବ୍ୟକ୍ତିର ବୌଦ୍ଧିକ ବିକାଶ ନାନା ପରିସ୍ଥିତି ଓ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ବା ନିୟନ୍ତିତ ହୋଇଥାଏ । ବ୍ୟକ୍ତିର ବୌଦ୍ଧିକ ସାମର୍ଥ୍ୟ ସହିତ ଏକ ଆବେଗିକ ସ୍ତର ଥାଏ ଯାହା ଅନେକାଂଶରେ ପ୍ରବୃତ୍ତିଗତ ମନେହୁଏ । ଆମର ଇଚ୍ଛା, କାମନା, ଭାବାବେଗ, ଭାବପ୍ରବଣତା, ମାନସିକ ଉଦ୍ଦୀପନା, ଅନୁରାଗ, ପ୍ରତିକ୍ରିୟା ଇତ୍ୟାଦି ଆମର ଆବେଗିକ ସ୍ତର ସହିତ ସଂଶ୍ଳିଷ୍ଟ ହେବା ଦେଖାଯାଏ । ଆମର ଆବେଗିକ ସ୍ତରରୁ ଯେଉଁ ଲକ୍ଷ୍ୟ ବା ଉଦ୍ଦୀପନା ଆସେ ତାହାକୁ ପୂରଣ କରିବା ଦିଗରେ ଆମର ବୁଦ୍ଧି, ଚେତନା ବ୍ୟବହୃତ

ହୋଇଥାଏ । ବୁଦ୍ଧି ବା ମାନସିକ ଦକ୍ଷତା ମହତ୍ତର ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇପାରେ କିମ୍ବା ସ୍ୱାର୍ଥପର ଲକ୍ଷ୍ୟ ଦିଗରେ ବି ପରିଚାଳିତ ହୋଇପାରେ । ବୁଦ୍ଧି, ବିଚାରଶୀଳତା ଏକ ସାଧନ ଭାବରେ କୌଣସି ଲକ୍ଷ୍ୟ ହାସଲ ପାଇଁ ବିନିଯୋଗ ହୋଇଥାଏ ।

ହେତୁବାଦ ବୌଦ୍ଧିକତା ଓ ବିଚାରଶୀଳତାକୁ ପ୍ରାଧାନ୍ୟ ଦେବା ଭିତରେ ଏକ ଜୀବନ ଦର୍ଶନର ଅବତାରଣା କରିଥାଏ । ଏହି ଜୀବନ ଦର୍ଶନର ଆଧାର ଇହ-ଲୌକିକ(this worldly) ହେବା ଦେଖାଯାଏ । ପାରଲୌକିକ ଅବସ୍ଥା, ଅତୀନ୍ଦ୍ରିୟ ଜଗତ, ମୃତ୍ୟୁପର ଜୀବନ, ସ୍ୱର୍ଗ, ମୁକ୍ତି ଇତ୍ୟାଦି ଭାବନା ସକଳର କୌଣସି ଅନୁଭବଗତ ବା ପର୍ଯ୍ୟବେକ୍ଷଣୀୟ ଆଧାର ନଥିବାରୁ ଏସବୁକୁ କେବଳ ଧାର୍ମିକ ବିଶ୍ୱାସ ଭାବରେ ନିଆଯାଏ । ଯେହେତୁ ଏସବୁ ବିଶ୍ୱାସ ଉପରେ ଆଧାରିତ ଈଶ୍ୱର, ଆତ୍ମା, ଧର୍ମ, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ପ୍ରସଙ୍ଗ ଉପରେ ନାନା ତାତ୍ତ୍ୱିକ ଅବଧାରଣାମାନ ରହିବା ଦେଖାଯାଏ । ଏସବୁ ପ୍ରସଙ୍ଗ ଉପରେ କୌଣସି ସାର୍ବଜନୀନ ସିଦ୍ଧାନ୍ତ ନଥାଏ, ବରଂ ବିଭିନ୍ନ ସଭ୍ୟତା, ପରଂପରା, ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ନାନା ପରସ୍ପର-ବିରୋଧୀ ସିଦ୍ଧାନ୍ତ ରହିବା ଦେଖାଯାଏ ।

ଏକ ଇହଲୌକିକ ଜୀବନ-ଦର୍ଶନରେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି କ୍ଷେତ୍ରରେ ମଣିଷର ପ୍ରୟାସ ଓ ସାମାଜିକ ସମ୍ପୃକ୍ତି ଉପରେ ପ୍ରାଧାନ୍ୟ ଦିଆଯାଏ । ଶିକ୍ଷା, ନାଗରିକ ସଚେତନତା, ଶୃଙ୍ଖଳାବୋଧ, ସ୍ୱାସ୍ଥ୍ୟସେବା, ସ୍ୱାଧୀନଚିନ୍ତା, ଉତ୍ତମ ଜୀବନ, ପୁଷ୍ଟିକର ଖାଦ୍ୟ, ଉପଯୁକ୍ତ ବାସସ୍ଥାନ ଓ ସବୁ ବ୍ୟକ୍ତିଙ୍କର ସୁସ୍ଥ ଜୀବନକୁ ଗୁରୁତ୍ୱ ଦିଆଯାଏ । ବିଶେଷକରି ମଣିଷର ଉଦ୍ୟମ ଓ ସାମାଜିକ ବ୍ୟବସ୍ଥା ଦ୍ୱାରା ଏସବୁ ଯେ ଉପଲବ୍ଧ ହୋଇପାରିବ ହେତୁବାଦୀ ଜୀବନ ଦର୍ଶନରେ ଏହାକୁ ସ୍ୱୀକାର କରାଯାଏ । ଅପରପକ୍ଷରେ ଏକ ପାରଲୌକିକ ଜୀବନ-ଦର୍ଶନରେ ଜୀବନ ଓ ସାମାଜିକ ବ୍ୟବସ୍ଥାର ଉନ୍ନତି ପ୍ରତି ସମ୍ପୃକ୍ତି ନଥାଏ । ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟ, ଭକ୍ତି, ଦୈବୀକୃପା ପରି ଭାବନା ପାରଲୌକିକ ଜୀବନଦର୍ଶନର ଆଭିମୁଖ୍ୟ ହୋଇଥାଏ । ନାନା ମିଥ୍, କାଳ୍ପନିକ କାହାଣୀ, ବିଶ୍ୱାସ ଓ ମିଥ୍ୟାଚାର ଯଦି ଜୀବନର ଘଟଣା ପ୍ରବାହ ଓ ସାମାଜିକ ବ୍ୟବସ୍ଥାକୁ ଗଭୀର ଭାବେ ପ୍ରଭାବିତ କରେ ସେ କ୍ଷେତ୍ରରେ ଜୀବନର ଗୁଣାତ୍ମକମାନ ଉନ୍ନତ ହୁଏନାହିଁ । ପରିଣାମତଃ ସମାଜରେ ନାନା ଦୁଃଖ, ଦୁର୍ଦ୍ଦଶା, ଅନ୍ୟାୟ, ଭେଦଭାବ ରହିଥାଏ ଓ ସେସବୁ ପ୍ରତି ସ୍ପର୍ଶକାତରହୀନ ଦୃଷ୍ଟିଭଙ୍ଗୀ ଆସିଥାଏ । ଜୀବନର ପରିସ୍ଥିତି ପାଇଁ ଅଦୃଷ୍ଟ, ଭାଗ୍ୟ, ଦୈବୀ ଆଶୀର୍ବାଦ ବା ଅଭିଶାପକୁ ବ୍ୟକ୍ତି ବିଶ୍ୱାସ କରେ । କେଉଁ କଳ୍ପିତ ଦିଅଁ ଦେବତାକୁ ପ୍ରାର୍ଥନା ଦ୍ୱାରା ଜୀବନରେ ଦୈବୀ ଆଶୀର୍ବାଦ ମିଳିଲେ ଜୀବନରୁ ହତାଶା, ନୈରାଶ୍ୟ ଚାଲିଯିବ ବୋଲି ସେ କଳ୍ପନା କରେ । ଭକ୍ତିର ନିଦର୍ଶନ ସ୍ୱରୂପ କିଏ ଲଣ୍ଡାହୁଏ, ନିଆଁରେ ଚାଲେ, ଅପରିଷ୍କାର ପାଣିରେ ବୁଡ ପକାଏ, କେଉଁ ପଥରମୂର୍ତ୍ତି ପାଖରେ ନଡିଆ, ଘିଅ, କ୍ଷୀର ଦେବାକୁ ମାନସିକ କରେ ବା କଷ୍ଟକର ପଥ ଅତିକ୍ରମ କରି କେଉଁ ମୂର୍ତ୍ତିରେ ପାଣି ଢାଳିବାକୁ ସଂକଳ୍ପ କରେ । ସରକାରୀ ବ୍ୟବସ୍ଥା, ପ୍ରଶାସନ, ବୃହତ୍ତର ସମାଜ ଉପରେ ସେ ଭରସା ନକରି ଭରସା କରେ କାଳ୍ପନିକ ଦିଅଁ ଦେବତାର ଆଶୀର୍ବାଦ ଉପରେ ଓ ସେଥିପାଇଁ କେତେକ ପୂଜା, ନିଷ୍ଠା, ଭକ୍ତି, ଧାର୍ମିକ ଆବେଗ ଉପରେ ଗୁରୁତ୍ୱ ଦିଏ । ନାନା ଭୟ ଓ ମନସ୍ତାତ୍ତ୍ୱିକ କାରଣରୁ ସମାଜରେ ଚଳି ଆସିଥିବା ବିଶ୍ୱାସ, ଭାବାବେଗ, ଧାର୍ମିକ କର୍ମକାଣ୍ଡ ପରିବର୍ତ୍ତିତ ପରିସ୍ଥିତିରେ ନାନା ଆଡମ୍ବରରେ ପାଳିତ ହୁଏ । ତାହା ଯେତେ ଅର୍ଥହୀନ, ବ୍ୟୟସାପେକ୍ଷ, ପରିବେଶ କ୍ଷତିକାରୀ ହେଲେ ମଧ୍ୟ ତାହାକୁ ପରଂପରା, ଐତିହ୍ୟର ରୂପ ଦେଇ ଐହିକ ଲାଭ ଓ ପାରଲୌକିକ ପ୍ରାପ୍ତି ଉଦ୍ଦେଶ୍ୟରେ ପାଳନ କରାଯାଏ ।

